

*Published by:*

Department of Information & Public Relations
Government of Odisha,
Bhubaneswar-753010

# ଉତ୍କଳ ପ୍ରସଙ୍ଗ

## PREAMBLE

WE, THE PEOPLE OF INDIA having solemnly resolved to constitute India into a SOVEREIGN SOCIALIST SECULAR DEMOCRATIC REPUBLIC and to secure to all it's citizen

JUSTICE, social, economic and political
LIBERTY of thought, expression,belief, faith and worship
EQUALITY of status and of opportunity
and to promote among them all
FRATERNITY assuring the dignity of individual and the unity and integrity of the nation.

IN OUR CONSTITUENT ASSEMBLY the twenty-sixth day of November, 1949, do, HEREBY ADOPT, ENACT AND GIVE TO OURSELVES THIS CONSTITUTION

# ଉତ୍କଳ ପ୍ରସଙ୍ଗ

**The Utkal Prasanga**

**January- 2015**

**୭୧ ଭାଗ ୬ଷ୍ଠ ସଂଖ୍ୟା ପୌଷ–ମାଘ ଜାନୁଆରୀ – ୨୦୧୫**



ଉତ୍କଳ ପ୍ରସଙ୍ଗ ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗ ତରଫରୁ ପ୍ରକାଶ ପାଉଥିଲେ ସୁଦ୍ଧା ଏହି ପତ୍ରିକାରେ ପ୍ରକାଶିତ ମତାମତ ଓ ଚିନ୍ତାଧାରା ସବୁ ସ୍ଥଳରେ ଓଡ଼ିଶା ସରକାରଙ୍କର ବୋଲି ବୁଝିବାକୁ ହେବ ନାହିଁ ।

ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗଦ୍ୱାରା ପ୍ରକାଶିତ ଏବଂ
ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ–୧୦ରେ ମୁଦ୍ରିତ ।

ଠିକଣା : 'ଉତ୍କଳ ପ୍ରସଙ୍ଗ', ରାଜ୍ୟ ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଲୋକ ସମ୍ପର୍କ ଭବନ, ଭୁବନେଶ୍ୱର–୭୫୧୦୦୧

ଇ–ମେଲ୍ : iprsec@rediffmail.com, ୱେବ୍‌ସାଇଟ୍ : www.odisha.gov.in
ଫୋନ୍ : ୦୬୭୪–୨୫୩୦୨୧୧

ପ୍ରତିଖଣ୍ଡ : ଟ. ୫.୦୦

ଜାନୁଆରୀ ୨୦୧୫

# ସୂଚୀ

# ଜାତୀୟ ସଙ୍ଗୀତ



ଜନ-ଗଣ-ମନ-ଅଧିନାୟକ ଜୟ ହେ
ଭାରତ-ଭାଗ୍ୟ-ବିଧାତା
ପଞ୍ଜାବ-ସିନ୍ଧୁ-ଗୁଜରାଟ-ମରାଠା
ଦ୍ରାବିଡ଼-ଉତ୍କଳ-ବଙ୍ଗ
ବିନ୍ଧ୍ୟ-ହିମାଚଳ-ଯମୁନା-ଗଙ୍ଗା
ଉଚ୍ଛଳ ଜଳଧି ତରଙ୍ଗ
ତବ ଶୁଭ ନାମେ ଜାଗେ
ତବ ଶୁଭ ଆଶିଷ ମାଗେ
ଗାହେ ତବ ଜୟ ଗାଥା
ଜନଗଣ-ମଙ୍ଗଳଦାୟକ ଜୟ ହେ,
ଭାରତ-ଭାଗ୍ୟ-ବିଧାତା
ଜୟ ହେ ଜୟ ହେ ଜୟ ହେ,
ଜୟ ଜୟ ଜୟ ଜୟ ହେ ।

*- ରବୀନ୍ଦ୍ରନାଥ ଠାକୁର*



# ବନ୍ଦେ ମାତରମ୍

ସୁଜଳାମ୍, ସୁଫଳାମ୍, ମଳୟଜ ଶୀତଳାମ୍
ଶସ୍ୟ ଶ୍ୟାମଳାମ୍ ମାତରମ୍ ।
ଶୁଭ୍ରଜ୍ୟୋତ୍ସ୍ନାଂ ପୁଲକିତ ଯାମିନୀମ୍
ଫୁଲ୍ଲ କୁସୁମିତ ଦ୍ରୁମଦଳ ଶୋଭିନୀମ୍
ସୁହାସିନୀମ୍ ସୁମଧୁର ଭାଷିଣୀମ୍
ସୁଖଦାଂ ବରଦାଂ ମାତରମ୍ ।।
ବନ୍ଦେ ମାତରମ୍ ।।।

– ବଙ୍କିମଚନ୍ଦ୍ର ଚାଟାର୍ଜୀ

# ଶ୍ରଦ୍ଧାଞ୍ଜଳି



ବୀର ସୁରେନ୍ଦ୍ର ସାଏ



ବକ୍ସି ଜଗବନ୍ଧୁ






ଚାଖି ଖୁଣ୍ଟିଆ



ନେତାଜୀ ସୁଭାଷ ବୋଷ

# ଶ୍ରଦ୍ଧାଞ୍ଜଳି



ବ୍ୟାସକବି ଫକୀର ମୋହନ ସେନାପତି

# THE CONSTITUTION OF INDIA

## PREAMBLE

WE, THE PEOPLE OF INDIA, having solemnly resolved to constitute India into a SOVEREIGN SOCIALIST SECULAR DEMOCRATIC REPUBLIC and to secure to all its citizens:

JUSTICE, social, economic and political;

LIBERTY of thought, expression, belief, faith and worship;

EQUALITY of status and of opportunity;

and to promote among them all

FRATERNITY assuring the dignity of the individual and the unity and integrity of the Nation;

IN OUR CONSTITUENT ASSEMBLY this twenty-sixth day of November, 1949, do HEREBY ADOPT, ENACT AND GIVE TO OURSELVES THIS CONSTITUTION.

# ସାଧାରଣତନ୍ତ୍ର ଦିବସ -୨୦୧୫ ଅବସରରେ

# ଓଡ଼ିଶାର ମାନ୍ୟବର ରାଜ୍ୟପାଳ

# ଡକ୍ଟର ଏସ୍.ସି. ଜମିର୍‌ଙ୍କ

# ବାର୍ତ୍ତା



ପ୍ରିୟ ଭଉଣୀ ଓ ଭାଇମାନେ !

୬୬ତମ ସାଧାରଣତନ୍ତ୍ର ଦିବସ ଉପଲକ୍ଷେ ମୁଁ ଆପଣମାନଙ୍କୁ ହାର୍ଦ୍ଦିକ ଅଭିନନ୍ଦନ ଜଣାଇବା ସଙ୍ଗେ ସଙ୍ଗେ ଆଗାମୀ ଦିନରେ ଆପଣମାନଙ୍କର ସର୍ବାଙ୍ଗୀନ ଉନ୍ନତି ଓ ସମୃଦ୍ଧି କାମନା କରୁଛି । ଆଜିର ଏହି ଐତିହାସିକ ଦିବସରେ ଜାତିର ପିତା ମହାତ୍ମା ଗାନ୍ଧୀ ଏବଂ ସମ୍ବିଧାନ ପ୍ରଣେତାମାନଙ୍କ ସମେତ ଯେଉଁମାନଙ୍କର ଅଦମ୍ୟ ସଂଗ୍ରାମ ଓ ବଳିଦାନ ଆମମାନଙ୍କ ନିମନ୍ତେ ଆଜିର ଏହି ଐତିହାସିକ ସଫଳତା ଆଣିବାରେ ସହାୟକ ହୋଇପାରିଛି, ସେମାନଙ୍କୁ ଆମେ ଆମର ହୃଦୟର ଗଭୀରତମ ପ୍ରଦେଶରୁ କୃତଜ୍ଞତା ଜଣାଉଛୁ ।

ସମାଜରେ ସମାନତା ଆଣିବା ସହିତ ଦୁର୍ବଳବର୍ଗଙ୍କ କଲ୍ୟାଣ ଏବଂ ସମସ୍ତଙ୍କ ନିମନ୍ତେ ସାମାଜିକ ଓ ଅର୍ଥନୈତିକ ନ୍ୟାୟକୁ ସୁନିଶ୍ଚିତ କରିବା ଲକ୍ଷ୍ୟରେ, ୬୫ବର୍ଷ ପୂର୍ବେ ସମ୍ବିଧାନର ପ୍ରଣେତାମାନେ ଆମ ପାଇଁ ଏକ ସମ୍ବିଧାନ ପ୍ରସ୍ତୁତ କରିଥିଲେ । ଏହି ମୂଲ୍ୟବୋଧକୁ ଧରି ରଖିବା, ଆମ ପାଇଁ ଏକ ଆହ୍ୱାନ ଥିଲା । ଏହି ଲକ୍ଷ୍ୟ ହାସଲ କରିବା ନିମନ୍ତେ ଆମେ ନିରବଚ୍ଛିନ୍ନ ଭାବେ ଉଦ୍ୟମ ଜାରି ରଖିଛୁ ।

ସମଗ୍ର ବିଶ୍ୱ ପ୍ରେକ୍ଷାପଟ୍ଟରେ ସମ୍ପ୍ରତି ଭାରତ ଅନ୍ୟ ରାଷ୍ଟ୍ରମାନଙ୍କ ସମ୍ମୁଖରେ ଆଜି ଏକ ବୃହତ୍ ଗଣତନ୍ତ୍ର ରୂପେ ପଥପ୍ରଦର୍ଶକ ହୋଇପାରିଛି । ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱାଧୀନ ସ୍ୱାଧୀନତା ସଂଗ୍ରାମରେ ଅନେକ ସ୍ୱାଧୀନତା ସଂଗ୍ରାମୀମାନଙ୍କ ଦେଶପ୍ରେମ ଓ ବଳିଦାନର ଅପୂର୍ବ ଗାଥା ଜନସାଧାରଣଙ୍କ ମନରେ ଅଲିଭା ଛାପ ଛାଡିଯାଇଛି ।

ଭାରତୀୟ ସ୍ୱାଧୀନତା ସଂଗ୍ରାମର ବୀର ସଂଗ୍ରାମୀ ଓ ଶହୀଦ୍‌ମାନଙ୍କୁ ମୁଁ ସମ୍ମାନ ଜଣାଇବା ସହ ସେମାନଙ୍କ ପ୍ରତି ମୋର ଗଭୀର କୃତଜ୍ଞତା ଜ୍ଞାପନ କରୁଛି । ଆମ ଜାତି, ଆମ ସମ୍ବିଧାନ ଓ ଏହାର ମୂଲ୍ୟବୋଧକୁ ସୁରକ୍ଷିତଭାବେ ଧରି ରଖିବା ପାଇଁ ଆମେ ସମସ୍ତେ ପୁନଃ ଉତ୍ସର୍ଗୀକୃତ ହେବା ବିଧେୟ । ଆମ ଜାତୀୟ ଜୀବନରେ, ଏହି ସାଧାରଣତନ୍ତ୍ର ଦିବସ ପାଳନ ଅତୀବ ଗୁରୁତ୍ୱ ବହନ କରେ । ଆମର ସଂସ୍କୃତି, ଐତିହ୍ୟ ସର୍ବଦା ଶାନ୍ତି, ସଂହତି ଏବଂ ବିଶ୍ୱ ଭ୍ରାତୃତ୍ୱର ବାର୍ତ୍ତା ପ୍ରସାର କରିଆସିଛି । ଶୃଙ୍ଖଳା, ଉତ୍ସର୍ଗୀକୃତ ମନୋଭାବ ଏବଂ କଠିନ ପରିଶ୍ରମ ଦ୍ୱାରା ସମୃଦ୍ଧି ହାସଲ ନିମନ୍ତେ ଆମକୁ ଅଧିକ ପ୍ରଯତ୍ନଶୀଳ ହେବାକୁ ପଡିବ ।

ଏହି ପବିତ୍ର ଅବସର ଆମ୍ଭମାନଙ୍କୁ ଅତୀତର ସଫଳତା ତର୍ଜମା କରିବା ପାଇଁ ଉତ୍ସାହିତ କରେ ଏବଂ ଆମର ଐକ୍ୟ ଓ ସଂହତିକୁ ସୁଦୃଢ଼ କରିବାକୁ ଆଗକୁ ଥିବା ଦାୟିତ୍ୱ ସମ୍ପର୍କରେ ସଚେତନ କରିଥାଏ । ସମଗ୍ର ଦେଶରେ ଓଡ଼ିଶାକୁ ଏକ ବିକଶିତ ରାଜ୍ୟରେ ପରିଣତ କରିବା ନିମନ୍ତେ ଆମେ ନିଜକୁ ପୁନଃ ଉତ୍ସର୍ଗୀକୃତ କରୁଛୁ ।

ପ୍ରମୁଖ ତଥା ଗୁରୁତ୍ୱପୂର୍ଣ୍ଣ କ୍ଷେତ୍ରର ନିରବଚ୍ଛିନ୍ନ ଆର୍ଥିକ ଅଭିବୃଦ୍ଧି ନିମନ୍ତେ ରାଜ୍ୟ ସରକାର ବିକାଶୋନ୍ମୁଖୀ ପଦକ୍ଷେପମାନ ଗ୍ରହଣ କରିଛନ୍ତି ଏବଂ ଏହାର ସଫଳତା ନିମନ୍ତେ ବିଭିନ୍ନ କାର୍ଯ୍ୟକ୍ରମ ଜରିଆରେ ସାଧାରଣ ସମ୍ବଳର ସୁବିନିଯୋଗ କରୁଛନ୍ତି ।

ଓଡ଼ିଶାକୁ ଏକ କୃଷି ସମୃଦ୍ଧ ରାଜ୍ୟରେ ପରିଣତ କରି ସମସ୍ତଙ୍କୁ ଖାଦ୍ୟ ସୁରକ୍ଷା ଯୋଗାଇଦେବା ରାଜ୍ୟ ସରକାରଙ୍କର ଏକ ଗୁରୁତ୍ୱପୂର୍ଣ୍ଣ ଲକ୍ଷ୍ୟ । ଏଥିନିମନ୍ତେ କଠିନ ପରିଶ୍ରମ ଜାରି ରହିଛି । ସ୍ୱତନ୍ତ୍ର କୃଷି ବଜେଟ୍ ଉପସ୍ଥାପନ କରିବାରେ ଓଡ଼ିଶା ଦେଶର ଦ୍ୱିତୀୟ ରାଜ୍ୟ । ଏତଦ୍‌ବ୍ୟତୀତ ଗତ ଫାଇଲିନ୍ ବାତ୍ୟାରେ ପ୍ରଭୂତ କ୍ଷତି ହୋଇଥିଲେ ମଧ୍ୟ କୃଷି ଉତ୍ପାଦନ କ୍ଷେତ୍ରରେ ଓଡ଼ିଶା ବିଗତ ୪ବର୍ଷ ମଧ୍ୟରେ ତୃତୀୟ ଥର ପାଇଁ ସମ୍ମାନଜନକ 'କୃଷି କର୍ମଣ ପୁରସ୍କାର' ହାସଲ କରିଛି । ଏହା ଆମ ରାଜ୍ୟର କୃଷକମାନଙ୍କର ନିପୁଣତାକୁ ପ୍ରତିପାଦିତ କରିବା ସହ ଏ ଦିଗରେ ରାଜ୍ୟ ସରକାରଙ୍କର ସୁଚିନ୍ତିତ ପଦକ୍ଷେପକୁ ପ୍ରତିପାଦନ କରେ ଏବଂ ଏଥିରୁ କୃଷକମାନଙ୍କର ଉନ୍ନତି ଏବଂ ଖାଦ୍ୟ ସୁରକ୍ଷା ନିମନ୍ତେ ରାଜ୍ୟ ସରକାରଙ୍କର ପ୍ରତିବଦ୍ଧତା ସ୍ପଷ୍ଟ ପ୍ରତୀୟମାନ ହୁଏ ।

କୃଷି ଉତ୍ପାଦନ ବୃଦ୍ଧି ନିମନ୍ତେ, ଆଗାମୀ ୫ ବର୍ଷ ମଧ୍ୟରେ ଅଧିକ ୧୦ଲକ୍ଷ ହେକ୍ଟର ଜମିରେ ଜଳସେଚନ ସାମର୍ଥ୍ୟ ସୃଷ୍ଟି କରିବା ଉଦ୍ଦେଶ୍ୟରେ ସର୍ବବିଧ ଉଦ୍ୟମ ଜାରି ରହିଛି । ଏହି ଲକ୍ଷ୍ୟ ହାସଲ ନିମନ୍ତେ ବୃହତ, ମଧ୍ୟମ, କ୍ଷୁଦ୍ର ଜଳସେଚନ ପ୍ରକଳ୍ପ, ଗଭୀର ବୋର୍‌ୱେଲ୍, ବୃହତ ଉଠା ଜଳସେଚନ ପ୍ରକଳ୍ପ, ଅଚଳ ଉଠା ଜଳସେଚନଗୁଡ଼ିକୁ କାର୍ଯ୍ୟକ୍ଷମ ଏବଂ ବୋର୍‌ୱେଲ୍ ଓ ଉଠା ଜଳସେଚନ ପ୍ରକଳ୍ପଗୁଡ଼ିକୁ ବିଦ୍ୟୁତ୍ ସଂଯୋଗ ପାଇଁ ଆଗାମୀ ୫ବର୍ଷ ନିମନ୍ତେ ପ୍ରତ୍ୟେକ ବର୍ଷ ୫ ହଜାର କୋଟି ଟଙ୍କା ବ୍ୟୟ ନିମନ୍ତେ ପ୍ରସ୍ତାବ ରହିଛି । ଗୁଣାତ୍ମକମାନର ବିହନ, ସାର, କୀଟନାଶକ ଏବଂ କୃଷି ଯାନ୍ତ୍ରିକୀକରଣ ସମେତ ସ୍ୱଳ୍ପ ସୁଧ ହାରରେ କୃଷି ଋଣ ପ୍ରଦାନ ଏ ଦିଗରେ ପ୍ରମୁଖ ଆବଶ୍ୟକତା । କୃଷି ବିପଣନ କ୍ଷେତ୍ରରେ ସହାୟତା, ବଜାର ସୁବିଧା ଓ ସୂଚନା ଆହରଣ ନିମନ୍ତେ ଏସ୍‌ଏମ୍‌ଏସ୍ ସୁବିଧା ସହ ଶୀତଳ ଭଣ୍ଡାର ନିର୍ମାଣ, ଖଳାବାଡ଼ି ନିର୍ମାଣ, ଉପଯୁକ୍ତ ପ୍ରାଙ୍ଗଣ ଏବଂ ମଣ୍ଡି ପ୍ରଭୃତି ସୁବିଧା ସୁଯୋଗ ପ୍ରଦାନ ଲକ୍ଷ୍ୟରେ ରାଜ୍ୟ ସରକାର ଏକ ସୁବିସ୍ତୃତ ନେଟ୍‌ୱର୍କ ସ୍ଥାପନ ନିମନ୍ତେ ପ୍ରତିଶ୍ରୁତିବଦ୍ଧ ।

ପ୍ରସ୍ତାବିତ ନୂତନ 'ଓଡ଼ିଶା ଖାଦ୍ୟ ସୁରକ୍ଷା ଅଧିନିୟମ' ଜରିଆରେ ରାଜ୍ୟ ସରକାର ଜନଜାତି, ବସ୍ତିବାସିନ୍ଦା ଏବଂ ସମାଜର ଅନ୍ୟାନ୍ୟ ଦୁର୍ବଳ ବର୍ଗଙ୍କ ନିମନ୍ତେ ଖାଦ୍ୟଶସ୍ୟର ସମବଣ୍ଟନକୁ ସୁନିଶ୍ଚିତ କରିଛନ୍ତି । ପ୍ରତି ପରିବାରର ସାମାଜିକ ଓ ଅର୍ଥନୈତିକ ଅବସ୍ଥାକୁ ପ୍ରତିଫଳିତ କରୁଥିବା ସୂଚକାଙ୍କକୁ ବ୍ୟବହାର କରି ଏହି କାର୍ଯ୍ୟକ୍ରମକୁ ବ୍ୟାପକ କରିବା ଲକ୍ଷ୍ୟରେ ଏକ ବ୍ୟବସ୍ଥା ପ୍ରଚଳନ ହେବାକୁ ଯାଉଛି ।

ଗ୍ରାମାଞ୍ଚଳର ଗରିବ ଲୋକଙ୍କୁ ଆଶ୍ରୟ ନିରାପତ୍ତା ଯୋଗାଇ ଦେବା ରାଜ୍ୟ ସରକାରଙ୍କ ଅନ୍ୟତମ ପ୍ରମୁଖ ଲକ୍ଷ୍ୟ । ସରକାରଙ୍କ ନିଜସ୍ୱ ଯୋଜନା 'ବିଜୁ ପକ୍କା ଘର ଯୋଜନା' ମାଧ୍ୟମରେ ଗ୍ରାମାଞ୍ଚଳର ସମସ୍ତ କଚ୍ଚା ଘରକୁ ପକ୍କା ଘରରେ ପରିଣତ କରିବା ପାଇଁ କାର୍ଯ୍ୟକ୍ରମ ଚାଲୁରହିଛି । ଏତଦ୍‌ଭିନ୍ନ ଉଭୟ ଗ୍ରାମାଞ୍ଚଳ ଓ ସହରାଞ୍ଚଳର ବାସଗୃହହୀନ ପରିବାରଙ୍କ ନିମନ୍ତେ ବାସୋପଯୋଗୀ ଗୃହ ସୁନିଶ୍ଚିତ କରିବା ଲକ୍ଷ୍ୟରେ 'ଆଶ୍ରୟ ନିରାପତ୍ତା ମିଶନ' ଖୁବ୍‌ଶୀଘ୍ର କାର୍ଯ୍ୟକାରୀ ହେବାକୁ ଯାଉଛି ।

ମହିଳାମାନଙ୍କ ସାମାଜିକ ଓ ଅର୍ଥନୈତିକ ସଶକ୍ତିକରଣ ଦିଗରେ ରାଜ୍ୟ ସରକାର ପ୍ରତିଶ୍ରୁତିବଦ୍ଧ । ବାଳିକା ଏବଂ ମହିଳାମାନଙ୍କୁ ସଶକ୍ତ କରିବା ଉଦ୍ଦେଶ୍ୟରେ 'ଓଡ଼ିଶା ରାଜ୍ୟ ବାଳିକା ଓ ମହିଳା ନୀତି' ପ୍ରଣୟନ ହୋଇଛି, ଯେଉଁଥିରେ କି ଉତ୍ତରାଧିକାର ସ୍ୱତ୍ୱ, ସମାନ ଭୂ-ସମ୍ପତ୍ତି ଅଧିକାର, ନିମ୍ନ ଆୟକାରୀ ବାସହୀନ ମହିଳାଙ୍କ ନିମନ୍ତେ ମାଗଣା ୪ ଡିସିମିଲି ବାସୋପଯୋଗୀ ଜମି, ଭିନ୍ନକ୍ଷମ ମହିଳାଙ୍କ ନିମନ୍ତେ ସ୍ୱତନ୍ତ୍ର ପ୍ୟାକେଜ୍ ପ୍ରଭୃତିର ବ୍ୟବସ୍ଥା ରହିଛି । ରାଜ୍ୟର ମହିଳାମାନଙ୍କୁ ସଶକ୍ତ କରିବା ଲକ୍ଷ୍ୟରେ ପ୍ରବର୍ତ୍ତିତ 'ମିଶନ ଶକ୍ତି' କାର୍ଯ୍ୟକ୍ରମ ଓ 'ମମତା' ଯୋଜନା ସର୍ବାଧିକ ଜନାଦୃତି ଲାଭ କରିଛି ।

ଓଡ଼ିଶାର ପ୍ରଗତି କ୍ଷେତ୍ରରେ ଯୁବଗୋଷ୍ଠୀଙ୍କ ଭୂମିକାକୁ ସ୍ୱୀକୃତି ଦେଇ 'ରାଜ୍ୟ ଯୁବନୀତି' କାର୍ଯ୍ୟକାରୀ କରାଯାଇଛି । ଏହି ନୀତିର ପ୍ରମୁଖ ଲକ୍ଷ୍ୟ ହେଉଛି ଯେ ଏହା 'ରାଜ୍ୟ ନିଯୁକ୍ତି ମିଶନ' ଜରିଆରେ ପ୍ରତିବର୍ଷ ୧.୫ ଲକ୍ଷ ଯୁବକ ଯୁବତୀଙ୍କୁ ଦକ୍ଷତା ବୃଦ୍ଧି ନିମନ୍ତେ ତାଲିମ୍ ପ୍ରଦାନ ।

ଆତ୍ମ ନିଯୁକ୍ତି ନିମନ୍ତେ ଋଣ ଓ ରିହାତି ବ୍ୟବସ୍ଥା ଥାଇ ପ୍ରତି ପଞ୍ଚାୟତର ଅନ୍ୟୂନ ୧୫୦ ଯୁବକଯୁବତୀଙ୍କ ସହ ଆଗାମୀ ୫ବର୍ଷ ମଧ୍ୟରେ ୧୧ଲକ୍ଷ ଯୁବକଯୁବତୀଙ୍କ ଦକ୍ଷତା ବୃଦ୍ଧି ନିମନ୍ତେ 'ମୁଖ୍ୟମନ୍ତ୍ରୀଙ୍କ ନିଯୁକ୍ତି ସୃଷ୍ଟି କାର୍ଯ୍ୟକ୍ରମ' ଆରମ୍ଭ କରାଯାଇଛି ।

ରାଜ୍ୟର ଉଭୟ ଗ୍ରାମାଞ୍ଚଳ ଓ ସହରାଞ୍ଚଳରେ ଥିବା ଜନବସତିଗୁଡ଼ିକୁ ବିଦ୍ୟୁତିକରଣ କରିବା ଲକ୍ଷ୍ୟରେ 'ବିଜୁ ଗ୍ରାମଜ୍ୟୋତି ଯୋଜନା' ଏବଂ 'ବିଜୁ ସହରାଞ୍ଚଳ ବିଦ୍ୟୁତିକରଣ ଯୋଜନା' ରାଜ୍ୟ ସରକାରଙ୍କ ଦୁଇଟି ପ୍ରମୁଖ କାର୍ଯ୍ୟକ୍ରମ ।

ପଶ୍ଚିମ ଓଡ଼ିଶା ତଥା କେ.ବି.କେ ଅଞ୍ଚଳର ୮ ଗୋଟି ପଛୁଆ ଜିଲ୍ଲାକୁ ସଂଯୋଗ କରୁଥିବା ଜୀବନରେଖା ସଦୃଶ ୩୨୦୦ କୋଟି ଟଙ୍କା ବ୍ୟୟ ଅଟକଳରେ ୬୫୬ କି.ମି. ଦୈର୍ଘ୍ୟର ୪ ଲେନ୍ ବିଶିଷ୍ଟ 'ବିଜୁ ଏକ୍ସପ୍ରେସ ୱେ' ନିର୍ମାଣକୁ କାର୍ଯ୍ୟକାରୀ କରାଇ ରାଜ୍ୟ ସରକାର ପଶ୍ଚିମାଞ୍ଚଳ ଓ କେବିକେ ଜିଲ୍ଲାଗୁଡ଼ିକରେ ଯୋଗାଯୋଗ ବ୍ୟବସ୍ଥାକୁ ସୁଦୃଢ଼ କରିବା ପାଇଁ ପ୍ରତିଶ୍ରୁତିବଦ୍ଧତା ଓ ଅଗ୍ରାଧିକାର ପ୍ରକାଶ କରିଛନ୍ତି । ଜନସାଧାରଣଙ୍କର ସାମାଜିକ ତଥା ଅର୍ଥନୈତିକ ଉନ୍ନତି କ୍ଷେତ୍ରରେ ରାଜ୍ୟ ରାଜପଥର ଭୂମିକାକୁ ଗୁରୁତ୍ୱ ଦେଇ ରାଜ୍ୟ ସରକାର ରାଜପଥଗୁଡ଼ିକର ଉନ୍ନତିକରଣ ନିମନ୍ତେ ଏକ ନୂତନ ପଦକ୍ଷେପ ସ୍ୱରୂପ 'ରାଜ୍ୟ ରାଜପଥ ଉନ୍ନୟନ କାର୍ଯ୍ୟକ୍ରମ' ହାତକୁ ନେଇଛନ୍ତି । ବ୍ୟାପକ 'ସିମେଣ୍ଟ କଂକ୍ରିଟ୍ ରାସ୍ତା ନିର୍ମାଣ' ଏବଂ 'ବିଜୁ ସେତୁ ଯୋଜନା'ରେ ସେତୁ ନିର୍ମାଣ ଯୋଗାଯୋଗ କ୍ଷେତ୍ରରେ ବାସ୍ତବିକ ଉଲ୍ଲେଖନୀୟ ପଦକ୍ଷେପ । ଅନ୍ୟ କୌଣସି ଯୋଗାଯୋଗ ବ୍ୟବସ୍ଥାରେ ଅନ୍ତର୍ଭୁକ୍ତ ହୋଇନଥିବା ୧୦୦ ଜଣ ପର୍ଯ୍ୟନ୍ତ ଜନସଂଖ୍ୟା ଥିବା କ୍ଷୁଦ୍ର ଜନବସତିଗୁଡ଼ିକୁ 'ମୁଖ୍ୟମନ୍ତ୍ରୀ ସଡକ ଯୋଜନା' ଜରିଆରେ ସବୁଦିନିଆ ଯୋଗାଯୋଗ ବ୍ୟବସ୍ଥା ପାଇଁ ଲକ୍ଷ୍ୟ ରଖାଯାଇଛି ।

ରାଜ୍ୟର ପ୍ରତି ବ୍ଲକ୍ ସଦର ମହକୁମାରେ ଗୁଣାତ୍ମକମାନର ଇଂରାଜୀ ମାଧ୍ୟମ ଶିକ୍ଷାର ପ୍ରବର୍ତ୍ତନ ଦିଗରେ ପ୍ରତିଶ୍ରୁତିବଦ୍ଧ ରାଜ୍ୟ ସରକାର ଅତିକମ୍‌ରେ ୧୦୦ ସଂଖ୍ୟକ ମଡେଲ୍ ପବ୍ଲିକ୍ ସ୍କୁଲ୍ ଜୁନ୍ ୨୦୧୫ ସୁଦ୍ଧା ନିର୍ମାଣ ନିମନ୍ତେ ପଦକ୍ଷେପ ଗ୍ରହଣ କରିଛନ୍ତି । ଅନୁସୂଚିତ ଜନଜାତି/ଜାତିବର୍ଗଙ୍କ ଶିକ୍ଷାର ବିକାଶ ପ୍ରତି ଦୃଷ୍ଟି ଦେଇ ରାଜ୍ୟ ସରକାର ବିଶେଷ ଭାବେ ହଷ୍ଟେଲ୍ ନିର୍ମାଣ ସହିତ ବିବିଧ କାର୍ଯ୍ୟକ୍ରମମାନ ହାତକୁ ନେଇଛନ୍ତି ।

ରାଜ୍ୟରେ ଗର୍ଭବତୀ ମହିଳା ଓ ନବଜାତ ଶିଶୁଙ୍କ ସୁବିଧା ନିମନ୍ତେ '୧୦୨ ଆମ୍ବୁଲାନ୍ସ ସେବା' କାର୍ଯ୍ୟକାରୀ ହୋଇଛି । ନାଗରିକମାନଙ୍କୁ ମାଗଣାରେ ଔଷଧ ପ୍ରଦାନ ନିମନ୍ତେ 'ଓଡ଼ିଶା ରାଜ୍ୟ ଚିକିତ୍ସା ସେବା ନିଗମ'ର ପରିକଳ୍ପନା କରାଯାଇଛି ।

ମାରାତ୍ମକ ରୋଗରେ ପୀଡିତ ରୋଗୀମାନଙ୍କୁ ୩ଲକ୍ଷ ଟଙ୍କା ପର୍ଯ୍ୟନ୍ତ ଚିକିତ୍ସା ସହାୟତା ଯୋଗାଇ ଦେବାର ଲକ୍ଷ୍ୟ ନେଇ 'ଓଡ଼ିଶା ରାଜ୍ୟ ଚିକିତ୍ସା ପାଣ୍ଠି' କାର୍ଯ୍ୟ କରୁଛି । 'ବିଜୁ କୃଷକ କଲ୍ୟାଣ ଯୋଜନା' କାର୍ଯ୍ୟକାରୀ କରାଯାଇ କୃଷକ/କୃଷି ଶ୍ରମିକ ପରିବାରର ୫ଜଣ ସଦସ୍ୟଙ୍କୁ ୧ଲକ୍ଷ ଟଙ୍କା ପର୍ଯ୍ୟନ୍ତ ମାଗଣା ସ୍ୱାସ୍ଥ୍ୟବୀମା ସୁବିଧା ଯୋଗାଇ ଦିଆଯାଉଛି । ସମ୍ପ୍ରତି ରାଜ୍ୟର ପ୍ରାୟ ୫୫ ଲକ୍ଷ କୃଷି ପରିବାର ଏହି ସୁବିଧା ମାଧ୍ୟମରେ ଉପକୃତ ହେବା ନିଶ୍ଚିତ ରୂପେ ଏକ ଉଲ୍ଲେଖନୀୟ ଉପଲବ୍ଧି ।

ମଧୁବାବୁ ପେନ୍‌ସନ୍ ଯୋଜନାରେ ଗରିବ ହିତାଧିକାରୀଙ୍କୁ ସାମାଜିକ ସୁରକ୍ଷା ଯୋଗାଇ ଦେବା ଏବଂ କେ.ବି.କେ ଅଞ୍ଚଳ ଓ କନ୍ଧମାଳ ଓ ଗଜପତି ଜିଲ୍ଲାରେ ଦାରିଦ୍ର୍ୟ ହ୍ରାସ ସହିତ ବିକାଶର ଧାରାକୁ ତ୍ୱରାନ୍ୱିତ କରିବାରେ 'ବିଜୁ କେ.ବି.କେ ଯୋଜନା' ସହ 'ବିଜୁ କନ୍ଧମାଳ ଓ ଗଜପତି ଯୋଜନା' ସହାୟକ ହୋଇଛି । ଜଙ୍ଗଲରେ ବସବାସ କରୁଥିବା ଅନୁସୂଚିତ ଜନଜାତିଙ୍କୁ 'ଜଙ୍ଗଲ ଅଧିକାର ଅଧିନିୟମ' ଅନୁଯାୟୀ ସ୍ୱତ୍ତ୍ୱାଧିକାର ପଟ୍ଟା ବଣ୍ଟନ କ୍ଷେତ୍ରରେ ସମଗ୍ର ଦେଶରେ ଓଡ଼ିଶା ପ୍ରଥମ ରାଜ୍ୟ ହେବାର ଗୌରବ ଅର୍ଜନ କରିଛି ।

ଶାନ୍ତିପୂର୍ଣ୍ଣ ସହାବସ୍ଥାନ, ନିଷ୍ଠାପରତା, କଠିନ ପରିଶ୍ରମ ଏବଂ ସୁଶାସନ ଜରିଆରେ ହିଁ କେବଳ ସମୃଦ୍ଧି ହାସଲ ହୋଇପାରିବ । ବେଳେବେଳେ ବିଭେଦକାରୀ ଶକ୍ତି, ସାମାଜିକ ମୈତ୍ରୀ ଏବଂ ସାମଗ୍ରିକ ବିକାଶଧାରାର ଲକ୍ଷ୍ୟକୁ ବ୍ୟାଘାତ ଦେବା ସହ ଗୁରୁତର ଆହ୍ୱାନ ସୃଷ୍ଟି କରିଥାଏ । ମୁଁ ଦୃଢ ନିଶ୍ଚିତ ଯେ, ସମ୍ମିଳିତ ଉଦ୍ୟମ ଦ୍ୱାରା ଆମେ ଏହି ବାଧାବିଘ୍ନକୁ ସଫଳତାର ସହ ମୁକାବିଲା କରିପାରିବା ।

ଆଜିର ଏହି ସ୍ମରଣୀୟ ଦିବସ ପାଳନ ଅବସରରେ, ଓଡ଼ିଶାର ସାମଗ୍ରିକ ବିକାଶର ଧାରାକୁ ତ୍ୱରାନ୍ୱିତ କରିବା ସହ ରାଜ୍ୟକୁ ପ୍ରଗତି ଓ ସମୃଦ୍ଧି ପଥରେ ଆଗେଇ ନେଇ ଦେଶର ଏକ ଅଗ୍ରଣୀ ରାଜ୍ୟରେ ପରିଣତ କରିବାକୁ ମୁଁ ସମସ୍ତଙ୍କୁ ବିନମ୍ରତାର ସହ ଆହ୍ୱାନ କରୁଛି ।

**ଜୟହିନ୍ଦ୍ ।**

*ସାଧାରଣତନ୍ତ୍ର ଦିବସ -୨୦୧୫ ଅବସରରେ*

# ଓଡ଼ିଶାର ମାନ୍ୟବର ମୁଖ୍ୟମନ୍ତ୍ରୀ

# ଶ୍ରୀ ନବୀନ ପଟ୍ଟନାୟକଙ୍କ

# ବାର୍ତ୍ତା



ପ୍ରିୟ ଭାଇ ଓ ଭଉଣୀମାନେ,

ଆଜି ସାଧାରଣତନ୍ତ୍ର ଦିବସ । ଏହି ଅବସରରେ ଆପଣମାନଙ୍କୁ ମୋର ଅଭିନନ୍ଦନ ଜଣାଉଛି । ଜାତିର ପିତା ମହାତ୍ମା ଗାନ୍ଧୀ, ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କ ପରି ମହାନ ନେତାମାନଙ୍କ ନେତୃତ୍ୱରେ ଆମ ସ୍ୱାଧୀନତା ସଂଗ୍ରାମରେ ଭାଗ ନେଇଥିବା ସଂଗ୍ରାମୀ ପ୍ରତି ମୋର ସମ୍ମାନ ଜଣାଉଛି । ଭାରତର ମୁକ୍ତି ସଂଗ୍ରାମରେ ଓଡ଼ିଶା ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲା । ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ, ବୀର ସୁରେନ୍ଦ୍ର ସାଏ, ବକ୍ସି ଜଗବନ୍ଧୁ, ଉତ୍କଳଗୌରବ ମଧୁସୂଦନ ଦାସ, ଗୋପବନ୍ଧୁ ଚୌଧୁରୀ, ମା' ରମାଦେବୀ, ନବକୃଷ୍ଣ ଚୌଧୁରୀ, ମାଳତୀ ଚୌଧୁରୀ, ଶହୀଦ୍ ଲକ୍ଷ୍ମଣ ନାଏକ, ଡଃ ହରେକୃଷ୍ଣ ମହତାବ ଓ ବିଜୁ ପଟ୍ଟନାୟକଙ୍କ ପରି ନେତାମାନଙ୍କ ତ୍ୟାଗ ଓ ଦେଶଭକ୍ତି ଓଡ଼ିଶାରେ ସ୍ୱାଧୀନତା ସଂଗ୍ରାମକୁ ଅଧିକ ଶକ୍ତିଶାଳୀ କରିଥିଲା ।

ସେହିପରି ଆମ ସ୍ୱାଧୀନତାର ସୁରକ୍ଷା ପାଇଁ ଶହୀଦ୍ ହୋଇଥିବା ଅମର ଯବାନ୍‌ମାନଙ୍କ ପ୍ରତି ଏହି ଅବସରରେ ମୋର ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

ଆମର ସ୍ୱାଧୀନତା ସଂଗ୍ରାମ ପରି ଆମ ସମ୍ବିଧାନ ମଧ୍ୟ ଏକ ଆଦର୍ଶ ସମ୍ବିଧାନ । ଆଜିର ଦିନରେ ଏହା କାର୍ଯ୍ୟକାରୀ ହୋଇଥିଲା । ଏହି ପବିତ୍ର ଦିବସ ଅବସରରେ ମୁଁ ଡଃ ବି. ଆର୍. ଆମ୍ବେଦକର ଓ ସମ୍ବିଧାନ ପ୍ରଣୟନ ସଭାର ସଦସ୍ୟମାନଙ୍କ ପ୍ରତି ମୋର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

ସମସ୍ତଙ୍କ ପାଇଁ ସମାନ ସୁଯୋଗ, ସମସ୍ତଙ୍କୁ ନ୍ୟାୟ ଓ ଏକ ଶକ୍ତିଶାଳୀ ବିକଶିତ, ଗଣତାନ୍ତ୍ରିକ ଓ ଧର୍ମନିରପେକ୍ଷ ଭାରତ ଆମ ସମ୍ବିଧାନର ଲକ୍ଷ୍ୟ । ସଂଘୀୟ ବ୍ୟବସ୍ଥା ଆମ ସମ୍ବିଧାନର ଆତ୍ମା। ତେଣୁ ସଂଘୀୟ ବ୍ୟବସ୍ଥାର ବିକାଶ ଉପରେ ଅଧିକ ଧ୍ୟାନ ଦିଆଯିବା ଦରକାର । ଏହା ଦ୍ୱାରା ରାଜ୍ୟମାନଙ୍କର ସ୍ୱାର୍ଥର ସୁରକ୍ଷା ସହିତ ଦେଶ ମଧ୍ୟ ଅଧିକ ଶକ୍ତିଶାଳୀ ହୋଇପାରିବ ।

ଭିତ୍ତିଭୂମିଠାରୁ ଆରମ୍ଭ କରି ସାମାଜିକ ସୁରକ୍ଷା ପର୍ଯ୍ୟନ୍ତ ବିଭିନ୍ନ କ୍ଷେତ୍ରରେ ରାଜ୍ୟ ସରକାର ନିଜ ସମ୍ବଳରୁ ଆଜି ଅନେକ ଯୋଜନା କରିପାରିଛନ୍ତି । ବିଜୁ ଏକ୍ସପ୍ରେସ୍ ୱେ ରାଜ୍ୟରେ ଯୋଗାଯୋଗର ବିକାଶ କ୍ଷେତ୍ରରେ ଏକ ମାଇଲଖୁଣ୍ଟ ହେବାକୁ ଯାଉଛି । ସେହିପରି ଆଶ୍ରୟ ନିରାପତ୍ତା ମିଶନ (Shelter Security Mission) ରାଜ୍ୟରେ ଗୃହ ନିର୍ମାଣ କ୍ଷେତ୍ରର ବିକାଶ

ପାଇଁ ଏକ ଐତିହାସିକ ପଦକ୍ଷେପ ହୋଇରହିବ । ଆଗାମୀ ପାଞ୍ଚ ବର୍ଷରେ ବିଜୁ ପକ୍କା ଘର ଯୋଜନାରେ ସମସ୍ତଙ୍କ ପାଇଁ ଘର ଯୋଗାଇ ଦିଆଯିବ । ରାଜ୍ୟରେ ଆଉ କଚ୍ଚା ଘର ରହିବ ନାହିଁ ।

ଲିଙ୍ଗଗତ ହିଂସା ଓ ଲିଙ୍ଗଗତ ବୈଷମ୍ୟ ହେଉଛି ସବୁଠାରୁ ବଡ ସାମାଜିକ ବ୍ୟାଧି । ଆତଙ୍କବାଦଠାରୁ ମଧ୍ୟ ଏହା ଅଧିକ ବିପଦପୂର୍ଣ୍ଣ । ଏହାକୁ ରୋକିବା ପାଇଁ ଅନେକ କଠୋର ଆଇନ୍ ରହିଛି । କିନ୍ତୁ ସଚେତନତା ଦ୍ୱାରା ହିଁ ଏହାକୁ ସଫଳ ଭାବରେ ରୋକାଯାଇପାରିବ । ମହିଳାମାନଙ୍କ ସୁରକ୍ଷା ଏବଂ ବାଳିକାମାନଙ୍କ କଲ୍ୟାଣ ପାଇଁ ସରକାର ପ୍ରତିବଦ୍ଧତା ସହ କାମ କରୁଛନ୍ତି ଓ କାମ କରିଚାଲିବେ ।

ମହିଳାମାନଙ୍କ କଲ୍ୟାଣ ଓ ସୁରକ୍ଷା ପାଇଁ ନୂଆ ମହିଳା ନୀତି ତଥା ନୂତନ ଯୁବନୀତି ସମାଜର ଦୁଇ ମୁଖ୍ୟ ବର୍ଗକୁ ଦେଶ ନିର୍ମାଣରେ ସାମିଲ କରିବା ପାଇଁ ସୁଯୋଗ ସୃଷ୍ଟି କରିଛି ।

ଆଦିବାସୀ, ଦଳିତ ଓ ଗରିବ ଲୋକଙ୍କ କଲ୍ୟାଣ ପାଇଁ ରାଜ୍ୟ ସରକାର ବିଭିନ୍ନ କାର୍ଯ୍ୟକ୍ରମ କାର୍ଯ୍ୟକାରୀ କରୁଛନ୍ତି । ଗରିବ ଲୋକଙ୍କ ବିକାଶ ଆମ ପାଇଁ ଏକ ପ୍ରତିବଦ୍ଧତା ଏବଂ ଏହା ସେମାନଙ୍କର ଅଧିକାର । ଏଥିରୁ ସେମାନଙ୍କୁ କେହି ବଞ୍ଚିତ କରିପାରିବ ନାହିଁ ।

ଖାଦ୍ୟ ନିରାପତ୍ତା ଆମର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟକ୍ରମ । କେ.ଜି. ଏକ ଟଙ୍କାରେ ଚାଉଳ ଆଜି ଗାଁଠାରୁ ସହର ସମସ୍ତଙ୍କ ଖାଦ୍ୟ ନିରାପତ୍ତା ଯୋଗାଇବାରେ ସଫଳ ହୋଇଛି । ରାଜ୍ୟ ସରକାର ନିଜର ଏକ ଖାଦ୍ୟ ସୁରକ୍ଷା ଅଧିନିୟମ ଆଣିବା ପାଇଁ ସ୍ଥିର କରିଛନ୍ତି । ଏହା ସମସ୍ତଙ୍କୁ ଖାଦ୍ୟ ନିରାପତ୍ତା ଯୋଗାଇବାରେ ସହାୟକ ହେବ ।

କୃଷି ଓ ଜଳସେଚନର ବିକାଶ ଶିକ୍ଷା ପ୍ରସାର, ଭିତ୍ତିଭୂମିର ବିକାଶ, ଦକ୍ଷତା ବୃଦ୍ଧି ତଥା ବିଭିନ୍ନ କଲ୍ୟାଣ କାର୍ଯ୍ୟକ୍ରମ ଆଜି ଓଡ଼ିଶା ପାଇଁ ଏକ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିବାରେ ସଫଳ ହୋଇଛି । ଆଜି ଓଡ଼ିଶା ଏକ happening state ହୋଇପାରିଛି । ମହିଳାମାନଙ୍କର ଆଜି ଆତ୍ମବିଶ୍ୱାସ ବଢ଼ିଛି । ଯୁବ ସମାଜ ମଧ୍ୟରେ ଆଗକୁ ବଢ଼ିବାର ଉଦ୍ଦୀପନା ସୃଷ୍ଟି ହୋଇଛି । ରାଜ୍ୟରେ ଚାଲିଥିବା ବିକାଶଧାରାକୁ ଆଗକୁ ନେବା ପାଇଁ ଏକ ସୁସ୍ଥ ପରିବେଶ ସୃଷ୍ଟି ହୋଇଛି । ଏହାର ସୁଯୋଗ ନେବାପାଇଁ ଓ ଏହାକୁ ସାକାର କରିବା ପାଇଁ ଆସନ୍ତୁ, ସମସ୍ତେ ନିଷ୍ଠା ଓ ଦାୟିତ୍ୱର ସହ କାମ କରିଚାଲିବା ।

**ଜୟହିନ୍ଦ୍ ।**

# ସାଧାରଣତନ୍ତ୍ର ଦିବସ -୨୦୧୫ ଅବସରରେ
# ଓଡ଼ିଶାର ମାନ୍ୟବର ସୂଚନା ଓ ଲୋକ ସଂପର୍କ ଏବଂ ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ମନ୍ତ୍ରୀ
# **ଶ୍ରୀ ଅତନୁ ସବ୍ୟସାଚୀ ନାୟକଙ୍କ**
# **ବାର୍ତ୍ତା**



ପବିତ୍ର ସାଧାରଣତନ୍ତ୍ର ଦିବସ ଉପଲକ୍ଷେ ମୁଁ ରାଜ୍ୟବାସୀ ଭାଇ ଓ ଭଉଣୀମାନଙ୍କୁ ଆନ୍ତରିକ ଶୁଭେଚ୍ଛା ଓ ଅଭିନନ୍ଦନ ଜ୍ଞାପନ କରୁଛି ।

୨୬ ଜାନୁଆରୀ ସ୍ୱାଧୀନ ଭାରତର ଇତିହାସରେ ବିଶେଷ ତାତ୍ପର୍ଯ୍ୟପୂର୍ଣ୍ଣ । ଏହି ଦିନ ଆମ ଦେଶର ସମ୍ବିଧାନ କାର୍ଯ୍ୟକାରୀ ହୋଇଥିଲା ଏବଂ ଏହା ଫଳରେ ଭାରତ ଏକ ସାର୍ବଭୌମ ଗଣତାନ୍ତ୍ରିକ ଧର୍ମନିରପେକ୍ଷ ସମାଜବାଦୀ ରାଷ୍ଟ୍ର ହିସାବରେ ସମଗ୍ର ପୃଥିବୀରେ ପ୍ରତିଷ୍ଠିତ ହେଲା । ସାରା ବିଶ୍ୱର ଆଦର୍ଶ ସମ୍ବିଧାନଗୁଡ଼ିକ ମଧ୍ୟରେ ଆମ ସମ୍ବିଧାନ ଅନ୍ୟତମ ଓ ଏଥିରେ ଭାରତବାସୀଙ୍କ ସ୍ୱପ୍ନ ତଥା ସମ୍ଭାବନା ପ୍ରତିଫଳିତ ହୋଇଛି । ସମ୍ବିଧାନ ପ୍ରଣେତାମାନେ ସମସ୍ତ ପ୍ରଯତ୍ନର ସହିତ ଏହାକୁ ଏକ ଅନନ୍ୟ ଦସ୍ତାବିଜ୍ ଭାବରେ ପ୍ରସ୍ତୁତ କରିଛନ୍ତି ।

ଭାରତର ସ୍ୱାଧୀନତା ଆନ୍ଦୋଳନର ମହାନ ସଂଗ୍ରାମୀମାନଙ୍କୁ ଏହି ପବିତ୍ର ଲଗ୍ନରେ କୃତଜ୍ଞତାର ସହ ସ୍ମରଣ କରୁଛି । ସେମାନଙ୍କର ଅସୀମ ତ୍ୟାଗ ଓ ଅବଦାନ ବଳରେ ଆମେ ବହୁମୂଲ୍ୟ ସ୍ୱାଧୀନତା ହାସଲ କରିପାରିଛେ । ସେମାନଙ୍କ ଜୀବନକାହାଣୀ ଅସରନ୍ତି ଅନୁପ୍ରେରଣାର ଗନ୍ତାଘର । ଜାତି ନିର୍ମାଣ ପ୍ରକ୍ରିୟାରେ ସବୁଦିନ ପାଇଁ ସେହି ମହାପୁରୁଷମାନଙ୍କର ସଂଗ୍ରାମ, ତ୍ୟାଗ ଓ ଅଧ୍ୟବସାୟର ଇତିହାସ ଆମମାନଙ୍କ ନିମନ୍ତେ ଆଦର୍ଶ ହୋଇ ରହିବ ।

ସ୍ୱାଧୀନତା ଆନ୍ଦୋଳନକୁ ଓଡ଼ିଶାର ସଂଗ୍ରାମୀମାନଙ୍କର ଦାନ ଅତୁଳନୀୟ । ଇତିହାସରେ ସେମାନଙ୍କ ଅବଦାନ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ । ଓଡ଼ିଶାର ସାମାଜିକ-ସାଂସ୍କୃତିକ-ଅର୍ଥନୈତିକ ଭବିଷ୍ୟତ ନିମନ୍ତେ ସେହି ମହାପୁରୁଷମାନଙ୍କ କୃତିତ୍ୱ ମାର୍ଗଦର୍ଶକ ଭାବରେ କାର୍ଯ୍ୟ କରୁଥିବ ।

ସ୍ୱାଧୀନତା ପରବର୍ତ୍ତୀ ଭାରତ ବିଶ୍ୱ ଦରବାରରେ ପ୍ରତିଷ୍ଠା ଲାଭ କରିଛି । ବିଶ୍ୱର ଏକ ମହାଶକ୍ତି ଭାବରେ ଉଭା ହୋଇଛି । ବିଭିନ୍ନ କ୍ଷେତ୍ରରେ ବ୍ୟାପକ ପ୍ରଗତି ସାଙ୍ଗକୁ ଆମ ମାନବ ସମ୍ବଳର ଦକ୍ଷତାରେ ପୃଥିବୀର ସବୁ ଦେଶ ପ୍ରଶଂସାମୁଖର

ହୋଇଛନ୍ତି । ଓଡ଼ିଶାରେ ଅନୁରୂପ ପ୍ରଗତିର ଧାରା ଅବ୍ୟାହତ ରହିଛି । ରାଜ୍ୟକୁ ଏକ ଅଗ୍ରଗଣ୍ୟ ଓ ସମୃଦ୍ଧ ରାଜ୍ୟ ଭାବରେ ପ୍ରତିଷ୍ଠିତ କରିବା ପାଇଁ ସମସ୍ତ କାର୍ଯ୍ୟକ୍ରମର ସଫଳ ରୂପାୟନରେ ଆପଣମାନେ ଅର୍ଥପୂର୍ଣ୍ଣ ଭାଗୀଦାରି ଅକ୍ଷୁଣ୍ଣ ରଖିଛନ୍ତି ।

ଆମର ଗଣତନ୍ତ୍ର ବ୍ୟବସ୍ଥା ସବୁ ମହଲରେ ପ୍ରଶଂସିତ ହୋଇଛି । ଭାରତ ଗଣତନ୍ତ୍ରର ପ୍ରୟୋଗଶାଳା ହିସାବରେ ତା'ର ଗୌରବ ପ୍ରତିପାଦନ କରିପାରିଛି । 'ବିବିଧତା ମଧ୍ୟରେ ଏକତା' ଆମ ସମ୍ବିଧାନରେ ପ୍ରତୀକିତ ହୋଇଛି । ଆମର ଐତିହ୍ୟ ଓ ପରମ୍ପରା ସହିତ ପ୍ରଗତି ସମତାଳରେ ସମସ୍ତଙ୍କୁ ଉଦ୍‌ବୁଦ୍ଧ କରିପାରିଛି ।

ସାଧାରଣତନ୍ତ୍ର ଦିବସ ହେଉଛି ପ୍ରତିଜ୍ଞାର ପର୍ବ । ଗଣତନ୍ତ୍ର ଓ ସମ୍ବିଧାନର ମର୍ଯ୍ୟାଦା ରକ୍ଷା କରିବା ନିମନ୍ତେ ପ୍ରତିବଦ୍ଧତା ପ୍ରକାଶ କରିବା ହେଉଛି ଆଜି ଦିବସର ବିଶେଷତ୍ୱ । ଆମେ ସମସ୍ତେ ଦେଶର ସାମଗ୍ରିକ ବିକାଶ ପାଇଁ କାର୍ଯ୍ୟ କରିବା ଓ ଏହାକୁ ସଫଳତାର ଶୀର୍ଷରେ ପହଞ୍ଚାଇବା ପାଇଁ ସଂକଳ୍ପବଦ୍ଧ ହେବା । କର୍ତ୍ତବ୍ୟରେ ଦୃଢ଼ ରହି ଓ ଜାତୀୟତାରେ ଅନୁପ୍ରେରିତ ହୋଇ ଦେଶ ତଥା ରାଜ୍ୟର ପ୍ରଗତି ପାଇଁ ଉଦ୍ୟମ ଜାରି ରଖିବା– ଏହି ମର୍ମରେ ଆଜି ସମସ୍ତେ ସମ୍ମିଳିତ ହୋଇ ଭାରତମାତାର ଜୟଗାନ କରିବା ।

**ଜୟହିନ୍ଦ୍ ।**

# ସମ୍ପାଦକୀୟ




ଜାନୁଆରୀ ୨୬ ତାରିଖ ଭାରତୀୟ ଜାତୀୟ ଜୀବନରେ ଏକ ସ୍ମରଣୀୟ ଦିବସ । ଏହିଦିନ ସ୍ୱାଧୀନ ଭାରତର ସମ୍ବିଧାନ ପ୍ରଣୟନ ହୋଇଥିଲା । ଏହି ସମ୍ବିଧାନରେ ଭାରତକୁ ଏକ ଗଣତାନ୍ତ୍ରିକ, ଧର୍ମନିରପେକ୍ଷ, ସମାଜବାଦୀ, ସାଧାରଣତନ୍ତ୍ର ରାଷ୍ଟ୍ର ରୂପେ ଗଠନ କରିବା ସଙ୍ଗେ ସଙ୍ଗେ ପ୍ରତ୍ୟେକ ନାଗରିକଙ୍କୁ ସାମାଜିକ, ଅର୍ଥନୈତିକ ଏବଂ ରାଜନୈତିକ କ୍ଷେତ୍ରରେ ସମାନ ସୁବିଧାସୁଯୋଗ ଯୋଗାଇ ଦେବାର ବ୍ୟବସ୍ଥା କରାଯାଇଛି । ଅଗଷ୍ଟ ୧୫ ତାରିଖରେ ଯେପରି ସମଗ୍ର ଭାରତବର୍ଷରେ ସ୍ୱାଧୀନତା ଦିବସ ପାଳିତ ହୁଏ, ସେହିପରି ଜାନୁଆରୀ ୨୬ରେ ମଧ୍ୟ ସାଧାରଣତନ୍ତ୍ର ଦିବସ ପାଳିତ ହୋଇଥାଏ । ୧୯୪୭ ମସିହାରେ ଆମ ଦେଶ ସ୍ୱାଧୀନ ପାଇଥିଲେ ମଧ୍ୟ ଆମ ସମ୍ବିଧାନ ପ୍ରଣୟନ କରାଯାଇ ନଥିଲା କିମ୍ବା ଇଂରେଜମାନଙ୍କ ଶାସନାଧୀନରୁ ଆମେ ସମ୍ପୂର୍ଣ୍ଣ ମୁକ୍ତ ହୋଇପାରି ନଥିଲୁ । ଏହା ପରେ ସମ୍ବିଧାନ ପ୍ରଣୀତ ହେଲା ଏବଂ ୧୯୫୦ ମସିହା ଜାନୁଆରୀ ୨୬ ଠାରୁ ଆମେ ଏକ ସାଧାରଣତନ୍ତ୍ର ରାଷ୍ଟ୍ର ରୂପେ ପରିଗଣିତ ହେଲୁ । ବିବିଧତା ମଧ୍ୟରେ ଏକତା ହେଉଛି ଭାରତୀୟ ସଂସ୍କୃତିର ବୈଶିଷ୍ଟ୍ୟ । ନାନା ଭାଷା, ନାନା ଧର୍ମର ଲୋକେ ସେମାନଙ୍କ ଚଳଣି ଓ ଆଚାର ବ୍ୟବହାରରେ ଭିନ୍ନତା ପ୍ରତିପାଦନ କରିବା ସତ୍ତ୍ୱେ ମହାନ୍ ଭାରତୀୟ ପରମ୍ପରାକୁ କାଳକାଳ ଧରି ଅକ୍ଷୁଣ୍ଣ ରଖିଆସିଛନ୍ତି । ମତଭେଦ ସତ୍ତ୍ୱେ ଦେଶର ଏକତା ଓ ସଂହତିକୁ ମଜଭୁତ୍ କରି ଏହାକୁ ସମୃଦ୍ଧି କ୍ଷେତ୍ରରେ ଆଗେଇ ନେବାକୁ ଆମେ ସମସ୍ତେ ସଂକଳ୍ପବଦ୍ଧ । ଏହି ପବିତ୍ର ଦିବସ ପାଳନ ଅବସରରେ, ଦେଶ ଗଠନରେ ପ୍ରମୁଖ ଭୂମିକା ରଖିଥିବା ମହାମନୀଷୀମାନଙ୍କୁ ମୁଁ ମୋର ଆନ୍ତରିକ ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଛି ।

ସ୍ୱାଧୀନତା ପରେ ଆମ ଦେଶ ଓ ରାଜ୍ୟ ଅନେକ କ୍ଷେତ୍ରରେ ସଫଳତା ହାସଲ କରିଛନ୍ତି । ଏକ ବିକଶିତ ଓଡିଶା ନିମନ୍ତେ ରାଜ୍ୟ ସରକାର ନିରବଚ୍ଛିନ୍ନ ପ୍ରୟାସ ଜାରି ରଖିଛନ୍ତି । ଓଡିଶା ଏହାର ବିପୁଳ ପ୍ରାକୃତିକ ସଂପଦ ଓ ଦକ୍ଷ ମାନବ ସମ୍ବଳ ସହ ଜାତୀୟ ମୁଖ୍ୟ ସ୍ରୋତରେ ସାମିଲ୍ ହୋଇପାରିଛି । ଓଡିଶାର ପ୍ରାୟ ୪.୧୯ କୋଟି ଜନସାଧାରଣଙ୍କ ଜୀବନଧାରଣ ମାନରେ ଉନ୍ନତି ପରିଲକ୍ଷିତ ହୋଇଛି । ବିଭିନ୍ନ କ୍ଷେତ୍ରରେ ଉଲ୍ଲେଖନୀୟ ସଫଳତା ହାସଲ କରିବା ସହ ରାଜ୍ୟ ସରକାର କୃଷି କ୍ଷେତ୍ରକୁ ସର୍ବାଧିକ ଗୁରୁତ୍ୱ ପ୍ରଦାନ କରୁଛନ୍ତି । ଆଗାମୀ ୫ବର୍ଷ ମଧ୍ୟରେ ଅଧିକ ୧୦ଲକ୍ଷ ହେକ୍ଟର ଚାଷ ଜମିକୁ ଜଳସେଚନର ସୁବିଧା ଯୋଗାଇ ଦେବା ପାଇଁ ପଦକ୍ଷେପ ନିଆଯାଇଛି । ବିଜୁ ବାଳ ବିକାଶ ଯୋଜନା ମାଧ୍ୟମରେ ଅନାଥ ଏବଂ ଅସହାୟ

ଶିଶୁମାନଙ୍କୁ ଥଇଥାନ କରାଯାଉଛି । ରାଜ୍ୟ ସରକାରଙ୍କ ଅଭିନବ ମମତା ଯୋଜନା ମାଧ୍ୟମରେ ଗର୍ଭବତୀ ଓ ପ୍ରସୂତି ମା'ମାନଙ୍କୁ ୫ହଜାର ଟଙ୍କାର ଆର୍ଥିକ ସହାୟତା ପ୍ରଦାନ କରାଯାଉଛି । ଏହି ଯୋଜନା ଅଧୀନରେ ୧୧ଲକ୍ଷରୁ ଊର୍ଦ୍ଧ୍ୱ ମା'ମାନେ ଉପକୃତ ହୋଇଛନ୍ତି । ରାଜ୍ୟ ନିଯୁକ୍ତି ମିଶନ ଜରିଆରେ ଦକ୍ଷତା ବୃଦ୍ଧି ତାଲିମ ପ୍ରଦାନ କରାଯାଉଛି । ଖାଦ୍ୟ ନିରାପତ୍ତାକୁ ସୁନିଶ୍ଚିତ କରିବା ଲକ୍ଷ୍ୟରେ ସାଧାରଣ ବଣ୍ଟନ ବ୍ୟବସ୍ଥା ମାଧ୍ୟମରେ ୧ ଟଙ୍କାରେ କିଲେ ଚାଉଳ ବଣ୍ଟନ କରାଯାଉଛି । ବିଜୁ କୃଷକ କଲ୍ୟାଣ ଯୋଜନାରେ ସମସ୍ତ କୃଷକ ଓ କୃଷି ଶ୍ରମିକ ପରିବାରଙ୍କୁ ସାମିଲ କରାଯିବା ନିମନ୍ତେ ପଦକ୍ଷେପ ନିଆଯାଇଛି । ଏତଦ୍‌ବ୍ୟତୀତ ନିର୍ମାଣ ଶ୍ରମିକ ଓ ମତ୍ସ୍ୟଜୀବୀମାନଙ୍କ ପିଲାମାନଙ୍କୁ ଶିକ୍ଷା ସହାୟତା ପ୍ରଦାନ କରାଯାଉଛି । ମହିଳା ସଶକ୍ତିକରଣ ଦିଗରେ ଆଉ ପାଦେ ଆଗକୁ ଯାଇ ଏକ ସୁବିସ୍ତୃତ 'ରାଜ୍ୟ ବାଳିକା ଏବଂ ମହିଳା ନୀତି' ପ୍ରଣୟନ କରାଯାଇଛି । ଏଥିରେ ଉତ୍ତରାଧିକାର ସ୍ୱତ୍ୱ, ସମାନ ଭୂ-ସମ୍ପତ୍ତି ଅଧିକାର, ବାସହୀନ ନିମ୍ନ ଆୟକାରୀ ଗରିବ ମହିଳାମାନଙ୍କୁ ୪ ଡେସିମିଲର ବାସୋପଯୋଗୀ ଜମି ପ୍ରଦାନ ବ୍ୟବସ୍ଥା କରାଯାଇଛି ।

ଏକ ଛାତ୍ର ସମ୍ମିଳନୀରେ ଯୋଗଦେବା ଅବସରରେ ମାନ୍ୟବର ମୁଖ୍ୟମନ୍ତ୍ରୀ ଲିଙ୍ଗଗତ ବୈଷମ୍ୟ ତଥା ଅସମାନତା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବା ନିମନ୍ତେ ଆହ୍ୱାନ ଦେଇଛନ୍ତି । ଯେତେବେଳେ ଆମେ ଆମ ରାଜ୍ୟର ସଫଳତାର ଚିତ୍ର ଉପସ୍ଥାପନ କରୁଛୁ, ସେତେବେଳେ ବିଭିନ୍ନ ନୀତିନିୟମ କ୍ଷେତ୍ରରେ କେନ୍ଦ୍ର ସରକାରଙ୍କ ଦ୍ୱାରା ଜାରି ହେଉଥିବା ଅଧ୍ୟାଦେଶ ଆମକୁ ବ୍ୟଥିତ କରୁଛି । ଖଣି ଓ ଖଣିଜ ସମ୍ପଦ (ବିକାଶ ଓ ନିୟନ୍ତ୍ରଣ) ସଂଶୋଧନ, ୨୦୧୫ ରାଜ୍ୟକୁ ଏହାର ପ୍ରାକୃତିକ ସମ୍ପଦର ରାଜସ୍ୱରୁ ବଞ୍ଚିତ କରିବା ନିମନ୍ତେ ଏକ ଷଡଯନ୍ତ୍ର ପରି ମନେ ହୁଏ । ଏହି ପରିପ୍ରେକ୍ଷୀରେ ଭାରତର ମାନ୍ୟବର ରାଷ୍ଟ୍ରପତିଙ୍କ ମତାମତ ପ୍ରଣିଧାନଯୋଗ୍ୟ । ବିଭିନ୍ନ କ୍ଷେତ୍ରରେ ଅଧ୍ୟାଦେଶ ଜାରି ହେବା ଦ୍ୱାରା ଏହା ଭିନ୍ନମତାବଲମ୍ବୀ ଗୋଷ୍ଠୀଙ୍କ ସ୍ୱାର୍ଥ ରକ୍ଷା ଦିଗରେ ଥିବା ସଂସଦୀୟ ପ୍ରକ୍ରିୟାରେ ପ୍ରତିବନ୍ଧକ ସୃଷ୍ଟି କରୁଛି । ଆମ ଦେଶ ପରି ସଂଘୀୟ ଶାସନ ବ୍ୟବସ୍ଥାରେ ଯେଉଁଠି ଅଭୁତପୂର୍ବ ପ୍ରାକୃତିକ ବିପର୍ଯ୍ୟୟର କ୍ଷତି ଭରଣା ଦାବିକୁ ଅଣଦେଖା କରାଯାଏ, ତାହା ମନରେ ଦୁଃଖ ପହଞ୍ଚାଏ । ଏପରି ଉଦାସୀନତାରେ ଓଡ଼ିଶାର ଜନସାଧାରଣ ଗଭୀରଭାବେ ମର୍ମାହତ ।

ମୁଁ ବ୍ୟକ୍ତିଗତ ଭାବେ ଅନୁଭବ କରେ ଆମ ସମ୍ବିଧାନରେ ଲିପିବଦ୍ଧ ଥିବା ସ୍ୱାଧୀନତା, ସମାନତା, ଗଣତାନ୍ତ୍ରିକ ଓ ଧର୍ମନିରପେକ୍ଷତା ମୂଲ୍ୟବୋଧର ସୁରକ୍ଷା ଓ ଏଗୁଡିକର ପୃଷ୍ଠପୋଷକତା ନିମନ୍ତେ ପ୍ରତ୍ୟେକ ନାଗରିକର ଦାୟିତ୍ୱ ହେବା ଉଚିତ୍ ।

**ଜୟହିନ୍ଦ୍ ।**

**ବନ୍ଦେ ଉତ୍କଳ ଜନନୀ ।**

ଲେନିନ୍ ମହାନ୍ତି

# ବିଶ୍ୱରେ ଭାରତୀୟ ସମ୍ବିଧାନର ବିଶେଷତ୍ୱ

**ଅପୂର୍ବ ରଂଜନ ରାୟ**

ବହୁ ସଂଗ୍ରାମ ଓ ପ୍ରତିଘାତ ପରେ ଭାରତ ଇଂରେଜ କବଳରୁ ମୁକ୍ତି ଲାଭ କରିଥିଲା । ୧୯୪୭ ଅଗଷ୍ଟ ୧୫ ଯେପରି ଭାରତ ପାଇଁ ସ୍ମରଣୀୟ, ସେପରି ମଧ୍ୟ ୧୯୫୦ ମସିହା ଜାନୁଆରୀ ୨୬ ତାରିଖ ଭାରତ ଇତିହାସରେ ଅତ୍ୟନ୍ତ ଉଲ୍ଲେଖନୀୟ । ଶେଷ ବଡ଼ଲାଟ ଲର୍ଡ ମାଉଣ୍ଟବାଟେନ ଭାରତୀୟମାନଙ୍କ ହାତରେ ଏହି ସ୍ୱାଧୀନତା ଅର୍ପଣ କରିଥିଲେ । କିନ୍ତୁ ଦେଶ ପରିଚାଳନା ପାଇଁ ବ୍ରିଟିଶରମାନଙ୍କ ଦ୍ୱାରା ୧୯୪୭ ମସିହା ଜୁନ ୩ ତାରିଖରେ ପାର୍ଲାମେଣ୍ଟରେ ଏକ ଆଇନ ଅନୁମୋଦିତ ହୋଇଥିଲା । ଏହା ମାଉଣ୍ଟବାଟେନଙ୍କ ନାମରେ ନାମିତ କରାଯାଇ ଏହାକୁ 'ମାଉଣ୍ଟବାଟେନ ଯୋଜନା' ଭାବରେ ଘୋଷଣା କରାଯାଇଥିଲା । ଏଥିପାଇଁ ବହୁ ବିରୋଧ କରାଯାଇଥିଲେ ହେଁ ମୁକ୍ତି ସଂଗ୍ରାମର ନାୟକ ମହାତ୍ମାଗାନ୍ଧୀ ଏହି ଯୋଜନାକୁ ଗ୍ରହଣ କରିବାକୁ ବାଧ୍ୟ ହୋଇଥିଲେ । କୌଣସି ଅନ୍ୟ ଉପାୟ ନଥିଲା ବେଳେ, ନିଖିଳ ଭାରତ କଂଗ୍ରେସ କମିଟି ମଧ୍ୟ ଏହି ଯୋଜନା ବର୍ଣ୍ଣିତ ପ୍ରସ୍ତାବଗୁଡ଼ିକୁ ଗ୍ରହଣ କରିନେଇଥିଲା । ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ବିଷୟ ହେଉଛି ଏହି ଯୋଜନା ବଳରେ ଅଖଣ୍ଡ ଭାରତକୁ, ଭାରତ ଓ ପାକିସ୍ତାନ ଏହିପରି ଦୁଇ ଭାଗରେ ବିଭକ୍ତ କରିଦିଆଗଲା । ଏହା ପରେ ୧୯୪୭ ମସିହା ଜୁଲାଇ ମାସରେ ବ୍ରିଟିଶ ସରକାରଙ୍କ ଦ୍ୱାରା ଯେଉଁ 'ଭାରତ ସ୍ୱାଧୀନତା ଆଇନ' ପ୍ରଣୀତ ହେଲା, ସେହି ଆଇନକୁ ବ୍ରିଟିଶ ପାର୍ଲାମେଣ୍ଟ ମଞ୍ଜୁର ଦେଇଦେଲା । ଫଳରେ ସେହି ଅନୁମୋଦିତ ଆଇନ ବଳରେ ଭାରତକୁ ଇଂରେଜମାନେ ଶାସନ କ୍ଷମତା ହସ୍ତାନ୍ତର କରିପାରିଲେ । ୧୯୪୭ ମସିହା ଅଗଷ୍ଟ ୧୪ ତାରିଖ ମଧ୍ୟରାତ୍ରରେ ବହୁ ପ୍ରତୀକ୍ଷିତ ସ୍ୱାଧୀନତା ଭାରତ ହାସଲ କଲା । ଇତିହାସ ପ୍ରସିଦ୍ଧ ଦିଲ୍ଲୀର ଲାଲକିଲା ଉପରେ ଶାସନର ସର୍ବୋଚ୍ଚ ଶାସନକର୍ତ୍ତା ଭାବେ ପଣ୍ଡିତ ଜବାହରଲାଲ ନେହେରୁ ଗର୍ବର ସହିତ ସ୍ୱାଧୀନ ଜାତୀୟ ପତାକାକୁ ଉତ୍ତୋଳନ କରିବା ସହିତ କହିଥିଲେ – ଯେଉଁ ସମୟରେ ସାରା ବିଶ୍ୱ ଶୋଇ ରହିଛି, ସେତେବେଳେ ଭାରତ ତା'ର ସ୍ୱକୀୟ ଜୀବନ ନେଇ ମୁକ୍ତି ଲାଗି ଜାଗ୍ରତ ହୋଇଛି । ଏହିପରି ମୁହୂର୍ତ୍ତଟିଏ ଆସି ପହଞ୍ଚେ, ଯାହା ଇତିହାସରେ ଦୁର୍ଲଭ । ସେହି ସମୟରେ ଆମେ ପୁରାତନକୁ ବିଦାୟ ଦେଇ ନୂତନକୁ ସ୍ୱାଗତ କରିପାରୁ । ସେତେବେଳେ ଗୋଟିଏ ଯୁଗର ପତନ ଘଟିବା ସଂଗେ ସଂଗେ ଆଉ ଗୋଟିଏ ନୂତନ ଯୁଗର ସ୍ୱାଦ ଚାଖିବା ପାଇଁ ଜାତି ସୁଯୋଗ ପାଏ । ଲୁଚି ଯାଇଥିବା ଗୋଟିଏ ଜାତିର ସ୍ୱାଭିମାନ ପୁଣି ଜାଗ୍ରତ ହୋଇଉଠେ । ତାଙ୍କ ଭାଷାରେ– When the World sleeps, India will awake to life and freedom. A moment comes which comes but rarely in History, when we step out from old to new, when an age ends and when the soul of a nation, long suppressed finds utterance.

ସ୍ୱାଧୀନ ଭାରତର ସର୍ବୋଚ୍ଚ କର୍ତ୍ତା ଭାବେ ସାର୍ବଭୌମତ୍ୱ କ୍ଷମତା ପଣ୍ଡିତ ନେହେରୁ ପାଇଥିଲେ ହେଁ, ସଂପୂର୍ଣ୍ଣ ସ୍ୱାଧୀନତାର ସ୍ୱାଦ ଚାଖି ନ ଥିଲେ । ୧୯୩୫ ମସିହାରେ ଯେତେବେଳେ ଭାରତର ଶାସନ ବିଧାନ ଅନୁଯାୟୀ ପ୍ରଥମ ନିର୍ବାଚନ ହେଲା, ସେଥିରେ ଭାରତୀୟ ଜାତୀୟ କଂଗ୍ରେସ ଅଧିକ ସଂଖ୍ୟକ ଭୋଟ ବିଭିନ୍ନ ପ୍ରଦେଶରେ ପାଇ ମନ୍ତ୍ରିମଣ୍ଡଳ ଗଠନ କରିବାକୁ ସୁଯୋଗ ପାଇଲା । ସେତେବେଳେ ପଣ୍ଡିତ ନେହେରୁ ଥାଆନ୍ତି ଭାରତୀୟ ଜାତୀୟ କଂଗ୍ରେସର ସଭାପତି । ଏ ଦୃଷ୍ଟିରୁ ସେ ନିର୍ବାଚନ ଅଭିଯାନରେ ସକ୍ରିୟ ରହିଥିଲେ ହେଁ, କଂଗ୍ରେସ ଦଳ ମନ୍ତ୍ରିମଣ୍ଡଳ ଗଠନ କରିବା ସପକ୍ଷରେ ସେ ନଥିଲେ । ପ୍ରାଦେଶିକ ଶାସନର ସଂକୋଚନ କ୍ଷମତାକୁ ସେ ଗ୍ରହଣ କରିପାରି ନଥିଲେ । ସେତେବେଳେ ବ୍ରିଟିଶ ଗଭର୍ଣ୍ଣରମାନେ ପ୍ରାଦେଶିକ ଶାସନ ଉପରେ

ହସ୍ତକ୍ଷେପ କରିବାର ବିଧି ରହିଥିଲା । ଏହାକୁ ଲକ୍ଷ୍ୟ କରି ପଣ୍ଡିତ ନେହେରୁ ୧୯୨୪ ମସିହାରେ ଏଲାହାବାଦ ପୌରପାଳିକାରେ ଚେୟାରମ୍ୟାନ ଦାୟିତ୍ୱ ନେଇଥିଲେ ହେଁ, ୧୯୪୬ ପର୍ଯ୍ୟନ୍ତ ବ୍ୟବସ୍ଥା ସଭାରେ ପ୍ରବେଶ କରିବା ପାଇଁ ଇଛା ପ୍ରକାଶ କରି ନଥିଲେ । କଂଗ୍ରେସ ମନ୍ତ୍ରିମଣ୍ଡଳ ପ୍ରତି ପଣ୍ଡିତ ନେହେରୁଙ୍କର ସେତେବେଳେ ଭଲ ଧାରଣା ନଥିଲା । ମହାମାନବ ମହାତ୍ମାଗାନ୍ଧୀଙ୍କୁ ତାଙ୍କ ଅସନ୍ତୋଷ ବିଷୟରେ ଲେଖି ଜଣାଇଥିଲେ – ଅତି ଦୁଃଖର ବିଷୟ ବହୁ ପରିଶ୍ରମ ପରେ ଆମେ ଜନତାର ହୃଦୟ ଭିତରେ ଯେପରି ସ୍ଥାନ ଅଧିକାର କରିପାରିଥିଲୁ, ସେ ପ୍ରକାର ଅଧିକାରୀ ହେବା ଲାଗି ଆମର ଆଉ ଯୋଗ୍ୟତା ଅଛି କି ନା ତାହା ପ୍ରଶ୍ନବାଚୀ ହୋଇଗଲାଣି । ଆମେ ସେ ଯୋଗ୍ୟତା ବୋଧହୁଏ ହରାଇ ସାରିଲୁଣି । କାରଣ ଲକ୍ଷ୍ୟ କରାଯାଉଛି ଆମେ ସାଧାରଣ ରାଜନୈତିକ କର୍ମୀମାନଙ୍କ ସ୍ତରକୁ ଓହ୍ଲାଇ ଆସିଲୁଣି । କଂଗ୍ରେସ ମନ୍ତ୍ରିମଣ୍ଡଳ ଏବେ ଦେଖାଯାଉଛି ପ୍ରାଚୀନ ବ୍ୟବସ୍ଥାକୁ ସମର୍ଥନ କରି ଚଳିବା ପାଇଁ ଆଗ୍ରହୀ ହୋଇଛି । ଏହା ଅଧିକ ଖରାପ ବ୍ୟବସ୍ଥା ସେମାନେ ଭାବିପାରୁ ନାହାନ୍ତି । କ୍ରମେ କଂଗ୍ରେସ ଜନତାଠାରୁ ବିଶ୍ୱାସ ହରାଇ ବସୁଛି ବୋଲି ପଣ୍ଡିତ ନେହେରୁ ବିବ୍ରତ ହେଉଥିଲେ । ତଥାପି ୧୯୪୭ ଅଗଷ୍ଟ ୧୫ରେ ସେ ସାର୍ବଭୌମ ଗଣତାନ୍ତ୍ରିକ ରାଷ୍ଟ୍ର ଭାରତର ମଙ୍ଗ ଧରିଲେ । ୧୯୫୦ ମସିହା ଜାନୁୟାରୀ ୨୬ ତାରିଖରେ ଭାରତ ପୂର୍ଣ୍ଣ ସ୍ୱାଧୀନତା ଲାଭ କଲା ଓ ନିଜ ପ୍ରସ୍ତୁତ ସମ୍ବିଧାନ ଦ୍ୱାରା ପରିଚାଳିତ ହେଲା । ଏହି ସମ୍ବିଧାନର ପ୍ରଣେତା ଥିଲେ ବିଶିଷ୍ଟ ଚିନ୍ତାନାୟକ ଡକ୍ଟର ଭୀମରାଓ ଆମ୍ବେଦକର । ଏହାର ପ୍ରଭାବ ଓଡ଼ିଶାରେ ବି ପଡ଼ିଥିଲା । ଫଳରେ ୧୯୩୫ ମସିହା ଭାରତ ଶାସନ ଆଇନ ଅନୁସାରେ ଓଡ଼ିଶାର ବିଧାନସଭା ପାଇଁ ୧୯୩୭ ମସିହାରେ ଭୋଟ ଗ୍ରହଣ ହୋଇଥିଲା । ସେତେବେଳେ କଂଗ୍ରେସ ଦଳ ୩୭ଟି, ନ୍ୟାସନାଲ ପାର୍ଟି ୧୩, ଅଲ ଓଡ଼ିଶା ୟୁନାଇଟେଡ୍ ପାର୍ଟି ଓ ଅନ୍ୟମାନେ ମିଶି ୬ଟି ଆସନ ହାସଲ କରିଥିଲେ । ଓଡ଼ିଶା ବିଧାନ ସଭାରେ ୬୦ଟି ଆସନ ଭିତରୁ ୫୬ଜଣ ନିର୍ବାଚିତ ସଦସ୍ୟ ଆସୁଥିବା ବେଳେ, ୪ଜଣ ଗଭର୍ଣ୍ଣରଙ୍କ ଦ୍ୱାରା ମନୋନୀତ ହେଉଥିଲେ । କଂଗ୍ରେସ ସଂଖ୍ୟାଗରିଷ୍ଠ ଦଳ ଭାବେ ଓଡ଼ିଶା ବିଧାନସଭାରେ ମନ୍ତ୍ରିମଣ୍ଡଳ ଗଠନ କରିବା ପାଇଁ ଯୋଗ୍ୟ ହୋଇଥିଲା । ଗାନ୍ଧିବାଦୀ, ସମାଜସେବୀ ବିଶ୍ୱନାଥ ଦାସ କଂଗ୍ରେସ ପକ୍ଷରୁ ଦଳର ନେତା ନିର୍ବାଚିତ ହୋଇଥିଲେ । ତତ୍କାଳୀନ ଓଡ଼ିଶାର ଗଭର୍ଣ୍ଣର ସାର୍ ଜନ୍ ହଷ୍ଟିନ ହବାକ୍ ତାଙ୍କୁ ମନ୍ତ୍ରିମଣ୍ଡଳ ଗଠନ ପାଇଁ ନିମନ୍ତ୍ରଣ କରିଥିଲେ । ମାତ୍ର ପ୍ରାଦେଶିକ ମନ୍ତ୍ରିମଣ୍ଡଳରେ ଗଭର୍ଣ୍ଣରଙ୍କ ହସ୍ତକ୍ଷେପ ପ୍ରୟୋଗ ଆଇନରେ ରହିଥିବାରୁ ଏହାକୁ ନିଖିଳ ଭାରତ କଂଗ୍ରେସ କମିଟି ପସନ୍ଦ କରୁନଥିଲା । ଗଭର୍ଣ୍ଣରଙ୍କୁ ଏହି ହସ୍ତକ୍ଷେପ ନକରିବା ପାଇଁ କଂଗ୍ରେସ କମିଟି ପ୍ରସ୍ତାବ ଦେଇଥିବା ବେଳେ, ତାହା ଗଭର୍ଣ୍ଣରଙ୍କ ଦ୍ୱାରା ପ୍ରତ୍ୟାକ୍ଷିତ ହୋଇଥିଲା । ଫଳରେ ଅଭିମାନରେ ବିଶ୍ୱନାଥଙ୍କ ନେତୃତ୍ୱରେ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଠିତ ହେଲାନାହିଁ । କିନ୍ତୁ ୧୯୩୭ ମସିହା ଜୁଲାଇ ୧୯ ତାରିଖରେ ବିଶ୍ୱନାଥଙ୍କ ନେତୃତ୍ୱରେ ଓଡ଼ିଶାରେ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଠନ କରିଥିଲା । ସେତେବେଳକୁ ପ୍ରାଦେଶିକ ମନ୍ତ୍ରିମଣ୍ଡଳରେ ଗଭର୍ଣ୍ଣର ହସ୍ତକ୍ଷେପ କରିବେ ନାହିଁ ବୋଲି ଆଇନରୁ ଉଠିଯାଇଥିଲା । ଗଭର୍ଣ୍ଣର ଜେନେରାଲ ଏହି ତଥ୍ୟ କଂଗ୍ରେସକୁ ଜଣାଇବାରୁ ପ୍ରାକ୍ ସ୍ୱାଧୀନତା କାଳରେ ଓଡ଼ିଶାରେ ବିଶ୍ୱନାଥ ଦାସଙ୍କ ନେତୃତ୍ୱରେ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଠିତ ହୋଇଥିଲା । ୧୯୩୯ ମସିହା ନଭେମ୍ବର ଅପ୍ରେଲ ୪ ତାରିଖ ପର୍ଯ୍ୟନ୍ତ ଚାଲିଥିଲା । ଏହା ଥିଲା ତିନିଜଣିଆ ମନ୍ତ୍ରିମଣ୍ଡଳ । ପ୍ରଧାନମନ୍ତ୍ରୀ ବିଶ୍ୱନାଥ, ନିତ୍ୟାନନ୍ଦ କାନୁନଗୋ ଓ ବୁଦ୍ଧିରାମ ବୋଧେ ଏହି ମନ୍ତ୍ରିମଣ୍ଡଳରେ ସ୍ଥାନ ପାଇଥିଲେ । ସେ ସମୟରେ ଓଡ଼ିଶାର ରାଜଧାନୀ କଟକରେ ଥିବାବେଳେ ଓଡ଼ିଶାର ବିଧାନସଭା ରେଭେନ୍ସା କଲେଜ ହଲରେ ହେଉଥିଲା । ସେ ସମୟରେ ବଙ୍ଗଳାର କବି ବଙ୍କିମ ଚନ୍ଦ୍ରଙ୍କ ରଚିତ ଜାତୀୟ ସଂଗୀତ 'ବନ୍ଦେ ମାତରମ୍' ଗାନ କରାଯିବା ପାଇଁ ସିଦ୍ଧାନ୍ତ ହୋଇଥିଲା । ପ୍ରଥମ ବାଚସ୍ପତି ଭାବେ ମୁକୁନ୍ଦ ପ୍ରସାଦ ଦାସ ଓ ଉପବାଚସ୍ପତି ଭାବେ ନନ୍ଦ କିଶୋର ଦାସ ନିର୍ବାଚିତ ହୋଇଥିଲେ । କଂଗ୍ରେସ ନେତା ପ୍ରଥମ ଥର ପାଇଁ ଗଭର୍ଣ୍ଣରଙ୍କ ଆହ୍ୱାନ କ୍ରମେ ମନ୍ତ୍ରିମଣ୍ଡଳ ଗଢ଼ିବାକୁ ରାଜି ନହେବାରୁ, ଜାତୀୟ ଦଳର ନେତା ତଥା ବିଧାୟକ ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେଓଙ୍କୁ ମନ୍ତ୍ରିମଣ୍ଡଳ ଗଠନ ପାଇଁ ଗଭର୍ଣ୍ଣର ନିମନ୍ତ୍ରଣ କରିଥିଲେ । ଓଡ଼ିଶାର ପ୍ରଥମ ପ୍ରାକ୍ ସ୍ୱାଧୀନତା କାଳର ମନ୍ତ୍ରିମଣ୍ଡଳରେ ମହାରାଜା କୃଷ୍ଣଚନ୍ଦ୍ର ହୋଇଥିଲେ ଓଡ଼ିଶାର ପ୍ରଥମ ପ୍ରଧାନମନ୍ତ୍ରୀ । ୧୯୩୭ ମସିହା ଅପ୍ରେଲ ୧ ତାରିଖରୁ ୧୯୩୭ ମସିହା ଜୁଲାଇ ୧୯ ତାରିଖ ଯାଏ ସେ ଏହି ପଦରେ ରହିଥିଲେ । ସେତେବେଳେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ପଦ ସୃଷ୍ଟି ହୋଇ ନଥିଲା, ମନ୍ତ୍ରିମଣ୍ଡଳର ମୁଖ୍ୟଙ୍କୁ ପ୍ରଧାନମନ୍ତ୍ରୀ କୁହାଯାଉଥିଲା ।

ସ୍ୱାଧୀନତା ପରେ ୧୯୪୭ ମସିହା ଅଗଷ୍ଟ ୯ ତାରିଖରେ ବିଧାୟକ ସଭାରେ ଭାରତର ସମ୍ବିଧାନ ପ୍ରଣୀତ ହୋଇଥିଲା । ସେଥିଲାଗି ଯେଉଁ ଡ୍ରାଫ୍ଟିଂ କମିଟି ଗଠିତ ହୋଇଥିଲା, ତାହାର ମୁଖ୍ୟ ଥିଲେ ଭୀମରାଓ ଆମ୍ବେଦକର । ସେ ସେହି କମିଟିରେ ଅଧକ୍ଷ ମଧ୍ୟ ରହିଥିଲେ । ସ୍ୱାଧୀନତା ପୂର୍ବରୁ ଯେଉଁ ସମ୍ବିଧାନ

ପ୍ରସ୍ତୁତ କରିବା ପାଇଁ କମିଟି ପ୍ରସ୍ତୁତ ହୋଇଥିଲା, ସେଥିରେ ସଭାପତି ଥିଲେ ରାଜେନ୍ଦ୍ର ପ୍ରସାଦ । ପଣ୍ଡିତ ଜବାହରଲାଲ ନେହେରୁ, ମୌଲାନା ଆବୁଲ କାଲାମ ଆଜାଦ୍, ଗୋବିନ୍ଦବଲ୍ଲଭ ପନ୍ଥ, ସର୍ଦ୍ଦାର ବଲ୍ଲଭଭାଇ ପଟେଲ ଓ ଆଚାର୍ଯ୍ୟ କୃପାଳିନୀ ସଭ୍ୟ ଭାବେ ନିର୍ବାଚିତ ହୋଇଥାଆନ୍ତି । ଏହି ଆଇନ ବଳରେ ପାକିସ୍ତାନ ଭାରତ ଠାରୁ ଅଲଗା ହୋଇଯାଇଥିଲା । ଡ. ଆମ୍ବେଦକରଙ୍କ ସଭାପତିତ୍ୱରେ ଯେଉଁ ସମ୍ବିଧାନ ପ୍ରଣୀତ ହେଲା, ତାହା ସ୍ୱାଧୀନ ଭାରତ ପାଇଁ ରକ୍ଷା କବଚ ହୋଇଗଲା । ଏପରି ସମ୍ବିଧାନ ଲାଗି ବିଧାନସଭାରେ ବହୁ ଆଲୋଚନା ହୋଇଥିଲା । ସେଥିପାଇଁ ସମ୍ବିଧାନ ଲାଗି ଏକ ଶହ ଚଉଦ ଦିନ ଆଲୋଚନା ଚାଲିଥିଲା । ନଭେମ୍ବର ମାସର ୧୪ ତାରିଖ ଠାରୁ ୨୬ ତାରିଖ ଯାଏ ତୃତୀୟ ଥର ପାଇଁ ସମ୍ବିଧାନ ଉପରେ ଆଲୋଚନା ହୋଇଥିଲା । ଏତେ ଆଲୋଚନା ପରେ ସମ୍ବିଧାନ ସର୍ବସମ୍ମତି କ୍ରମେ ଗୃହୀତ ହେଲା ।

ଭାରତର ସମ୍ବିଧାନ ପୃଥିବୀର ବହୁ ସମ୍ବିଧାନକୁ ତର୍ଜମା କରାଯାଇ ପ୍ରସ୍ତୁତ ହୋଇଥିବାରୁ, ଏହା ଅତ୍ୟନ୍ତ ଉଲ୍ଲେଖନୀୟ । ଡ. ଆମ୍ବେଦକର ଥିଲେ ଜଣେ ବୁଦ୍ଧିମାନ୍ ଓ ବିଚକ୍ଷଣ ଆଇନଜ୍ଞ । ସେ ବହୁ ଯତ୍ନର ସହିତ ବିଭିନ୍ନ ଦେଶର ସମ୍ବିଧାନକୁ ତର୍ଜମା କରିଥିଲେ । ତାଙ୍କୁ ଭାରତର ସମ୍ବିଧାନ ପ୍ରସ୍ତୁତ କରିବା ପାଇଁ ଦୁଇବର୍ଷ ଏଗାର ମାସ ଅଠର ଦିନ ଲାଗିଥିଲା । ଏହି ସମ୍ବିଧାନରେ ୩୯୫ ଗୋଟି ଧାରା ରଖାଯାଇଛି । ୧୯୫୦ ମସିହା ଜାନୁୟାରୀ ୨୬ ଜନରାଜ୍ୟ ଦିବସ ଠାରୁ ଭାରତର ନୂତନ ସମ୍ବିଧାନକୁ କାର୍ଯ୍ୟକାରୀ କରାଯାଇଛି । ସେହି ସମ୍ବିଧାନ ସ୍ୱାଧୀନତାର ଏତେ ବର୍ଷ ପରେ ସୁଦ୍ଧା ପ୍ରଚଳିତ ହେଉଛି । ଏଥିରେ ଦେଶର ନାଗରିକମାନଙ୍କର ସ୍ୱାଧୀନତା ଓ ମୌଳିକ ଅଧିକାର କ୍ଷୁର୍ଣ୍ଣ ନହେବା ଭଳି ବ୍ୟବସ୍ଥା ରହିଛି । କେନ୍ଦ୍ର ଓ ରାଜ୍ୟର ସଂପର୍କ ତଥା ଉଭୟର କ୍ଷମତାର ଅଧିକାରର ସୀମାକୁ ଏଥିରେ ନିର୍ଦ୍ଧାରଣ କରାଯାଇଛି । ନ୍ୟାୟାଳୟମାନଙ୍କୁ ସ୍ୱାଧୀନତା ଦିଆଯାଇ ନ୍ୟାୟପତିଙ୍କ ବିଚାର ଉପରେ ଅନ୍ୟ କାହାର ହସ୍ତକ୍ଷେପ ନରହିବା ଭଳି ବିଧାନ ରହିଛି । ସାମାଜିକ ଅଭିବୃଦ୍ଧି ତଥା ବ୍ୟକ୍ତିର ବିକାଶ ଲାଗି ମୌଳିକ ଅଧିକାର ଉପରେ ଅନ୍ୟ କାହାର ହସ୍ତକ୍ଷେପ ବରଦାସ୍ତ ନକରିବା ପାଇଁ ସମ୍ବିଧାନରେ ଉଲ୍ଲେଖ ରହିଛି । ଦେଶର ପ୍ରଗତି ପାଇଁ ଯାହା ଆବଶ୍ୟକ, ସେପରି କାର୍ଯ୍ୟ ବିନା ବାଧାରେ ଜଣେ ଭାରତୀୟ ଯେପରି କରିପାରେ, ସେ ଦିଗରେ ସମ୍ବିଧାନରେ ଧ୍ୟାନ ଦିଆଯାଇଛି । ବ୍ୟକ୍ତିର ସାମାଜିକ ଅଧିକାରକୁ ବହୁ ସମ୍ମାନ ଦିଆଯିବା ସଂଗେ ସଂଗେ ତା' ରାଜନୈତିକ ଅଧିକାରକୁ ଅବହେଳା କରାଯାଇନାହିଁ । ଅର୍ଥନୈତିକ ଅଧିକାରରୁ ବ୍ୟକ୍ତିକୁ ବଞ୍ଚିତ କରାଯାଇପାରିବ ନାହିଁ ବୋଲି ଭାରତୀୟ ସମ୍ବିଧାନରେ ଉଲ୍ଲେଖ ହୋଇଛି । ମନୁଷ୍ୟ ପୂର୍ଣ୍ଣାଙ୍ଗ ଜୀବନ ଯାପନ ଲାଗି ଯେଉଁ ସବୁ ମୌଳିକ ଅଧିକାର ଆବଶ୍ୟକ, ସେଥିପ୍ରତି ସମ୍ବିଧାନକାର ଲକ୍ଷ୍ୟ ରଖିଛନ୍ତି । ବିଶେଷତଃ ସବୁ ନାଗରିକ ସମାନ ଏବଂ ସମସ୍ତଙ୍କର ସମାନ ଅଧିକାର ରହିଛି ଏବଂ ଏ ଅଧିକାରକୁ ସ୍ୱାଧୀନ ଭାବରେ ସାବ୍ୟସ୍ତ କରାଯାଏ ବୋଲି ଏଥିରେ ସୂଚନା ଦିଆଯାଇଛି । କେହି କାହାକୁ ଶୋଷଣ କରିପାରିବ ନାହିଁ ଏବଂ ଶୋଷିତ ମନୋଭାବକୁ ବିରୋଧ କରାଯାଇପାରିବ । ଏହି ବିରୋଧୀ ଅଧିକାର ଶୋଷିତ ମଣିଷ ଯଥା ସମୟରେ ପ୍ରୟୋଗ କରିପାରିବ । କୌଣସି ଧର୍ମ ଉପରେ ଆଘାତ ଦିଆଯାଇପାରିବ ନାହିଁ, ଧର୍ମୀୟ ମନୋଭାବ ପୋଷଣ କରୁଥିବା କୌଣସି ଧର୍ମାବଲମ୍ବୀଙ୍କୁ ତାଙ୍କ ସ୍ୱାଧୀନତାରୁ ବଞ୍ଚିତ କରାଯାଇପାରିବ ନାହିଁ । ପ୍ରତ୍ୟେକ ନାଗରିକ ସଂସ୍କୃତି, ଶିକ୍ଷା ଓ ସଭ୍ୟତା ପ୍ରତି ସଚେତନ ହୋଇପାରିବେ । ଜଣେ ନାଗରିକ ଏଥିପ୍ରତି ଯୋଗ୍ୟ ହେବା ଲାଗି କୌଣସି ବ୍ୟକ୍ତି ତାଙ୍କୁ ସେପରି ଅଧିକାରରୁ ଓହରାଇ ପାରିବେ ନାହିଁ ବୋଲି ସମ୍ବିଧାନରେ ଉଲ୍ଲେଖ ରହିଛି । କୌଣସି ଛୁଆଁ ଅଛୁଆଁ ଭେଦଭାବ ରହିବ ନାହିଁ । ସବର୍ଣ୍ଣ ଅସବର୍ଣ୍ଣ ଭିତରେ କୌଣସି ବ୍ୟବଧାନ ରହିବା ଉଚିତ ନୁହେଁ, ଏହାଦ୍ୱାରା ଦେଶର ପ୍ରଗତି ଅସମ୍ଭବ ବୋଲି ସମ୍ବିଧାନକାର ଅନୁଭବ କରିଥିଲେ ।

ଡକ୍ଟର ଆମ୍ବେଦକରଙ୍କ ଭାଷାରେ – ଭାରତକୁ କେବଳ ପ୍ରଶାସନିକ ସୁବିଧା ପାଇଁ ବିଭିନ୍ନ ରାଜ୍ୟରେ ବିଭକ୍ତ କରାଯାଇଥିଲେ ହେଁ, ସବୁ ରାଜ୍ୟ ଭାରତର ଅଂଶ ବିଶେଷ । ଭାରତର ପ୍ରଶାସନିକ ସିଦ୍ଧାନ୍ତ ଓ ସାମ୍ବିଧାନିକ ଚିନ୍ତାଧାରା ନିକଟରେ ସବୁ ରାଜ୍ୟ ଆବଦ୍ଧ । ସମ୍ବିଧାନରେ ଉଲ୍ଲିଖିତ ଧାରାଗୁଡ଼ିକ ବିଭିନ୍ନ କାର୍ଯ୍ୟପାଇଁ ଉଦ୍ଦିଷ୍ଟ । ସେଗୁଡ଼ିକୁ ଯଦି ଜଣେ ନାଗରିକ ସମ୍ମାନ ନଦିଏ ଏବଂ ଗ୍ରହଣ ନକରେ, ତେବେ ସେ ଯଥାର୍ଥ ନାଗରିକ ନୁହେଁ ବୋଲି ଗଣାଯାଇଥାଏ । ନାଗରିକତ୍ୱ ବଜାୟ ରଖିବାକୁ ହେଲେ ନିଶ୍ଚିତ ଭାବରେ ସାମ୍ବିଧାନିକ ଧାରାଗୁଡ଼ିକ ପ୍ରତି ସମ୍ମାନ ପ୍ରଦର୍ଶନ ପ୍ରତ୍ୟେକ ନାଗରିକଙ୍କ କର୍ତ୍ତବ୍ୟ । ସମ୍ବିଧାନ ବିନା ଦେଶ ଅଚଳ ଏବଂ ଆଇନ କାନୁନ ଦେଶବାସୀଙ୍କ ପାଇଁ ଦର୍ପଣ ସଦୃଶ, ଏହା ଗଣତନ୍ତ୍ର ରାଷ୍ଟ୍ରରେ ପ୍ରତିପାଦିତ ହୋଇଥାଏ । ଭାରତକୁ ସାର୍ବଭୌମ ଗଣତାନ୍ତ୍ରିକ ରାଷ୍ଟ୍ରରେ ଡକ୍ଟର ଆମ୍ବେଦକରଙ୍କ ପ୍ରଣୀତ ସମ୍ବିଧାନ ବିଶ୍ୱରେ ପରିଚିତ କରିପାରିଛି । ଭାରତର ଐତିହ୍ୟ ଓ ପରଂପରାକୁ ବଜାୟ ରଖି ତା'ର ବିକାଶ ଦିଗରେ କାର୍ଯ୍ୟ କରିବା ଲାଗି ନାଗରିକଙ୍କୁ ସମ୍ବିଧାନ ସହାୟତା କରୁଛି । ନାଗରିକମାନଙ୍କୁ ବିଶ୍ୱରେ ପରିଚିତ କରିବା ଦିଗରେ ଭାରତୀୟ ସମ୍ବିଧାନରେ ଉଲ୍ଲେଖ ହୋଇଥିବା

ଧାରାଗୁଡ଼ିକ ଯଥେଷ୍ଟ ସାହାଯ୍ୟ କରିଥାଏ । ଶିକ୍ଷା, ସଂସ୍କୃତିକୁ ସବୁ ନାଗରିକ ଗ୍ରହଣ କରିବା ସଂଗେ ସଂଗେ ଏହାର ବିକାଶ ଦିଗରେ ସମସ୍ତେ କାର୍ଯ୍ୟ କରିପାରିବେ, ଏହା ସମ୍ବିଧାନରେ ଉଲ୍ଲେଖ ହୋଇଛି । ଦେଶ ବହୁବର୍ଷ ପରେ ସ୍ୱାଧୀନ ହୋଇଥିବା ବେଳେ, ସ୍ୱାଧୀନ ଭାରତକୁ ଅଧିକ ମର୍ଯ୍ୟାଦାବନ୍ତ କରିବ ନିରପେକ୍ଷ ନୀତି ଓ ଆଦର୍ଶ । ସେଥିପାଇଁ ସମ୍ପ୍ରଦାୟ, ଧର୍ମ ଓ ଗୋଷ୍ଠୀ ନିର୍ବିଶେଷରେ ଭାରତରେ ବସବାସ କରୁଥିବା ସମସ୍ତେ ହେଉଛନ୍ତି ଭାରତ ମାତାର ସନ୍ତାନ, ଏହା ମନେ କରାଯିବା ଉଚିତ । ଏହା ହିନ୍ଦୁ ରାଷ୍ଟ୍ର ହୋଇଥିଲେ ହେଁ ଏଠାରେ ଯେଉଁ ମୁସଲମାନ ସମ୍ପ୍ରଦାୟ ବସବାସ କରୁଛନ୍ତି, ସେମାନଙ୍କ ପ୍ରତି ଅସମ୍ମାନ ହେଲାଭଳି କୌଣସି କାର୍ଯ୍ୟ କରାଯିବ ନାହିଁ । ସେମାନଙ୍କୁ ମର୍ଯ୍ୟାଦାର ସହିତ ସୁରକ୍ଷା ଦେବା ପ୍ରତ୍ୟେକ ଭାରତୀୟଙ୍କର କର୍ତ୍ତବ୍ୟ । ସେହିପରି ଖ୍ରୀଷ୍ଟିୟାନ, ଜୈନ ଓ ବୌଦ୍ଧ ପ୍ରଭୃତି ଧର୍ମରେ ଦୀକ୍ଷିତ ବ୍ୟକ୍ତିମାନଙ୍କୁ ସମ୍ମାନ ଦେବା ଓ ସେମାନଙ୍କୁ ଭାରତର ସନ୍ତାନ ବୋଲି ମନେକରିବା ଭାରତୀୟ ସମ୍ବିଧାନର ଲକ୍ଷ୍ୟ । ନାରୀ ସମାଜର ସ୍ୱାଧୀନତା ଉପରେ ଦେଶ ସ୍ୱାଧୀନତା ପୂର୍ବରୁ ମହାତ୍ମାଗାନ୍ଧୀ ଯେଉଁ ପରିକଳ୍ପନା କରିଥିଲେ, ତାହା ସାକାର ହେବା ପାଇଁ ସମ୍ବିଧାନରେ ନାରୀ ସ୍ୱାଧୀନତାକୁ ଗୁରୁତ୍ୱ ଦିଆଯାଇଛି ।

ମହାତ୍ମା ଗାନ୍ଧୀ କହିଥିଲେ – ଯେଉଁ ଦିନ ଜଣେ ନାରୀ ଏକାକିନୀ ରାଜରାସ୍ତାରେ ଚାଲିପାରିବ, ସେତେବେଳେ ଭାରତ ପ୍ରକୃତ ସ୍ୱାଧୀନ ହୋଇଛି ବୋଲି ଅନୁଭବ କରାଯିବ । ନାରୀ ଓ ପୁରୁଷ ମଧ୍ୟରେ କୌଣସି ପାର୍ଥକ୍ୟ ନରହିଲେ ସମାଜ ଦୁହିଁଙ୍କ ସହଯୋଗରେ ଉନ୍ନତ ହୋଇପାରିବ । ଏହି ବାଣୀକୁ ଡ. ଆମ୍ବେଦକର ମନେରଖି ସମ୍ବିଧାନରେ ନାରୀମାନଙ୍କ ସ୍ୱାଧୀନତା ସହିତ ସେମାନଙ୍କ ଶିକ୍ଷା ଗ୍ରହଣକୁ ଗୁରୁତ୍ୱ ଦେଇଛନ୍ତି । ୧୯୨୧ ମସିହା ସେପ୍ଟେମ୍ବର ୧୫ ତାରିଖ 'ୟଙ୍ଗ ଇଣ୍ଡିଆ'ରେ ଗାନ୍ଧୀଜୀ ଦର୍ଶାଇଥିଲେ– ନାରୀ କେବଳ ପୁରୁଷର କାମନା ଚରିତାର୍ଥରେ ସହଯୋଗ କରେନାହିଁ, ସେ ପୁରୁଷ ପାଇଁ ଯଥେଷ୍ଟ କାର୍ଯ୍ୟ କରିପାରେ । ସେ ଦୃଷ୍ଟିରୁ ସମାଜର ସେ ଏକ ଅବିଚ୍ଛେଦ୍ୟ ଅଂଗ । ପୁରୁଷ ସହିତ ସେ ଯେତେବେଳେ ସମକକ୍ଷ ବୋଲି ଭାବିପାରିବ, ସେତେବେଳେ ସେ ସହଚାରିଣୀ ହେବାକୁ ଯୋଗ୍ୟା ହେବ । ଏହି ସମକକ୍ଷ ଭାବକୁ ରକ୍ଷା କରିବା ପାଇଁ ସମ୍ବିଧାନକାର ସମ୍ବିଧାନରେ ଗୁରୁତ୍ୱ ଦେଇଛନ୍ତି । ନାରୀ ପୁରୁଷର କେବେ ଦାସୀ ନୁହେଁ, ଏପରି ଦାସତ୍ୱ ବନ୍ଧନରୁ ସେ ସବୁବେଳେ ମୁକ୍ତ ରହିବା ଉଚିତ । କାରଣ ତା'ର ସାମର୍ଥ୍ୟ ଅଛି – ଶକ୍ତି ଅଛି – ତାର ବିଚାର ବୁଦ୍ଧି ବି ରହିଛି, ତେଣୁ ତାକୁ ପୁରୁଷମାନଙ୍କର ଦାସୀ ବୋଲି ଭାବିବା ଠିକ୍ ନୁହେଁ । ନାରୀ ଠାରୁ ଯିଏ ଜନ୍ମଲାଭ କରିଥାଏ, ସେ ସେହି ମା'ର ମାଂସ ଓ ଅସ୍ଥିକୁ ଧାରଣ କରି ଜନ୍ମ ହୋଇଥାଏ । ଜଣେ ପୁରୁଷ ଏକଥାକୁ କେବେ ଅସ୍ୱୀକାର କରିପାରିବ ନାହିଁ । ସେଥିପାଇଁ ନାରୀକୁ ପ୍ରତିଷ୍ଠିତ ହେବା ଦିଗରେ ଏବଂ ସାମାଜିକ ସ୍ୱଚ୍ଛନ୍ଦତା ଆହରଣ ଲାଗି ସୁଯୋଗ ଦେବା ପୁରୁଷର କର୍ତ୍ତବ୍ୟ । ବରଂ ବହୁ ଦୃଷ୍ଟିରୁ ନାରୀ ଯେ ପୁରୁଷ ଠାରୁ ଉଚ୍ଚରେ ଏହା ସ୍ୱୀକାର କରିବାକୁ ହେବ । ମହାତ୍ମା ଗାନ୍ଧୀଙ୍କର ଏହି ଚିନ୍ତାଧାରାକୁ ଭାରତୀୟ ସମ୍ବିଧାନ ପ୍ରଣେତା ଡ. ଆମ୍ବେଦକର ଭୁଲି ନଥିଲେ । ସେଥିପାଇଁ ସମ୍ବିଧାନରେ ମହିଳାମାନଙ୍କ ସ୍ୱାଧୀନତା, ଶିକ୍ଷା ଓ ଅନ୍ୟାନ୍ୟ କାର୍ଯ୍ୟ ପାଇଁ ଗୁରୁତ୍ୱ ଦିଆଯାଇ ସେମାନଙ୍କୁ ଆଗଭର କରିବା ଲାଗି ସ୍ୱତନ୍ତ୍ର ଧାରା ପ୍ରସ୍ତୁତ କରାଯାଇଛି ।

ସମ୍ବିଧାନରେ ଅସ୍ପୃଶ୍ୟତା ନିବାରଣକୁ ଗୁରୁତ୍ୱ ଦିଆଯାଇଛି । କୌଣସି ମଣିଷ ଅସ୍ପୃଶ୍ୟ ନୁହେଁ, ଏହା ଭାବିବା ମଣିଷର କର୍ତ୍ତବ୍ୟ । ଈଶ୍ୱରଙ୍କ ଦୃଷ୍ଟିରେ ସମସ୍ତେ ସମାନ । ସବୁ ମଣିଷଙ୍କୁ ଈଶ୍ୱର ସୃଷ୍ଟି କରିଛନ୍ତି, ତେଣୁ ଏ କ୍ଷେତ୍ରରେ ଜଣେ ଅନ୍ୟ ଜଣକୁ କାହିଁକି ଅସ୍ପୃଶ୍ୟ ବୋଲି ମନେ କରିବ ! ସେ ଦୃଷ୍ଟିରୁ ସବୁ ମଣିଷଙ୍କୁ ଭଗବାନ ଯେତେବେଳେ ଜନ୍ମ ଦେଇଛନ୍ତି, ସେତେବେଳେ ସେମାନଙ୍କ ଭିତରେ କାହିଁକି ଛୁଆଁ ଅଛୁଆଁ ଭାବ ସୃଷ୍ଟି ହେବ । ମହାତ୍ମାଗାନ୍ଧୀ ୧୯୨୧ ମସିହା ମଇ ୪ ତାରିଖ 'ୟଙ୍ଗ ଇଣ୍ଡିଆ'ରେ ଲେଖିଥିଲେ – ମୁଁ କେବେ ହେଲେ ଆଉଥରେ ଜନ୍ମ ହେବାକୁ କାମନା କରୁନାହିଁ । ତେବେ ଯଦି ଭଗବାନ ମୋତେ ପୁନର୍ବାର ମଣିଷ ଭାବରେ ଜନ୍ମ ଦିଅନ୍ତି, ତେବେ ମୋର ପ୍ରାର୍ଥନା ମୋତେ ସେ ଜଣେ ଅସ୍ପୃଶ୍ୟ ଭାବରେ ଜନ୍ମ ଦିଅନ୍ତୁ । ଫଳରେ ଅସ୍ପୃଶ୍ୟମାନେ କିପରି ନିର୍ଯ୍ୟାତିତ ହେଉଛନ୍ତି, କିପରି କଷ୍ଟ ଭୋଗ କରୁଛନ୍ତି ଏବଂ ଅପମାନିତ ହେଉଛନ୍ତି, ତାହା ମୁଁ ଅନୁଭବ କରିପାରିବି । ଫଳରେ ସେହି ଅନୁଭବରୁ ମୁଁ ସେମାନଙ୍କ ପ୍ରତି ଦୟା ପ୍ରଦର୍ଶନ କରି ସେମାନଙ୍କୁ ସେପରି ନିର୍ଯ୍ୟାତନାରୁ ମୁକ୍ତ କରିବାକୁ ସକ୍ଷମ ହେବି । ଏ ଦୃଷ୍ଟିରୁ ମୁଁ କାମନା କରେ ଯେ ଯଦି ଏ ପୃଥିବୀରେ ପୁନର୍ବାର ମୋର ଜନ୍ମ ହୁଏ, ତେବେ ମୁଁ ଏ ସମାଜ ସାଧାରଣ ଭାବରେ ଯାହାଙ୍କୁ ଅସ୍ପୃଶ୍ୟ ବୋଲି ବିବେଚନା କରୁଛି, ସେହି କୁଳରେ ଜନ୍ମ ନିଏ । କେବେ ଭଗବାନ ମୋତେ କ୍ଷତ୍ରିୟ, ବୈଶ୍ୟ ଅବା ବ୍ରାହ୍ମଣ ପରି ଆଜିର ବିଚାରରେ ସବର୍ଣ୍ଣ ପରି ମୋତେ ଜନ୍ମ ନ ଦିଅନ୍ତୁ । ଏହି ଆଦର୍ଶ ବାଣୀ ଯେପରି ବିଦ୍ୱାନ ଡ. ଆମ୍ବେଦକରଙ୍କୁ ଆକୃଷ୍ଟ କରିଥିଲା । ସେଥିପାଇଁ ସମ୍ବିଧାନରୁ ଛୁଆଁ ଅଛୁଆଁ ଭାବକୁ ବିଲୋପ କରିଛନ୍ତି । ଏ ସଂସାରରେ କେହି ଅସ୍ପୃଶ୍ୟ ନୁହଁନ୍ତି, ସମସ୍ତେ ଈଶ୍ୱରଙ୍କ ସୃଷ୍ଟ । ତେଣୁ ତାଙ୍କ ସୃଷ୍ଟିରେ ଅସ୍ପଶ୍ୟ ହୋଇ କାହାକୁ ରଖାଯିବା

ଏକ ବିକାଶଶୀଳ ରାଷ୍ଟ୍ରର ଲକ୍ଷ୍ୟ ନହେଉ ବୋଲି ସେ ସମ୍ବିଧାନ ପ୍ରସ୍ତୁତ ବେଳେ ପରିକଳ୍ପନା କରିଥିଲେ ।

ଦାରିଦ୍ର୍ୟର ସୀମାରେଖା ତଳେ ଯେଉଁମାନେ ହନ୍ତସନ୍ତ ହେଉଛନ୍ତି, ସେମାନଙ୍କୁ ଶ୍ରଦ୍ଧା କରିବା ଧନିକ ଶ୍ରେଣୀର କର୍ତ୍ତବ୍ୟ । ଦରିଦ୍ରମାନେ ହେଉଛନ୍ତି ନାରାୟଣ । ସେମାନଙ୍କୁ ସମାଜରୁ ଦୂରେଇ ରଖାଯିବା ଉଚିତ ନୁହେଁ । ବିଶେଷତଃ ଏକ ସମାଜବାଦୀ ରାଷ୍ଟ୍ରରେ ଦରିଦ୍ର ନାରାୟଣ ସେବା କରିବା ଅର୍ଥ ଥିଲାବାଲା ଲୋକଙ୍କର ପ୍ରଧାନ କର୍ତ୍ତବ୍ୟ । ମଣିଷ ଦୀନଦରିଦ୍ରର ବନ୍ଧୁ ହୋଇପାରିଲେ, ଜୀବନ ତାର ଧନ୍ୟ ହୁଏ । ନିଜେ ବଞ୍ଚିବା ସହିତ ଅନ୍ୟକୁ ବଞ୍ଚାଇବା ହେଉଛି ମଣିଷର ପ୍ରକୃତ ଧର୍ମ । ମହାତ୍ମାଗାନ୍ଧୀ ପରାମର୍ଶ ଦେଉଥିଲେ ଯେଉଁ ଧନୀ ବ୍ୟକ୍ତିମାନେ ସମାଜରେ ଧନ ସଞ୍ଚୟ କରିଛନ୍ତି, ସେହି ସଞ୍ଚିତ ଧନ ସେମାନଙ୍କ ବିଳାସ ବ୍ୟସନରେ ଖର୍ଚ୍ଚ ନହେଉ । ସେମାନେ କେବଳ ମାତ୍ର ସଞ୍ଚିତ ଅର୍ଥର ଜଗୁଆଳି ବୋଲି ମନେ କରିବା ଉଚିତ । ସମାଜର ମଙ୍ଗଳ ପାଇଁ ସେହି ଅର୍ଥକୁ ସେମାନେ ବ୍ୟୟ କରିବା ଦିଗରେ କୁଣ୍ଠା ପ୍ରକାଶ ନକରନ୍ତୁ । ଫଳରେ ସାମାଜିକ କ୍ଷେତ୍ରରେ ଅର୍ଥନୈତିକ ସାମ୍ୟ ପ୍ରତିଷ୍ଠା ହୋଇପାରିବ । ଏହି ସାମ୍ୟବାଦୀ ନୀତି ଗଣତାନ୍ତ୍ରିକ ରାଷ୍ଟ୍ରରେ ସ୍ୱାଗତଯୋଗ୍ୟ ଆଦର୍ଶ । ଏଥିପାଇଁ ଦରିଦ୍ରମାନଙ୍କୁ ଘୃଣା ନକରି ସମ୍ମାନ ଦେବା ଧନୀମାନଙ୍କର କର୍ତ୍ତବ୍ୟ । ତେଣୁ ସମ୍ବିଧାନରେ ଦରିଦ୍ରକୁ ଅସମ୍ମାନ କରାନଯାଇ ତାର ଆର୍ଥନୀତିକ ବିକାଶ ଦିଗରେ କାର୍ଯ୍ୟ କରାଯିବା ଉଚିତ ବୋଲି ଲେଖାଯାଇଛି । ୩୯୫ ଗୋଟି ଧାରା ବିଶିଷ୍ଟ ୧୦ଗୋଟି ଅନୁଚ୍ଛେଦ ରହି ଏହି ଭାରତୀୟ ସମ୍ବିଧାନ ବିଶ୍ୱର ଶ୍ରଦ୍ଧା ଭାଜନ ହୋଇଛି । ଏହି ସମ୍ବିଧାନକୁ ଏପରି ଭାବରେ ପ୍ରସ୍ତୁତ କରାଯାଇଛି ଯେ କେବଳ ବର୍ତ୍ତମାନ ନୁହେଁ – ଭବିଷ୍ୟତ ପର୍ଯ୍ୟନ୍ତ ସେଥିରେ ଉଲ୍ଲିଖିତ ଧାରାଗୁଡ଼ିକ ବୁଝିବା ପାଇଁ କଷ୍ଟସାଧ୍ୟ ହେବ ନାହିଁ । ପ୍ରଶାସନିକ କ୍ଷେତ୍ରରେ ଯେଉଁ ସବୁ ମୌଳିକ ନୀତିନିୟମ ଅପରିହାର୍ଯ୍ୟ, ସେଗୁଡ଼ିକର ବ୍ୟାଖ୍ୟା କରାଯାଇଛି । ଏହି ଭାରତୀୟ ସମ୍ବିଧାନକୁ ନେଇ କୌଣସି ପ୍ରକାର ତର୍କ ବିତର୍କ ସୃଷ୍ଟି ହେବାର ଆଶଙ୍କା ନାହିଁ ବୋଲି ସମ୍ବିଧାନ ବିଶେଷଜ୍ଞମାନେ ମତ ଦେଇଛନ୍ତି । ଏଥିରେ ଦେଶର ବିକାଶମୂଳକ ଓ ସମାଜ ମଙ୍ଗଳ ଦିଗରେ ସହାୟକ ହେଲାଭଳି ସବୁପ୍ରକାରର ନୀତିନିୟମ ଉଲ୍ଲେଖ ହୋଇଛି । ହିନ୍ଦୁ ଧର୍ମରେ ଅଧିକ କୁସଂସ୍କାର ଓ ଅନ୍ଧବିଶ୍ୱାସ ପ୍ରଭୃତି ଗୁରୁତ୍ୱ ଲାଭ କରିବାରୁ ସବର୍ଣ୍ଣମାନଙ୍କର ଦୃଷ୍ଟିକୋଣ ଭିନ୍ନ ହୋଇଗଲା । ସେମାନେ ଅସବର୍ଣ୍ଣମାନଙ୍କୁ ଘୃଣା ଓ ଅଶ୍ରଦ୍ଧା ଦୃଷ୍ଟିରେ ଦେଖିବା ଆରମ୍ଭ କଲେ । ଏ ପରିସ୍ଥିତିରେ ଅସବର୍ଣ୍ଣମାନଙ୍କୁ ଯେଉଁ ନିର୍ଯାତନା ଦିଆଗଲା, ବାସ୍ତବିକ ଭାରତୀୟ ସମାଜରେ ଅସହ୍ୟ ମନେହେଲା । ଏହାକୁ ରୋକିବା ପାଇଁ ଡ. ଆମ୍ବେଦକର ଅସ୍ପୃଶ୍ୟମାନଙ୍କ ପ୍ରତି ଅତ୍ୟନ୍ତ ଦରଦ ପ୍ରକାଶ କରି ସମଦୃଷ୍ଟି ସଂପନ୍ନ ହେବା ପାଇଁ ଆଇନ ପ୍ରଣୟନ କରିଛନ୍ତି । ଏପରିକି ହିନ୍ଦୁମାନେ ହିନ୍ଦୁଧର୍ମର ମୌଳିକ ଆଦର୍ଶ ଓ ତତ୍ତ୍ୱ କୁ ଭୁଲି ସେମାନେ ନାନା ପ୍ରକାର କୁକାର୍ଯ୍ୟ କରିଯାଉଥିଲେ । କିନ୍ତୁ ସାମ୍ବିଧାନିକ ଦୃଷ୍ଟିରେ ସବୁଧର୍ମକୁ ସହାନୁଭୂତି ପ୍ରଦର୍ଶନ କରାଯିବାରୁ ସବୁ ଧର୍ମର ମଣିଷ ସମାନ ବିବେଚିତ ହେଲେ । ଡ. ଆମ୍ବେଦକର ଯଥାର୍ଥରେ ଥିଲେ ଦଳିତ ହରିଜନମାନଙ୍କର ଚିରସାଥୀ ଓ ସାହାଯ୍ୟକାରୀ । ସେମାନଙ୍କ ନିମନ୍ତେ ସେ ସ୍ୱର ଉଠାଉଥିଲେ, ସେମାନଙ୍କୁ ଯଥୋଚିତ ସମ୍ମାନ ଦେବାଲାଗି ସଂଗ୍ରାମ କରିବାକୁ ପଛାଉ ନଥିଲେ । ଏହି ଦୃଷ୍ଟିରୁ ସେମାନଙ୍କ ମଙ୍ଗଳ ପାଇଁ ସେ ଆଇନରେ ଯଥେଷ୍ଟ ଧାରା ସଂଯୋଜିତ କରିଛନ୍ତି ।

ଦୋଷୀକୁ କିପରି ଦଣ୍ଡ ମିଳିବ ଏବଂ ନିର୍ଦ୍ଦୋଷ କିପରି ମୁକ୍ତି ପାଇବ ଏନେଇ ସମ୍ବିଧାନରେ ସ୍ପଷ୍ଟ କରିଦିଆଯାଇଛି । ଲୋକମାନେ ଦେଶରେ କିପରି ନିର୍ଭୟ ଓ ସ୍ୱାଧୀନଭାବେ ଚଳିପାରିବେ, ସେଦିଗରେ ସମ୍ବିଧାନ ବ୍ୟବସ୍ଥା କରିଛି । ଆମ ଦେଶର ଲୋକମାନେ ଯେଉଁ ଆଇନ ତିଆରି କରିଦେଲେ ତାହା ଆମ ଭାରତ ପାଇଁ ଯୁକ୍ତିଯୁକ୍ତ ହେଲା । ପରାଧୀନ ଭାରତ ବର୍ଷରେ ସମ୍ବିଧାନ ପ୍ରଣୟନ ଆମ ଦେଶ ଲୋକଙ୍କ ପାଇଁ କାଠିକର ପାଠ ଥିଲା । ଇଂରେଜ ଶାସକମାନେ ଯେଉଁ ଆଇନ ତିଆରି କରୁଥିଲେ, ତାହା ଭାରତ ପାଇଁ ଯଥାର୍ଥ ହେଉ କି ନହେଉ ସେପରି ଆଇନକୁ ମାନିନେବାକୁ ଆମ ଦେଶର ଲୋକମାନେ ବାଧ୍ୟ ହେଉଥିଲେ । ସର୍ବପ୍ରଥମେ ଭାରତୀୟ ଜାତୀୟ କଂଗ୍ରେସ କେବଳ ଇଂରେଜ ଶାସକଙ୍କୁ ବିରୋଧ କଲାନାହିଁ, ସେମାନଙ୍କ ଦ୍ୱାରା ପ୍ରଣୀତ ଆଇନ କାନୁନକୁ ମଧ୍ୟ ବିରୋଧ କରିବାକୁ ପଛାଇଲା ନାହିଁ । ସେଥିପାଇଁ ଦେଶକୁ ଇଂରେଜ କବଳରୁ ମୁକ୍ତକରି ନିଜ ଶାସନ ନିଜ ହାତରେ ରଖିବା ଓ ନିଜ ପ୍ରଣୀତ ଆଇନ ବଳରେ ଶାସନ ପରିଚାଳନା କରିବା ପରିକଳ୍ପନାକୁ ଭାରତର ନେତାମାନେ ସାକାର ରୂପ ଦେଲେ । ଧର୍ମକୁ ଯେଉଁମାନେ ବିରୋଧାଚରଣ କରନ୍ତି ସେମାନେ ସାମାଜିକ ଅପରାଧୀ, ଏହା ସମ୍ବିଧାନରେ ଲିପିବଦ୍ଧ ହୋଇ ରଖାଯାଇଛି । ଭଗବାନ, ଆଲ୍ଲା, ଯୀଶୁ, ନାନକ ସମସ୍ତେ ହେଉଛନ୍ତି ଭାରତୀୟମାନଙ୍କ ପାଇଁ ଦେବତା । କିଏ କେଉଁ ବିଶ୍ୱାସର ଦେବତାଙ୍କୁ ନିଜର ଉପାସ୍ୟ ଦେବତା ମନେକରିବ ତାହା ତା'ର ଇଚ୍ଛା ଉପରେ ନିର୍ଭର କରେ । ଏହି ସ୍ୱାଧୀନତା ଆମେ ସମ୍ବିଧାନ ପାଇଁ ପାଇପାରିଲେ । ମୈତ୍ରୀ, ସ୍ନେହ ଓ ଶାନ୍ତିର ବାର୍ତ୍ତା ଆମ ଭାରତୀୟ ସମ୍ବିଧାନ ବହନ କରିଥାଏ । ଅହିଂସା ଓ ଆଦର୍ଶ ତା'ର ମୂଳଧାର ।

ସମ୍ବିଧାନ ପ୍ରଣେତା ଡ. ଆମ୍ବେଦକରଙ୍କ ବିଚାର ଦୃଷ୍ଟିରେ କୌଣସି ଧର୍ମ ନ୍ୟୂନ ନୁହେଁ କି କୌଣସି ସମ୍ପ୍ରଦାୟ ଉଚ୍ଚ ନୁହେଁ – ସବୁଠି ମୌଳିକତା ରହିଥିବା ସେ ଅନୁଭବ କରିଥିଲେ । ସେ କାହାରିକୁ ଭୟ ନକରି ଓ କାହାପ୍ରତି ଅତ୍ୟଧିକ ଶ୍ରଦ୍ଧା ପ୍ରଦର୍ଶନ ନକରି ମଣିଷର ସୁରକ୍ଷା ପାଇଁ ଯେଉଁ ସମ୍ବିଧାନ ପ୍ରସ୍ତୁତ କରିଥିଲେ ତାହା ଆଜି ବିଶ୍ୱରେ ଆଲୋଚିତ ହେଉଛି । ଭାରତ ତା'ର ନିରପେକ୍ଷ ସମ୍ବିଧାନକୁ ନେଇ ଗର୍ବ କରିଥାଏ ।

ଭାରତୀୟ ସମ୍ବିଧାନ ଯେଉଁ ସମାଜବାଦର କଥା କହିଥାଏ, ସେହି ସମାଜବାଦ ଦେଶରୁ ଦାରିଦ୍ର୍ୟ ଦୂର କରିବା ପାଇଁ ଏକମାତ୍ର ମାଧ୍ୟମ ବୋଲି ଭାରତର ବିଶିଷ୍ଟ ଜନନାୟକମାନେ ପରିକଳ୍ପନା କରିଥିଲେ । ଏହି ସମ୍ବିଧାନକୁ ଆୟୁଧ କରି ସ୍ୱାଧୀନ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁ ଆଦର୍ଶବାଦୀ ଭାବରେ ସମାଜବାଦକୁ ଗ୍ରହଣ କରିଥିଲେ । ବିଜ୍ଞାନସମ୍ମତ ସମାଜବାଦ ଦେଶ ପାଇଁ ହିତକର ଏହା ସେ ଅନୁଭବ କରିଥାଆନ୍ତି । ଯେଉଁ ଅର୍ଥନୀତିକ ବୈଷମ୍ୟ ସାମାଜିକ ଜୀବନରେ ରହିଛି, ତା' ସେ ଜଣେ ଆଦର୍ଶବାଦୀ ରାଜନେତା ଭାବରେ ବିଚାର କରିଥିଲେ । ମହାତ୍ମା ଗାନ୍ଧୀ ଦୈନ୍ୟ ଓ ବୈଷମ୍ୟକୁ ଦୂର କରିବା ପାଇଁ ଗ୍ରାମ୍ୟ ଜୀବନ ଓ କୃଷକମାନଙ୍କ ପ୍ରତି ଧ୍ୟାନ ରଖିଥିଲେ । ପଣ୍ଡିତ ନେହେରୁ ମଧ୍ୟ ଆଦର୍ଶବାଦୀ ଦୃଷ୍ଟିକୋଣରେ ସମାଜବାଦକୁ ବିଚାର କରୁଥିଲେ । ଭାରତରୁ ଅନ୍ୟାୟ, ଅନୀତି ଓ ଅର୍ଥନୀତିକ ବୈଷମ୍ୟ ଦୂର କରିବା ଦିଗରେ ସେ ପଦକ୍ଷେପ ନେଇଥିଲେ । ତାଙ୍କ ମତରେ – ଅନ୍ୟାୟ ବୈଷମ୍ୟ ଯେତେଦିନ ଯାଏ ସମାଜକୁ ଗ୍ରାସକରି ରହିଥିବ, ତାହା ଏକ ବ୍ୟାଧିଗ୍ରସ୍ତ ସମାଜ ହୋଇ ପଡ଼ିରହିଥିବ । ଏସବୁର ଦୂରୀକରଣ ପାଇଁ କେବଳମାତ୍ର ସମାଜବାଦ ହିଁ ଏକମାତ୍ର ମାଧ୍ୟମ । ସେ ଦୃଷ୍ଟିରୁ ଦେଶରେ ସମାଜବାଦ ଆଦର୍ଶ ପ୍ରତିଷ୍ଠା କରିବା ଲାଗି ଆପ୍ରାଣ ଉଦ୍ୟମ କରିଥିଲେ । ଉତ୍ପାଦିତ ଦ୍ରବ୍ୟର ସୁଷମ ବଣ୍ଟନ ହୋଇପାରିଲେ ତାହା ସମାଜ ଓ ଦେଶ ପାଇଁ ମଙ୍ଗଳକର । ଏହା ଦ୍ୱାରା ଲୋକମାନେ ଉପକୃତ ହୋଇପାରିବେ । ଯଦି ଭାରସାମ୍ୟ ନରହେ, ସମାଜ ଦୁଇଭାଗରେ ବିଭକ୍ତ ହୋଇ ଆହୁରି ଅଧିକ ସମସ୍ୟା ସୃଷ୍ଟି କରିବ । ସବୁ କ୍ଷେତ୍ରରେ ସେ ସମ୍ବିଧାନକୁ ଆଖି ଆଗରେ ରଖିଥିଲେ । ଯେଉଁଠି ସମାଜବାଦ ପ୍ରତିଷ୍ଠିତ ହେବ, ସେଠାରେ କେବେ ରକ୍ତାକ୍ତ ବିପ୍ଳବ ଆସିବ ନାହିଁ । ପଣ୍ଡିତ ନେହେରୁ ଯେଉଁ ଯୋଜନାମାନ ପ୍ରସ୍ତୁତକରି ତାହା ପଞ୍ଚବାର୍ଷିକ ଯୋଜନାର ରୂପ ଦେଲେ, ତାହା ସମ୍ବିଧାନସମ୍ମତ ।

ଶାସନର ବିକେନ୍ଦ୍ରୀକରଣ ଦ୍ୱାରା ଗ୍ରାମାଞ୍ଚଳଠାରୁ ସହରାଞ୍ଚଳ ଯାଏ ଲୋକମାନେ ଉପକୃତ ହେବେ ବୋଲି କେନ୍ଦ୍ର ସରକାର ଯେଉଁ ପରିକଳ୍ପନା କରିଥିଲେ, ତାହା ସୁଫଳ ହେବା ମୂଳରେ ଭାରତୀୟ ସମ୍ବିଧାନର ଧାରାମାନ ଯଥେଷ୍ଟ ସହାୟକ ହୋଇଛି । ଏହି ସମ୍ବିଧାନ ବିଶ୍ୱର ବିଭିନ୍ନ ଦେଶରୁ ବିଭିନ୍ନ ତଥ୍ୟ ଆହରଣ କରିଛି ସତ ତେବେ ଭାରତର ଆତ୍ମାକୁ ଚିହ୍ନି ଏହା ଯେପରି ଭାବେ ଭାରତୀୟମାନଙ୍କ ଉପଯୋଗୀ ଏବଂ ଭାରତବର୍ଷ ପାଇଁ ଯଥାର୍ଥଭାବେ ରୂପାୟିତ ହୋଇଛି, ତାହା ବିଶ୍ୱରେ ଅଦ୍ୱିତୀୟ । ସମ୍ବିଧାନର ପ୍ରଣେତା ତଥା ସହଯୋଗୀମାନେ ପୃଥିବୀର ବିଭିନ୍ନ ଦେଶର ସମ୍ବିଧାନକୁ ଅନୁକରଣ କରିଛନ୍ତି । ନାନା ସୂତ୍ର ସେ ସବୁ ସମ୍ବିଧାନରୁ ଗ୍ରହଣ କରିଛନ୍ତି । ସବୁ ସତ୍ତ୍ୱେ ଏହା ଭାରତ ପାଇଁ ହୋଇପାରିଛି ଅତି ଆପଣାର ଲିଖିତ ସମ୍ବିଧାନ । ଭାରତବର୍ଷ ବହୁବର୍ଷ ଧରି ଇଂରେଜମାନଙ୍କ ଦ୍ୱାରା ଶାସିତ ହୋଇଥିଲେ ହେଁ ବ୍ରିଟିଶ ସମ୍ବିଧାନକୁ ଭାରତ ଗ୍ରହଣ କରିନାହିଁ । ସେହି ସମ୍ବିଧାନ ଲିଖିତ ସମ୍ବିଧାନ ଭାବେ ଗୃହୀତ ହୁଏନାହିଁ । ସେ ସମ୍ବିଧାନରେ ନାଗରିକର ମୌଳିକ ଅଧିକାରକୁ ଗୁରୁତ୍ୱ ଦିଆଯାଉନଥିବା ବେଳେ, ତା'ର ମୌଳିକ କର୍ତ୍ତବ୍ୟ ଉପରେ ମଧ୍ୟ ସେପରି ଗୁରୁତ୍ୱାରୋପ କରାଯାଇନାହିଁ । ସେହି ସମ୍ବିଧାନ ସଂଶୋଧନ ହେବାର ଆବଶ୍ୟକତା ପଡ଼େ ନାହିଁ । ଭାରତୀୟ ସମ୍ବିଧାନ ଆବଶ୍ୟକ ସ୍ଥଳେ ଜନହିତକର କାର୍ଯ୍ୟକୁ ଆଖିରେ ରଖି ସର୍ବସମ୍ମତି କ୍ରମେ ସଂଶୋଧିତ ହୋଇପାରେ । ଆମେରିକାରେ ପ୍ରଚଳିତ ସମ୍ବିଧାନର ରାଷ୍ଟ୍ରପତୀୟ ବ୍ୟବସ୍ଥାକୁ ଭାରତରେ ଗ୍ରହଣ କରାଯାଇ ନାହିଁ । ସେଠାକାର ସମ୍ବିଧାନରେ ସମ୍ବିଧାନ ସଂଶୋଧନ ଲାଗି ରାଜ୍ୟ ସରକାରଙ୍କର ମତ ଲୋଡ଼ା ହୋଇଥାଏ । ସେଥିପାଇଁ ରାଜ୍ୟସରକାରଙ୍କର ମତ ସହିତ ହାଉସ ଅଫ୍ ପାର୍ଲାମେଣ୍ଟ ଓ ରାଷ୍ଟ୍ରପତିଙ୍କର ଦୁଇ ତୃତୀୟାଂଶ ଭୋଟ ଆମେରିକା ସମ୍ବିଧାନର ସଂଶୋଧନ ପାଇଁ ଆବଶ୍ୟକ ପଡ଼ିଥାଏ । ଯୁକ୍ତରାଷ୍ଟ୍ର ଆମେରିକାର ଶାସନ ସମ୍ବିଧାନ ପ୍ରାୟ ଦୁଇଶହ ବର୍ଷ ତଳେ ପ୍ରସ୍ତୁତ ହୋଇଥିଲା । ଇତି ମଧ୍ୟରେ ଏହା ୨୭ଥର ସଂଶୋଧିତ ହୋଇଥିବା ବେଳେ, ଭାରତର ସମ୍ବିଧାନକୁ ଏ କ୍ଷେତ୍ରରେ ବିଚାରକୁ ନିଆଯାଇପାରେ । ଆମ ସମ୍ବିଧାନରେ ସୁଇଜରଲ୍ୟାଣ୍ଡରେ ଚାଲିଥିବା ବହୁଦଳୀୟ ଶାସନ ନୀତିକୁ ଗ୍ରହଣ କରାଯାଇଛି । କାନାଡ଼ାରେ ମଧ୍ୟ ଅନୁରୂପ ବହୁଦଳୀୟ ଶାସନ ଚାଲିଛି । ଜର୍ମାନ ଯେଉଁ ସମ୍ବିଧାନ ଦ୍ୱାରା ଶାସିତ ହେଉଛି, ସେଥିରେ ଜରୁରିକାଳୀନ ପରିସ୍ଥିତି ଲାଗି ଏକ ଆଇନ ରହିଛି । ସେହି ସୂତ୍ର ଅନୁଯାୟୀ ଭାରତୀୟ ସମ୍ବିଧାନରେ ଜରୁରୀକାଳୀନ ପରିସ୍ଥିତିକୁ ଆଖିରେ ରଖି ଏଥିପାଇଁ ଆଇନ ପ୍ରଣୟନ କରାଯାଇଛି । ଇଂଲଣ୍ଡରେ ଚାଲିଥିବା ଧାରା ଅନୁଯାୟୀ ତାଙ୍କ ରାଜା ଓ ରାଣୀଙ୍କ କ୍ଷମତାଚ୍ୟୁତକୁ ଅନୁକରଣ କରି ଆମ ଦେଶର ରାଷ୍ଟ୍ରମୁଖ୍ୟ

ରାଷ୍ଟ୍ରପତିଙ୍କୁ ମଧ୍ୟ କ୍ଷମତାଚ୍ୟୁତ କରିବାର ବିଧି ରହିଛି । ଆମେରିକାରେ ଚାଲିଥିବା ସମ୍ବିଧାନକୁ ଆଖିରେ ରଖି ସେଥିରୁ ଆମ ସମ୍ବିଧାନ ପାଇଁ ରାଷ୍ଟ୍ରସଂଘ ବ୍ୟବସ୍ଥାକୁ ଅଣାଗଲା । ନାଗରିକର ସେ ଦେଶର ମୌଳିକ ଅଧିକାର ପରି ଆମ ସମ୍ବିଧାନରେ ଆମେରିକୀୟ ସମ୍ବିଧାନରେ ଥିବା ମୌଳିକ ଅଧିକାରକୁ ଅନୁକରଣ କରାଗଲା ।

ଭାରତୀୟ ସମ୍ବିଧାନରେ ବ୍ୟକ୍ତିର ସ୍ୱାଧୀନତାକୁ ଗୁରୁତ୍ୱ ଦିଆଯାଇଛି । ଫଳରେ ବ୍ୟକ୍ତି ସ୍ୱାଧୀନ ଭାବରେ ତା'ର ନୈତିକ ଚେତନାକୁ ବିଚାର ବିଶ୍ଳେଷଣ ମାଧ୍ୟମରେ ଦେଶ ଓ ଜାତି ପାଇଁ ପ୍ରୟୋଗ କରିପାରୁଛି । ଆଦିବାସୀ, ହରିଜନ ତଥା ପଛୁଆ ବର୍ଗର ଲୋକମାନେ ବ୍ୟକ୍ତି ସ୍ୱାଧୀନତା ବଳରେ ନିଜ ଦାବୀ ହାସଲ ପାଇଁ ଅଧିକ ସୁଯୋଗ ପାଇବାକୁ ସକ୍ଷମ ହୋଇଛନ୍ତି । ରାଜନୀତି କ୍ଷେତ୍ରରେ ବ୍ୟକ୍ତିକୈନ୍ଦ୍ରିକ ଚିନ୍ତାଚେତନାକୁ ସେମାନେ ପ୍ରୟୋଗ କରି ଏକ ସୁସ୍ଥ ଗଣତାନ୍ତ୍ରିକ ଶାସନର ସହାୟକ ହେଉଛନ୍ତି । ବ୍ୟକ୍ତିର ସ୍ୱାଧୀନତା ଲାଗି ଅର୍ଥନୈତିକ ଭିତ୍ତିଭୂମିକୁ ଦୃଢ଼ କରିବା ପାଇଁ ବ୍ୟକ୍ତି ଚେଷ୍ଟିତ ହେଉଛି । ବର୍ତ୍ତମାନ ସମ୍ବିଧାନ ବଳରେ ସାଂସଦ ଓ ମନ୍ତ୍ରୀମାନେ ଏକାଧାରରେ ବ୍ୟବସ୍ଥାପକ, ସମ୍ବିଧାନର ସଂଶୋଧନ କର୍ତ୍ତା ତଥା ଆଇନ ପ୍ରଣୟନକାରୀ ଓ ଦେଶର ରକ୍ଷକ ଭାବରେ କାର୍ଯ୍ୟ କରୁଛନ୍ତି । ସଂଖ୍ୟା ଗରିଷ୍ଠ ଦଳ ଶାସନ କ୍ଷମତାରେ ରହିଲା ବେଳେ ସଂଖ୍ୟା ଲଘୁ ଦଳ ବିରୋଧୀ ଦଳର ଆସନ ମଣ୍ଡନ କରେ । କିନ୍ତୁ ଉଭୟ ଯେତେବେଳେ ପାର୍ଲାମେଣ୍ଟ କି ବିଧାନସଭାରେ ବସନ୍ତି, ସେତେବେଳେ ସହମତରେ ଦେଶପାଇଁ କାର୍ଯ୍ୟ କରିବା ଲାଗି ପ୍ରସ୍ତାବ ଗ୍ରହଣ କରନ୍ତି । ଶାସକ ଦଳର ନେତା ଓ ବିରୋଧୀ ଦଳର ନେତାଙ୍କ ଭିତରେ ସୁସଂପର୍କ ରକ୍ଷା ଲାଗି ସମ୍ବିଧାନ ସୁଯୋଗ ଦେଇଛି । ସେଥିପାଇଁ ଭାରତରେ ବହୁଦଳୀୟ ଶାସନ ବ୍ୟବସ୍ଥା କାର୍ଯ୍ୟକାରୀ ହେଉଥିଲେ ହେଁ ସମ୍ବିଧାନ ଏମାନଙ୍କୁ ସବୁ କ୍ଷେତ୍ରରେ ଦିଗ୍‌ଦର୍ଶନ ଦେଇଥାଏ । ସମ୍ବିଧାନରେ ବିରୋଧୀ ଦଳକୁ ଏପରି ସମ୍ମାନ ଦିଆଯାଇଛି ଯେ, ବହୁ କ୍ଷେତ୍ରରେ ଶାସକ ଦଳ ବିରୋଧୀ ନ୍ୟାଯ୍ୟ ଦାବୀ ପାଖରେ ମୁଣ୍ଡ ନୁଆଁଇବାକୁ ବାଧ୍ୟ ହୁଏ । ଭାରତୀୟ ସମ୍ବିଧାନ କେବେ ଏକଛତ୍ରବାଦକୁ ପ୍ରଶ୍ରୟ ଦିଏନାହିଁ । ପ୍ରଧାନମନ୍ତ୍ରୀଙ୍କ ସହିତ ମନ୍ତ୍ରୀ ଓ ସାଂସଦମାନଙ୍କର ଯେପରି ସୁସଂପର୍କ ରହେ, ସେହିପରି ରାଜ୍ୟରେ ମୁଖ୍ୟମନ୍ତ୍ରୀ, ମନ୍ତ୍ରୀ, ଉପମନ୍ତ୍ରୀ ଓ ବିଧାୟକମାନଙ୍କ ଭିତରେ ସୁସଂପର୍କ ରହିବାର ସାମ୍ବିଧାନିକ ବିଧି ମଧ୍ୟ ରହିଛି । ଯେଉଁମାନେ ଲୋକ ପ୍ରତିନିଧି ସେମାନେ ସାଧାରଣ ଜନତାଙ୍କ ପାଖରେ ଉତ୍ତରଦାୟୀ ହୋଇରହିବା ସମ୍ବିଧାନରେ ଉଲ୍ଲେଖ ହୋଇଛି । ଫଳରେ ଲୋକପ୍ରତିନିଧିଙ୍କଠାରେ ସାଧାରଣତଃ ସ୍ୱେଚ୍ଛାଚାରିତା ଦେଖାଯିବା ଉଚିତ ନୁହେଁ । ସମ୍ବିଧାନ ପ୍ରଣେତାମାନେ ବ୍ୟକ୍ତିକୁ ଯେପରି ସର୍ବପ୍ରଥମ ଦାବୀ ଓ ଅଧିକାର ଶିକ୍ଷା ଲାଗି ସୁଯୋଗ ଦେଇଛନ୍ତି, ତାହା ବିଶ୍ୱରେ ବିରଳ ।

ସମ୍ବିଧାନ ରାଷ୍ଟ୍ର ପାଇଁ ଗୋଟିଏ ଜାତୀୟ ସଂଗୀତ ଗାନର ସୁଯୋଗ ଦେଇଥାଏ । ୧୯୩୭ ମସିହାରେ ସ୍ୱାଧୀନତା ସଂଗ୍ରାମୀମାନେ ଲେଖକ ବଙ୍କିମ ଚନ୍ଦ୍ରଙ୍କ 'ବନ୍ଦେ ମାତରମ୍' ଗାନ କରୁଥିଲେ । ଏହାର ପ୍ରଥମ ସ୍ତବକଟି ସେତେବେଳେ ଜାତୀୟ ସଂଗୀତ ରୂପେ ଗୃହୀତ ହୋଇଯାଇଥିଲା । ୧୯୩୭ ମସିହା ନଭେମ୍ବର ମାସରୁ ଏହାକୁ ଜାତୀୟ ସଂଗୀତ ରୂପେ ଗାନ କରିବା ପାଇଁ ନିଖିଳ ଭାରତ କଂଗ୍ରେସ କମିଟିର ବହୁ ସଦସ୍ୟ ମତ ଦେଇସାରିଥିଲେ । ମାତ୍ର ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁ ଓ ଆଉ କେତେଜଣ ବିଦ୍ୱାନମାନଙ୍କ ଦ୍ୱାରା 'ବନ୍ଦେ ମାତରମ୍' ସଂଗୀତଟି ସଂପ୍ରଦାୟ ନିର୍ବିଶେଷରେ ଏହା ଗ୍ରହଣୀୟ ହେଉନାହିଁ ବୋଲି ମତ ପ୍ରକାଶ ପାଇଲା । ନିଖିଳ ଭାରତ କଂଗ୍ରେସ କମିଟି ଭିତରେ ତର୍କ ବିତର୍କ ଆରମ୍ଭ ହୋଇଗଲା । ୧୯୧୩ ମସିହାରେ କବି ରବୀନ୍ଦ୍ରନାଥ ଠାକୁର ନୋବେଲ ପୁରସ୍କାର ପାଇସାରିଥିଲେ । ସାରା ପୃଥିବୀରେ ତାଙ୍କ ପ୍ରତିଭା ପ୍ରଚାରିତ ହୋଇସାରିଥିଲା । ସେ ବିଶ୍ୱ କବିଭାବେ ପୃଥିବୀବାସୀଙ୍କର ଶ୍ରଦ୍ଧା ଭାଜନ ହୋଇସାରିଥିଲେ । ଏ କ୍ଷେତ୍ରରେ ତାଙ୍କ ପ୍ରତିଭା ପ୍ରତି ଓ ତାଙ୍କ ରଚିତ 'ଜନ-ଗଣ-ମନ' ସଂଗୀତ ପ୍ରତି ଅଧିକାଂଶ ବୃଦ୍ଧିଜୀବୀମାନଙ୍କର ଦୃଷ୍ଟି ପଡ଼ିବା ସ୍ୱାଭାବିକ । ପଣ୍ଡିତ ନେହେରୁଙ୍କର ରବୀନ୍ଦ୍ରନାଥଙ୍କ ପରିବାର ପ୍ରତି ଶ୍ରଦ୍ଧା ଓ ସମ୍ମାନ ରହିଥିଲା । ଭାରତ ପାଇଁ ସ୍ୱତନ୍ତ୍ର ସମ୍ବିଧାନ ହେବା ପରେ ତା'ର ସ୍ୱତନ୍ତ୍ର ଜାତୀୟ ସଂଗୀତ ନିର୍ବାଚନ ବେଳେ ପଣ୍ଡିତ ନେହେରୁ ବିଶ୍ୱକବି ରବୀନ୍ଦ୍ର ନାଥଙ୍କ ରଚିତ 'ଜନ-ଗଣ-ମନ'କୁ ଜାତୀୟ ସଂଗୀତ କରିବା ପାଇଁ ମନେ ମନେ ଭାବି ଅନ୍ୟ ସହଯୋଗୀ କଂଗ୍ରେସ ବନ୍ଧୁଙ୍କ ସମ୍ମୁଖରେ ଉପସ୍ଥାପନ କଲେ । କେତେକ ଉଗ୍ରଜାତୀୟବାଦୀ ରବୀନ୍ଦ୍ରନାଥଙ୍କୁ ଏହି ସଂଗୀତ ପାଇଁ ସମାଲୋଚନା କଲେ ସୁଦ୍ଧା ଏହି ସଂଗୀତଟିକୁ ଭାରତର ଜାତୀୟ ସଂଗୀତ ରୂପେ ଗ୍ରହଣ କରାଯାଇଥିଲା । ଏପର୍ଯ୍ୟନ୍ତ ଏହି ସଂଗୀତଟି ସମ୍ବିଧାନ ସ୍ୱୀକୃତ ଜାତୀୟ ସଂଗୀତ ଭାବରେ ଭାରତ ଗ୍ରହଣ କରିଛି ।

ଭାରତୀୟ ସମ୍ବିଧାନ ସାଂସଦ ଓ ବିଧାୟକମାନଙ୍କ ପାଇଁ ନିର୍ଦ୍ଦିଷ୍ଟ ବୟସ ସୀମା ନିର୍ଦ୍ଧାରଣ କରିଛି । ରାଜ୍ୟପାଳ ଓ ରାଷ୍ଟ୍ରପତିଙ୍କ ସହିତ ପ୍ରଧାନମନ୍ତ୍ରୀଙ୍କର ବୟସସୀମା ମଧ୍ୟ ନିର୍ଦ୍ଧାରିତ ହୋଇଛି । ତେବେ ସମ୍ବିଧାନରେ ସେମାନଙ୍କ ଶିକ୍ଷାଗତ ଯୋଗ୍ୟତାକୁ

ଅଗ୍ରାଧିକାର ଦିଆଯାଇନଥିବା ବେଳେ ସେମାନଙ୍କ ଚରିତ୍ର ଓ ଆଚରଣ ବିଧିକୁ ଗୁରୁତ୍ୱ ଦିଆଯାଇଛି । ଏଥିପାଇଁ ଲୋକପ୍ରତିନିଧିମାନେ ସମ୍ବିଧାନକୁ ଆଖିରେ ରଖି ଅନ୍ତତଃ ସଦ୍‌ଚରିତ୍ରବାନ୍ ହେବାକୁ ଲକ୍ଷ୍ୟ ରଖିଛନ୍ତି । ଏହି ସମ୍ବିଧାନ ଭାରତବର୍ଷ ପରି ଏକ ବୃହତ ରାଷ୍ଟ୍ର ପାଇଁ ନିତାନ୍ତ ଉପାଦେୟ । ଭାରତୀୟ ସମ୍ବିଧାନ – All human beings are born free and equal in dignity and rights. They are endowed with reason and conscience and should act towards one another in a spirit of brotherhood."(Human Rights - Leah Levin) ଏହି ସତ୍ୟ ସବୁବେଳ ପାଇଁ ଉଦ୍‌ଘୋଷଣ କରିଥାଏ ।

ସଂପାଦକ, 'ସାଳନ୍ଦୀ ସମାଚାର'
ମଠସାହି, ଭଦ୍ରକ

# ଗଣତନ୍ତ୍ର ଦିବସ

**ପଣ୍ଡିତ ଚକ୍ରଧର ଦାଶ**

ଉଣେଇଶ ଶହ ପଚାଶ ମସିହା ଜାନୁଆରୀ ଛବିଶିରେ
ସାଧାରଣତନ୍ତ୍ର ଜନ୍ମ ନେଇଥିଲା ପ୍ରଥମେ ଆମ ଦେଶରେ ।
ଗର୍ବ, ଗଉରବ, ଯଶ, କୀର୍ତ୍ତିସ୍ତମ୍ଭ ଏ ଆମ ଭାରତଭୂମି ।
କେତେ ଯେ ସନ୍ଥ, ବୀର ସନ୍ତାନ ଏ ଦେଶେ ଥିଲେ ଜନ୍ମି ।
ଏ ଦେଶର ଧନରତ୍ନରେ ମୁଗ୍ଧ ଲୁବ୍ଧ ବିଦେଶୀଗଣ
ଲୁଟିନେବା ପାଇଁ ଧନ ଦଉଲତ କରିଥିଲେ ଆକ୍ରମଣ ।
ନିର୍ଯ୍ୟାତନାରେ ଅତ୍ୟାଚାରରେ ରକ୍ତେ ରଞ୍ଜିଲେ ଭାରତ ଭୂଇଁ
ଦେଶ ପାଇଁ କେତେ ପ୍ରାଣ ଦାନ କଲେ
ସେ କଥା କହିଲେ ସରିବ ନାହିଁ
ପରାଧୀନତାର ଶୃଙ୍ଖଳ ପିନ୍ଧି ତ୍ରାହି ତ୍ରାହି ଡାକେ ଭାରତମାତା
ବିଦେଶୀ କବଳେ ଏ ଦେଶ ଶାସନ
ନ ଥିଲା ହାତରେ ଆମ କ୍ଷମତା
ଜାଗିଲେ ଗାନ୍ଧୀ, ସୁଭାଷ, ନେହେରୁ, ପଟେଲ, ଗୋପବନ୍ଧୁ
ଆନ୍ଦୋଳନର ବହ୍ନି ଜଳିଲା ଉଚ୍ଛୁଳି ଉଠିଲା ସିନ୍ଧୁ
ସତ୍ୟ, ଅହିଂସାର ଅସ୍ତ୍ର ବଳରେ ସ୍ୱାଧୀନ ହୋଇଲା ଦେଶ
ସବୁଦିନ ପାଇଁ ବିଦେଶୀ ଶାସନ ଭାରତୁଁ ପାଇଲା ଶେଷ ।

ଆମରି ଶାସନ ଆମେ ଚଳାଉଛୁ ଗଢ଼ି ଆମ ଗଣତନ୍ତ୍ର
ଜାତି, ଧର୍ମ, ବର୍ଣ୍ଣ ସଭିଏଁ ସମାନ ଏହି ଆମ ମହାମନ୍ତ୍ର ।
ସାମ୍ୟ, ମୈତ୍ରୀ, ଶାନ୍ତି, ବାର୍ତ୍ତାକୁ ନେଇ
ତ୍ରିରଙ୍ଗା ଉଡ଼ଇ ଆକାଶ ତଳେ
ସାଧାରଣତନ୍ତ୍ର ଦିବସର ଏହି ପବିତ୍ର ଭାରତ ଭୂଇଁର କୋଳେ ।
ଜାତୀୟ ସଂଗୀତ ହୃଦେ ଭରିଦିଏ ସାହସ ଧୈର୍ଯ୍ୟ ଶକ୍ତି
ଜାତି ପାଇଁ ଆମେ ହୋଇଲେ ଏକାଠି
ତାହା ହେବ ଦେଶ ଭକ୍ତି ।
ଦେଶ ପ୍ରାଣ ସେହି ଆମ୍ବେଦକର ଭାରତ ଶାସନ ପାଇଁ
ଶାସନ ନିମନ୍ତେ ନୀତି ସେ ରଚିଲେ ଗଲା ସମ୍ବିଧାନ ହୋଇ ।
ସେହି ସମ୍ବିଧାନ ବିଶ୍ୱରେ ଆଜି ପାଇଛି ସବୁଠି ଯଶ
ଗଣତନ୍ତ୍ରର ଏ ଶ୍ରେଷ୍ଠ ଶାସନକୁ ମାନି ନେଇଛି ବିଶ୍ୱ ।

ଗୁରୁକୃପା ଭବନ
କଳିଙ୍ଗ ନଗର–୭
ଭୁବନେଶ୍ୱର–୩



# ଭାରତୀୟ ପରମ୍ପରାରେ ଗଣତନ୍ତ୍ରର ପଦଚିହ୍ନ

ଡକ୍ଟର ତ୍ରିନାଥ ପଟ୍ଟନାୟକ

ଭାରତୀୟ ସଂସ୍କୃତିରେ ଗଣତନ୍ତ୍ରର ଭୂମିକା କିଛି ନୂତନ ନୁହେଁ । ବହୁ ପ୍ରାଚୀନ କାଳରୁ ଗଣତନ୍ତ୍ର ଓ ସମବାୟ ଏହି ଦୁଇଟି ଶବ୍ଦ ଆମ ସମାଜରେ ପ୍ରଚଳିତ ହୋଇ ଆସୁଅଛି । ରାଜତନ୍ତ୍ର ଓ ଗଣତନ୍ତ୍ର ଦୁଇଟି ଶାସନ ଏହି ବିଶାଳ ରାଷ୍ଟ୍ରରେ ପରସ୍ପର ପରସ୍ପରର ପରିପୂରକ ଥିଲେ । ସେହିଭଳି ରାଜ୍ୟକୁ ଜନରାଜ୍ୟ ବୋଲି କୁହାଯାଉଥିଲା । ଏଇ ଭାରତବର୍ଷରେ ରାଜତନ୍ତ୍ରର ନିର୍ଦ୍ଧାରଣ ଓ ସଂଚାଳନ ପ୍ରଜାମାନଙ୍କ ଅନୁଶାସନ ଦ୍ୱାରା ସମ୍ପନ୍ନ ହେଉଥିଲା ।

ସମୟର ଗତିରେ ବିଦେଶୀମାନେ ଭାରତବର୍ଷରେ ଅନୁପ୍ରବେଶ କଲେ । ସେମାନଙ୍କର ପ୍ରଭାବରେ ଭାରତୀୟ ରାଜତନ୍ତ୍ର ତ ବିବଦମାନ ଅବସ୍ଥାରେ ରହିଲା କ୍ରମେ କ୍ରମେ ଭାରତୀୟ ପ୍ରଜାତନ୍ତ୍ର ତାର ବିଶେଷତ୍ୱ ହରାଇ ବସିଲା । ଭାରତୀୟ ପ୍ରଜା ବିଦେଶୀ ପ୍ରାୟୋଜିତ ରାଜତନ୍ତ୍ର ଦ୍ୱାରା ପରିଚାଳିତ ହେଲେ । ଯେଉଁ ଦ୍ୱୈତ ଶାସନ ଚାଲିଥିଲା ତାହା ଥିଲା ଅତ୍ୟନ୍ତ କଠୋର । ପ୍ରଜା ସ୍ୱାର୍ଥ ବିରୋଧୀ । ଫଳରେ ରାଜାମାନେ ହୋଇଗଲେ ଏକଛତ୍ରବାଦୀ ଓ ସ୍ୱେଚ୍ଛାଚାରୀ ।

ଆମେ ବୈଦିକ ଯୁଗର କଥା ବିଶ୍ଳେଷଣ କଲେ ଉପଲବ୍ଧି କରିପାରିବା, ସମ୍ରାଟଙ୍କର ରାଜ୍ୟାଭିଷେକ ସମୟରେ, ରାଜ ପୁରୋହିତ ଜନସମୁଦାୟଙ୍କୁ ସମ୍ବୋଧନ କରି ଘୋଷଣା କରୁଥିଲେ–

ଇମଂ ଦେବା ଅସପତ୍ରଂ..... ମହତେ ଜନରାଜ୍ୟାୟ
ବିଶ ଏବ ବୋଦ୍ଧମୀ ରାଜା ।।

ହେ ପ୍ରଜାଗଣ ! ଏହି ମହାନ ଜନରାଜ୍ୟ ନିମନ୍ତେ ପ୍ରଜାତନ୍ତ୍ରର ନିର୍ବାଚନ ପଦ୍ଧତିରେ ନିର୍ବାଚିତ ଏହି ବ୍ୟକ୍ତି ଆପଣମାନଙ୍କର ଶାସନକର୍ତ୍ତା (ରାଜା) ନିଯୁକ୍ତ ହେଲେ । ଯାହାଙ୍କୁ ଆପଣଙ୍କର ମଙ୍ଗଳ ନିମନ୍ତେ ଓ ସମସ୍ତ ପ୍ରକାର ପ୍ରତିକୂଳ ପରିସ୍ଥିତିର ସାମ୍ନା କରିବା ପାଇଁ ଦୈବୀଶକ୍ତି ପ୍ରଦାନ ହୋଇଛି ।

କୌଣସି ଶାସନ ପ୍ରଥମେ ନିରଙ୍କୁଶ ହୋଇ ନଥାଏ । ଜନତାର ବିଭିନ୍ନ ପ୍ରକାର ପ୍ରତିନିଧିମାନଙ୍କୁ ନେଇ ବିଧାନସଭାର ଗଠନ କରାଯାଏ । ଯେଉଁ ପରିଷଦକି ପ୍ରଶାସକ ନିର୍ବାଚନ ଠାରୁ ଶାସକୀୟ ନୀତି ନିର୍ଦ୍ଧାରଣ ନିମନ୍ତେ ମହତ୍ତ୍ୱପୂର୍ଣ୍ଣ ଭୂମିକା ନିଭାଇଥାଏ । ଶାସକର ଅନୁଶାସନ ପ୍ରଣାଳୀକୁ ପରିଷଦ ନିୟନ୍ତ୍ରଣ କରିଥାଏ । ରାଜତନ୍ତ୍ର ଓ ପ୍ରଜାତନ୍ତ୍ରର ସମନ୍ୱୟ ଭାବ ମଣିକାଞ୍ଚନ ସଦୃଶ ଅତ୍ୟନ୍ତ ଶୋଭନୀୟ ଓ ଗ୍ରହଣୀୟ ହୋଇଥାଏ ।

ରାମାୟଣରେ ଗଣତନ୍ତ୍ରର ଏକ ସୁନ୍ଦର ଉଦାହରଣ ଦେଖିବାକୁ ମିଳେ । ଶ୍ରୀରାମଙ୍କ ରାଜ୍ୟାଭିଷେକ ସମୟର କଥା । ତତ୍‌କାଳୀନ ଭାରତୀୟ ସମ୍ବିଧାନ ଅନୁସାରେ ରାଜାଙ୍କର ଜ୍ୟେଷ୍ଠ ପୁତ୍ର ହିଁ ରାଜସିଂହାସନରେ ଅଭିଷିକ୍ତ ହେବେ । ସେହି ଅନୁସାରେ ରାଜା ଦଶରଥ ଯୁବରାଜ ଶ୍ରୀରାମଙ୍କୁ ରାଜ୍ୟ ସିଂହାସନ ପ୍ରଦାନ କରିବାରେ କୌଣସି ବାଧା ନଥିଲା । ମହାରାଜା ଦଶରଥ ଚକ୍ରବର୍ତ୍ତୀ ସମ୍ରାଟ ହେଲେ ସୁଦ୍ଧା ରାଜ୍ୟ ପରିଷଦ (ସଂସଦ)କୁ ସମ୍ମାନ ଦେଉଥିଲେ । କାରଣ ସେ ରାଜ୍ୟ ପରିଷଦର ଅଧୀନ ଥିଲେ । ସ୍ୱତନ୍ତ୍ର ନୁହେଁ । ରାଜ୍ୟ ପରିଷଦ ସମ୍ମୁଖରେ ରାଜା ଦଶରଥ ଶ୍ରୀରାମଙ୍କ ରାଜ୍ୟାଭିଷେକ ପ୍ରସ୍ତାବକୁ ବିନୟର ସହିତ ଉତ୍‌ଥାପନ କଲେ ।

ରାଜ୍ୟ ପରିଷଦ ନିକଟରେ ଅସୀମ କ୍ଷମତା ଥିଲା । ପରିଷଦ ମଧ୍ୟ ବିନା ବିଚାର ବିମର୍ଶରେ ରାଜାଙ୍କ ପ୍ରସ୍ତାବକୁ ଯଥାବତ ସ୍ୱୀକାର କରିବା ନିମନ୍ତେ ବାଧ ନଥିଲା । ପ୍ରସ୍ତାବର ସଂଶୋଧନ କରିପାରେ କିମ୍ବା ଆଉ କୌଣସି ଲୋକହିତକର ପ୍ରସ୍ତାବ ଉପସ୍ଥାପିତ କରିପାରେ । ଉଚିତ ବିଚାର ବିମର୍ଶ ଓ ବିତର୍କ ପରେ ଉଚିତମନେ ନହେଲେ ପ୍ରସ୍ତାବକୁ ଅଗ୍ରାହ୍ୟ କରିପାରେ ଅଥବା ବାଚନିକ ସର୍ବାନୁମତିରେ ପ୍ରସ୍ତାବକୁ ସ୍ୱୀକାର କରିପାରେ ।

ରାଜା ଶକ୍ତିଶାଳୀ ହେଲେ ସୁଦ୍ଧା ଗଣ ପରିଷଦର ନିର୍ଣ୍ଣୟକୁ ମାନିବା ପାଇଁ ବାଧ୍ୟ । ଏହାକୁ ଏଡେଇ ଦେବାର ସାମର୍ଥ୍ୟ ରାଜା ପାଖରେ ନଥାଏ । ସେଥିପାଇଁ ଗଣପରିଷଦ ନିକଟରେ ସମ୍ରାଟ ଦଶରଥ ଯୋଡହସ୍ତ ହୋଇ ବିନତି କରିଥିଲେ – ମୋର ଜ୍ୟେଷ୍ଠପୁତ୍ର ରାମ ସମସ୍ତ ସୁଗୁଣର ଅଧିକାରୀ । ସେ ଉପଯୁକ୍ତ ଶାସକ ହେବେ । ସେହି ଗୁଣୀ ପୁତ୍ରକୁ ମୁଁ ରାଜ୍ୟ ଅର୍ପଣ କରିବାକୁ ଚାହେଁ । ହେ ପରିଷଦ ଗଣ, ମୁଁ ଯାହା କହିଲି ତାହା ଯଦି ସୁଚିନ୍ତିତ ଓ ଉପଯୁକ୍ତ ବୋଲି ଆପଣମାନେ ମନେ କରନ୍ତି ତେବେ ମୋ ପ୍ରସ୍ତାବକୁ ଅନୁମୋଦନ କରନ୍ତୁ । କିପରି କାର୍ଯ୍ୟ କରିବି, ସେହି ବିଷୟରେ ପରାମର୍ଶ ଦିଅନ୍ତୁ ।

ଯଦ୍ୟପ୍ୟେଷା ମମ ପ୍ରୀତିର୍ହିତମନ୍ୟଦ୍ ବିଚିନ୍ତ୍ୟତାମ୍
ଅନ୍ୟା ମଧ୍ୟସ୍ଥଚିନ୍ତା ତୁ ବିମର୍ଦାମ୍ୟଧିକୋଦୟା ।

ଯଦି ଏ କଥାରେ ମୋର ଆନନ୍ଦ ତଥାପି ଆଉ ଯଦି କିଛି ହିତକର ପ୍ରସ୍ତାବ ଥାଏ ତେବେ ତାହା ଚିନ୍ତା କରନ୍ତୁ । କାରଣ ଆପଣମାନେ ନିର୍ଣ୍ଣୟକ ଓ ମଧ୍ୟସ୍ଥ । ଆପଣମାନଙ୍କ ସୁଚିନ୍ତିତ ମତ ହିଁ ଆଲୋଚନା ଯୋଗ୍ୟ ଓ ଅଧିକ ଫଳପ୍ରଦ ହୋଇଥାଏ । ଗଣ ପରିଷଦ ଦଶରଥଙ୍କ ପ୍ରସ୍ତାବ ଉପରେ ବିଚାର ବିମର୍ଶ କଲେ । ଗହନ ମନ୍ତ୍ରଣା ତଥା ଗୁଣଦୋଷ ସମ୍ବନ୍ଧରେ ପୂର୍ବାପର ତର୍କ ଓ ବିଶ୍ଲେଷଣ ପରେ ରାଜାଙ୍କୁ ପରିଷଦ ତରଫରୁ ନିର୍ଦ୍ଦେଶ ପ୍ରଦାନ କରାଗଲା ଯେ ଯୁବରାଜ ପଦରେ ଶ୍ରୀରାମଙ୍କୁ ଯଥାଶୀଘ୍ର ଅଭିଷେକ କରାଯାଉ ।

ସ ରାମଂ ଯୁବରାଜାନଂ ଅଭିଷିଂଚସ୍ୱ ପାର୍ଥିବମ୍ ।
(ବା.ରା. ୨/୨/୨୧)

ଗଣପରିଷଦର ଏହି ସର୍ବସମ୍ମତି ପାଇ ଶ୍ରୀରାମଙ୍କ ରାଜ୍ୟାଭିଷେକ କାର୍ଯ୍ୟକ୍ରମ କରାଯାଇଥିଲା ।

ଏଥିରୁ ଜଣାଯାଏ ପୂର୍ବେ ଗଣତନ୍ତ୍ର କେତେ ପ୍ରଭାବଶାଳୀ ଥିଲା । ରାଜା ଓ ପ୍ରଜା ପରସ୍ପର ମଧ୍ୟରେ ପାରସ୍ପରିକ ସଦ୍‌ଭାବ ତଥା ସମନ୍ୱୟ କର୍ତ୍ତବ୍ୟ ପରାୟଣତାର ଭାବନା ଥିଲା । ଦୁହେଁ ଦୁହିଁଙ୍କର ପରିପୂରକ ରୂପେ ଦେଶର ପ୍ରଗତି କରୁଥିଲେ । ଏଥିରେ ଶାସକୀୟ ନୀତିର ସାର୍ଥକତା ଥିଲା । ରାଜତନ୍ତ୍ର ହେଉ କିମ୍ବା ଗଣତନ୍ତ୍ର ହେଉ ଏହାର ସଫଳତା ନିର୍ଭର କରୁଛି ସର୍ବସାଧାରଣଙ୍କର ସୁଖ ଓ ସନ୍ତୋଷ ତଥା ନିର୍ଭୟତା ଉପରେ । କେବଳ ମତଦାନରେ ମତ ସଂଗ୍ରହ କରିନେବା କିମ୍ବା ପ୍ରଜାମାନଙ୍କଠାରୁ କର ନେଇଗଲେ ହେବ ନାହିଁ, ନାଗରିକକୁ ନ୍ୟାୟ ପ୍ରଦାନ କରିବା ଶାସନତନ୍ତ୍ରର ପ୍ରଧାନ କର୍ତ୍ତବ୍ୟ, ଯାହାକି ପ୍ରାଚୀନ ଭାରତୀୟ ସଂସ୍କୃତିରେ ଥିଲା ।

ପ୍ରାଚୀନ ଗଣତନ୍ତ୍ରରେ ରାଷ୍ଟ୍ରପତିର କର୍ତ୍ତବ୍ୟ ଓ ନାଗରିକମାନଙ୍କ ସୁରକ୍ଷା ତଥା କର ଆଦାୟ ପ୍ରଣାଳୀ ବିଷୟରେ ସାମ୍ବିଧାନିକ ନୀତି ଅଛି । ରାଷ୍ଟ୍ର ପରିଚାଳନା ନିମନ୍ତେ ଅର୍ଥ ସଂଗ୍ରହର ଆବଶ୍ୟକତା ସବୁ ଯୁଗରେ ଥିଲା ଏବେ ବି ଅଛି । ନାଗରିକଙ୍କଠାରୁ ରାଜସ୍ୱ ସଂଗ୍ରହ ଅବଶ୍ୟ ଶାସକ କରିବେ । କିନ୍ତୁ ପ୍ରଜା କର ଭାରରେ ପୀଡିତ ନହେଉ ସେଥିପ୍ରତି ଧ୍ୟାନ ରଖିବା ଉଚିତ । ଏ ବିଷୟରେ ଶାସ୍ତ୍ରମାନଙ୍କରେ ସୁନ୍ଦର ପରାମର୍ଶ ଅଛି । ଶାସକ 'ମାଳାକାର' ବୃତ୍ତି ଗ୍ରହଣ କରିବେ । ଅର୍ଥାତ୍ ମାଳୀ ଯେପରି ବୃକ୍ଷମାନଙ୍କୁ ପୀଡା ପ୍ରଦାନ ନକରି କିମ୍ବା ନଷ୍ଟ ନକରି କେବଳ ପୁଷ୍ପ ଚୟନ କରିଥାଏ । ରାଷ୍ଟ୍ରର ଶାସକ ସେହିଭଳି ନାଗରିକମାନଙ୍କୁ ପୀଡା ନଦେଇ ରାଜସ୍ୱ ଆଦାୟ କରିବା ଉଚିତ ।

ସୂର୍ଯ୍ୟ ଯେପରି ଜଳକୁ ଆକର୍ଷଣ କରି ନେଇଥାଏ ପୁଣି ବାରିଧାର ରୂପେ ବର୍ଷା କରାଇଦିଏ, ସେହିଭଳି ରାଷ୍ଟ୍ରମୁଖ୍ୟ ରାଜସ୍ୱ ଗ୍ରହଣ କରି ପ୍ରଜାଙ୍କ ହିତାର୍ଥରେ ବ୍ୟୟ କରିବା ଉଚିତ । ଏହା ହେଉଛି ସୁସ୍ଥ ଗଣତନ୍ତ୍ରର ମହାନମନ୍ତ୍ର । ଫଳରେ ପ୍ରଜାଖୁସି ରହିଲେ ଗଣତନ୍ତ୍ର ବହୁ ସମୟ ଧରି ତିଷ୍ଠି ରୁହେ ।

ଗଣତନ୍ତ୍ର ଶାସନରେ ବିରୋଧୀମାନଙ୍କର ମଧ୍ୟ ସ୍ୱତନ୍ତ୍ର ସମ୍ମାନ ଅଛି । ସେମାନେ ମଧ୍ୟ ରାଷ୍ଟ୍ର ଶାସନର ମୁଖ୍ୟ ଅଂଶ ।

ବେଦରେ ଉଲ୍ଲେଖ ଅଛି କୌଣସି ଦଳ କିମ୍ବା ବ୍ୟକ୍ତି ହାତରେ ରାଷ୍ଟ୍ର ଶାସନର ଶକ୍ତି କେନ୍ଦ୍ରୀକରଣ ହୋଇ ରହିବା ଉଚିତ ନୁହେଁ । ଚିନ୍ତାଶୀଳ ସଭ୍ୟମାନେ ଉଚିତ ଅନୁଚିତ ବିଚାର କରି କୁଶାସନକୁ ବିରୁଦ୍ଧ କରିବା ଉଚିତ । ସେଭଳି ଦକ୍ଷ ପାରିଷଦ ଗଣପରିଷଦ ରହିବା ଉଚିତ ।

'ଅଥର୍ବ ବେଦ'ରେ ଉଲ୍ଲେଖ ଅଛି –

ସଭ୍ୟଃ ସଭାଂ ମେ ପାହି ଯେ ଚ ସଭ୍ୟାଃ ସଭାସଦଃ ।
ତ୍ୱମିନ୍ଦ୍ରଃ ପୁରୁହୁତ ବିଶ୍ୱାମାୟୁର୍ବ୍ୟଶ୍ୱବଦ୍ ॥
(ଅ. ୧୯/୫୫/୫-୬)

ରାଜସଭାର ସୁରକ୍ଷା ହେବା ଉଚିତ । ସଭାର ସଭାସଦ୍ ସୁସଂସ୍କୃତ ହେବା ସହିତ ସେମାନେ ସତ୍ୟ ଓ ଧର୍ମ କଥା କହିବା

ଉଚିତ । କୌଣସି ସଭ୍ୟ ନିଜ ସ୍ୱାର୍ଥ ରକ୍ଷା ନିମନ୍ତେ ଶାସକ ମୁଖ୍ୟ ବା ଶାସକ ଦଳର ସମସ୍ତ ଅନୁଚିତ କର୍ମକୁ ଅନୁମୋଦନ କରିବା ଉଚିତ୍ ନୁହେଁ । ଶାସକ ହାତରେ ସମସ୍ତ କ୍ଷମତା କେନ୍ଦ୍ରୀକରଣ ହୋଇଗଲେ ପ୍ରଜା ଶୋଷିତ ଉତ୍ପୀଡିତ ହୋଇଯାଆନ୍ତି । ଏଣୁ ଜନସାଧାରଣଙ୍କ ହିତ ସଂସାଧନ ନିମନ୍ତେ ବିରୋଧ ଆବଶ୍ୟକ ପଡିଲେ ସଭ୍ୟମାନେ ଗଣ ପରିଷଦରେ ଶାସନ ବିରୁଦ୍ଧରେ ଦୃଢଭାବେ ବିରୋଧ କରିବା ଉଚିତ ।

ବେଦରେ ଉଲ୍ଲେଖ ଅଛି ପ୍ରଜା ନିର୍ଭୟ ହୁଅନ୍ତୁ । ପ୍ରଜା ନିର୍ଭୟ ଓ ନିର୍ଭୀକ ହେଲେ ଦେଶରେ ସୁଶାସନ ତିଷ୍ଠି ରହିବ । ତାହା ହିଁ ରାମ ରାଜ୍ୟ । ରାମାୟଣରୁ ଗୋଟିଏ ଉଦାହରଣ ନେବା– ବନବାସରୁ ଫେରି ଶ୍ରୀରାମ ଅଯୋଧ୍ୟାର ଶାସନ ଭାର ଗ୍ରହଣ କଲେ । ଶ୍ରୀରାମ ଜାଣନ୍ତି ରାଜ୍ୟର ନାଗରିକ ନିର୍ଭୟ ହେଲେ ଶାସନରେ ପ୍ରକୃତ ସଫଳତା ନିର୍ଭର କରିବ । ସେଥିପାଇଁ ସେ ରାଜଧାନୀରେ ବିଶାଳ ଜନସମାବେଶର ଆୟୋଜନ କରାଇଲେ । ସେହି ସଭାରେ ରାଷ୍ଟ୍ରଶାସନର ମୁଖ୍ୟ ଶ୍ରୀରାମ ଉଦାରତାର ସହିତ ଘୋଷଣା କଲେ– ହେ ନାଗରିକ ଗଣ ! ମୋ କଥା ଶୁଣନ୍ତୁ । ମୁଁ ହୃଦୟରେ କୌଣସି ପକ୍ଷପାତିତା ରଖି ଏକଥା କହୁ ନାହିଁ କି କୌଣସି ଅନୀତିକର କଥା କହୁ ନାହିଁ । ନିଜର ପ୍ରଭୁତ୍ୱ ପ୍ରତିପାଦନ ପାଇଁ ଏହା କହୁନାହିଁ । ତେଣୁ ଧ୍ୟାନ ପୂର୍ବକ ମୋ କଥା ଶୁଣନ୍ତୁ, ଯଦି ମୋ କଥା ଆପଣମାନଙ୍କୁ ଭଲ ଲାଗିବ ତେବେ ସେହି ଅନୁସାରେ ଚଳନ୍ତୁ । ହେ ଭାଇମାନେ ! ମୁଁ ଯଦି କୌଣସି ନୀତିବିରୁଦ୍ଧ ଅନୁଚିତ ବ୍ୟବହାର କରେ ତେବେ ବିନା ଭୟରେ ମୋତେ ସମାଲୋଚନା କରନ୍ତୁ ଓ ମୋତେ ଅନୁଚିତ ମାର୍ଗରୁ ବାରଣ କରନ୍ତୁ । ମୁଁ ଖୁସି ହେବି । ତାହା ମୋ ପାଇଁ ଉପକାର ହେବ । ଆପଣମାନେ ନିର୍ଭୟ ହୁଅନ୍ତୁ ।

ଭାରତୀୟ ପ୍ରାଚୀନ ପରମ୍ପରାରେ ଜଣେ ଲୋକ ପ୍ରତିନିଧି କିପରି ନିଜର ଭୂମିକା ନିଭାଇବେ ଓ ବିଧାନ ସଭାରେ ଉଚିତ୍ ପ୍ରତିନିଧିତ୍ୱ କରିବେ ସେ ବିଷୟରେ ଶାସ୍ତ୍ରମାନଙ୍କରେ ଉଲ୍ଲେଖ ଅଛି– ଶାସନତନ୍ତ୍ରର ସଭ୍ୟ ସର୍ବଦା ସାବଧାନ ରହିବେ । ରାଜ୍ୟର ସମସ୍ତ ସମସ୍ୟା ଓ ପରିସ୍ଥିତି ପ୍ରତି ଜ୍ଞାନ ଥିବା ଆବଶ୍ୟକ । ଇନ୍ଦ୍ରିୟମାନଙ୍କୁ ନିଜର ବଶରେ ରଖି ମାନବ ଧର୍ମ ପରାୟଣ ହେବେ । ତେବେ ଯାଇ ଶାସନ ଓ ଲୋକ ପ୍ରତିନିଧି ଅଧିକ ଲୋକପ୍ରିୟ ହୋଇ ଦୀର୍ଘଦିନ ଶାସନ କରିବେ ।

ମହାକବି ଭବଭୂତି ନିଜ କାବ୍ୟ ଉତ୍ତର ରାମ ଚରିତରେ ପ୍ରାଚୀନ ଭାରତରେ ଲୋକତନ୍ତ୍ର ସୁରକ୍ଷା ନିମନ୍ତେ ଶାସକ କିପରି ସ୍ୱାର୍ଥତ୍ୟାଗୀ ଥିଲେ ସେ ବିଷୟରେ ଶ୍ରୀରାମଙ୍କ ମୁହଁରେ କୁହାଇଛନ୍ତି–

ସ୍ନେହଂ ଦୟାଂ ଚ ସୌଖ୍ୟଂ ଚ ଯଦି ବା ଜାନକୀମପି
ଆରାଧନାୟ ଲୋକସ୍ୟ ମୁଞ୍ଚତୋ ନାସ୍ତି ମେ ବ୍ୟଥା ॥

ଲୋକ ଆରାଧନା ନିମନ୍ତେ ଯଦି ମୋତେ ସ୍ନେହ, ଦୟା, ସୁଖ ଏପରିକି ପ୍ରାଣପ୍ରିୟା ସୀତାଙ୍କୁ ପରିତ୍ୟାଗ କରିବାକୁ ପଡିବ ତେବେ ସେଥିପାଇଁ କିଞ୍ଚିତ୍ ମାତ୍ର ଦୁଃଖ କରିବି ନାହିଁ ।

ସମ୍ପାଦକ, 'ପୁରାଣ ପତ୍ରିକା'
ଆଲୋକ ନଗର, ନିଆଳୀ, ଜି–କଟକ



# ଧାରାମାନଙ୍କ ସମାହାର ଭାରତ ସମ୍ବିଧାନ

**ସୌଦାମିନୀ ବେହେରା**

ନଦୀ, ହ୍ରଦ, କାନନ ଓ ସାଗର ଘେରା ଏହି ସୌନ୍ଦର୍ଯ୍ୟମୟ ପୃଥିବୀ ହେଉଛି ଭଗବାନଙ୍କର କମନୀୟ ସୃଷ୍ଟି । ଭାରତ ହେଉଛି ଏହାର ଏକ ଅଂଶବିଶେଷ । ଏହାର ଅତୀତ ଓ ବର୍ତ୍ତମାନ ଅନେକ ଉତ୍‌ଥାନ ଓ ପତନରେ ଗତି କରି ଆସୁଛି । ସଭ୍ୟତାର ଆଧୁନିକତାରେ ବୈଷୟିକ ଜ୍ଞାନକୌଶଳର ଉନ୍ନତି ତଥା ଜନସାଧାରଣଙ୍କର ଉଚ୍ଚ ଚିନ୍ତାଧାରାକୁ ନେଇ ଭବିଷ୍ୟତର କଳ୍ପନା କରାଯାଇପାରିବ ।

୬୭ ବର୍ଷ ସ୍ୱାଧୀନତାର ଆମେ ନାଗରିକ । ୧୯୫୦ ମସିହା ଜାନୁଆରୀ ୨୬ ତାରିଖ ଭାରତ ରାଜନୀତି ଇତିହାସରେ ଏକ ସ୍ମରଣୀୟ ଦିବସ । ଏହି ଦିନ ଭାରତର ଶାସନ ଖସଡ଼ା ବା ସମ୍ବିଧାନ ସମଗ୍ର ଦେଶରେ କାର୍ଯ୍ୟକାରୀ ହୋଇଥିଲା । ମହାନାୟକ ଜାତିର ପିତା ମୋହନଦାସ କରମଚାନ୍ଦ ଗାନ୍ଧୀ ଆମ ଭାରତବାସୀଙ୍କୁ ସ୍ୱାଧୀନତା ରୂପକ ଅମୂଲ୍ୟରତ୍ନ ଭେଟି ଦେଇଥିବା ବେଳେ ଅପର ପକ୍ଷରେ ବାବା ଭୀମରାଓ ଆମ୍ବେଦକରଙ୍କ ତୀକ୍ଷ୍ଣତା ତଥା ବିଚକ୍ଷଣ ବୁଦ୍ଧି ଦ୍ୱାରା ଭାରତ ସମ୍ବିଧାନ ନିର୍ମାତାର ମୁକୁଟ ପିନ୍ଧିବାର ଗୌରବ ଅର୍ଜନ କରିଥିଲେ । ତେଣୁ ତାଙ୍କୁ ଭାରତ ସମ୍ବିଧାନର ଜନକ ବୋଲି ବିବେଚନା କରାଯାଏ । ସମସ୍ତ ଭାରତୀୟମାନଙ୍କ ହୃଦୟରେ ଡକ୍ଟର ଆମ୍ବେଦକର ଏକ ସ୍ୱତନ୍ତ୍ର ଆସନରେ ସର୍ବଦା ବିରାଜମାନ ହୋଇ ରହିଅଛନ୍ତି ।

ଭାରତ ସମ୍ବିଧାନ ଦୀର୍ଘତମ ସମ୍ବିଧାନ ବୋଲି ଇଂଲଣ୍ଡର ବିଶିଷ୍ଟ ସମ୍ବିଧାନବିତ୍ ତଥା ରାଜନୀତିଜ୍ଞ ସାର୍ ଆଇଭର୍ ଜେନିସ୍ ମତ ପ୍ରକାଶ କରିଛନ୍ତି । ଇଂଲଣ୍ଡ ସମ୍ବିଧାନ ପୃଥିବୀରେ ଥିବା ସମସ୍ତ ସମ୍ବିଧାନମାନଙ୍କର ଜନ୍ମଦାତ୍ରୀ ବୋଲି କୁହାଯାଏ । ଭାରତର ସମ୍ବିଧାନ ଅନ୍ୟ ଦେଶର ସମ୍ବିଧାନ ତୁଳନାରେ ଅନେକ ବିଳମ୍ବରେ ନିର୍ମାଣ ହୋଇଥିଲା । ବିଭିନ୍ନ ଦେଶର ସମ୍ବିଧାନକୁ ପରୀକ୍ଷଣ ତଥା ତନ୍ନତନ୍ନ କରି ପର୍ଯ୍ୟାଲୋଚନା କଲାପରେ କେତେକ ଗୁରୁତ୍ୱପୂର୍ଣ୍ଣ ବିଷୟକୁ ଆମ ସମ୍ବିଧାନରେ ସ୍ଥାନିତ କରାଗଲା । ତେଣୁ ଆମ ସମ୍ବିଧାନର ବିଶାରଦଗଣ ଏହାକୁ ଏକ ଉତ୍କୃଷ୍ଟ ସମ୍ବିଧାନରେ ପରିଣତ କରାଇ ପାରିଛନ୍ତି । ସେମାନଙ୍କର ଅକ୍ଳାନ୍ତ ପରିଶ୍ରମ, ସୁଚିନ୍ତିତ ସୁନ୍ଦର ମତଗୁଡ଼ିକୁ ସୁସଜ୍ଜିତ କରି ଆମ ସମ୍ବିଧାନକୁ ପୃଥିବୀର ସର୍ବଶ୍ରେଷ୍ଠ ସମ୍ବିଧାନର ମୁକୁଟ ପିନ୍ଧେଇବାରେ ସେମାନେ ସଫଳ ହୋଇପାରିଛନ୍ତି । ବାସ୍ତବିକ୍ ସେମାନଙ୍କର ଅବଦାନ ଅତୁଳନୀୟ ।

ଆମ ସମ୍ବିଧାନ ଜନସାଧାରଣଙ୍କ ତରଫରୁ ନିଜକୁ ନିଜେ ସମ୍ବୋଧନ କରି ପ୍ରସ୍ତାବନାରେ ଲେଖାଯାଇଛି ଯେ, 'ଭାରତର ଜନସାଧାରଣ' ଏହି ସମ୍ବିଧାନ ମାଧ୍ୟମରେ ଏକ ସ୍ୱାଧୀନ, ସାର୍ବଭୌମ, ଗଣତାନ୍ତ୍ରିକ, ଧର୍ମନିରପେକ୍ଷ, ସମାଜବାଦ, ସାଧାରଣତନ୍ତ୍ର ରାଷ୍ଟ୍ର ପ୍ରତିଷ୍ଠା କରିବା ପାଇଁ ସଂକଳ୍ପ ନେଲୁ ବୋଲି ଘୋଷଣା କରିଛି ।

ଭାରତ ସମ୍ବିଧାନ ଅନୁସାରେ ରାଷ୍ଟ୍ରର ମୁଖ୍ୟ ୫ ବର୍ଷ ପାଇଁ ଜନସାଧାରଣଙ୍କ ଦ୍ୱାରା ପ୍ରତ୍ୟକ୍ଷ ଭାବରେ ନିର୍ବାଚିତ ନହୋଇ ଲୋକ ପ୍ରତିନିଧିମାନଙ୍କ ଦ୍ୱାରା ନିର୍ବାଚିତ ହେବାର ବ୍ୟବସ୍ଥା ରହିଛି । ଇଂଲଣ୍ଡର ସଂସଦୀୟ ଶାସନ ବ୍ୟବସ୍ଥା, ଯୁକ୍ତରାଷ୍ଟ୍ର ଆମେରିକାର ସଂଘୀୟ ବ୍ୟବସ୍ଥା ଓ ମୌଳିକ ଅଧିକାର, ଆୟରଲ୍ୟାଣ୍ଡର ରାଷ୍ଟ୍ରୀୟ ନିର୍ଦ୍ଦେଶମୂଳକ ନୀତି ସମୂହ, ଜର୍ମାନୀର ଜରୁରିକାଳୀନ ବ୍ୟବସ୍ଥା, ସୋଭିଏତ୍ ଋଷର ମୌଳିକ କର୍ତ୍ତବ୍ୟ ଆଦି ବ୍ୟବସ୍ଥା ଭାରତ ସମ୍ବିଧାନ ଅନୁସରଣ କରିଛି ।

ବର୍ତ୍ତମାନ ଆମ ସମ୍ବିଧାନରେ ୩୩୯ଟି ଧାରା ଓ ୧୨ଟି ଅନୁସୂଚୀ ରହିଛି । ଭାରତ ସମ୍ବିଧାନରେ ଏତେଗୁଡ଼ିଏ ଧାରା ସମାହାର ଦେଖିବାକୁ ମିଳେ, ଯାହା ଅନ୍ୟ କେଉଁ ଦେଶରେ ଆଜି

ପର୍ଯ୍ୟନ୍ତ ଦୃଷ୍ଟିଗୋଚର ହୁଏନାହିଁ । ସମ୍ବିଧାନରେ ଏତେଗୁଡ଼ିଏ ଧାରା ରହିଥିଲେ ମଧ୍ୟ ଭାରତୀୟମାନେ ଏହାର ପୁଙ୍ଖାନୁପୁଙ୍ଖ ଆଲୋଚନା କରିବାକୁ ଆଗ୍ରହ ପ୍ରକାଶ କରନ୍ତି ନାହିଁ । କିନ୍ତୁ ପ୍ରକୃତପକ୍ଷେ ଆମେ ଏହି ଧାରା ସମ୍ବନ୍ଧରେ ଟିକିନିଖି ଜାଣିଲେ ଜାତୀୟ ରାଜନୀତି ଓ ଅନ୍ତର୍ଜାତୀୟ ରାଜନୀତି ବିଷୟରେ ଜାଣିବାକୁ ଆଗ୍ରହ ବଢ଼ିଥାଏ ଓ ଆମେ ଏକ ନିର୍ଭୀକ ଓ ବୁଦ୍ଧିମାନ ନାଗରିକ ଭାବରେ ନିଜକୁ ସାବ୍ୟସ୍ତ କରିବାରେ ସମର୍ଥ ହୋଇପାରିବା । ଭାରତ ଭଳି ସର୍ବବୃହତ ଗଣତାନ୍ତ୍ରିକ ରାଷ୍ଟ୍ରରେ ଜନସାଧାରଣ ସର୍ବେସର୍ବା ହୋଇଥିବାରୁ ଭାରତ ସମ୍ବିଧାନ ଓ ତା'ର ଧାରା ବିଷୟରେ ସମସ୍ତେ ଜାଣିବା ନିହାତି ଆବଶ୍ୟକ । ସମ୍ବିଧାନର ଧାରାଗୁଡ଼ିକର ଆଲୋଚନା ଓ ତଥ୍ୟ ନିମ୍ନରେ ପ୍ରଦାନ କରାଗଲା ।

ସମ୍ବିଧାନର ୧ ଧାରାରେ ଭାରତ ରାଜ୍ୟମାଙ୍କର ଏକ ସମ୍ମେଳନ ଅଟେ । ସମ୍ବିଧାନର ୨,୩,୪ ଧାରାରେ ନୂତନ ରାଜ୍ୟ ସୃଷ୍ଟି, ରାଜ୍ୟର ନାମ ପରିବର୍ତ୍ତନ ଓ ସୀମା ନିର୍ଦ୍ଧାରଣ ହୋଇଥାଏ ।

ଜଣେ ଭାରତୀୟ ୧୮ ବର୍ଷରେ ପଦାର୍ପଣ କଲେ ସେ ଭାରତର ନାଗରିକତ୍ୱ ପାଇବାର ଗୌରବ ଅର୍ଜନ କରେ । ସ୍ୱାଧୀନତା ପ୍ରାପ୍ତିପରେ ସମଗ୍ର ଭାରତ ପ୍ରଥମ ଥର ପାଇଁ ଏକ ସ୍ୱାଧୀନ ରାଷ୍ଟ୍ର ରୂପେ ଗଠିତ ହେଲାପରେ ଗୋଟିଏ ସମ୍ବିଧାନ, ଗୋଟିଏ ଜାତୀୟ ସଂଗୀତ ଓ ଗୋଟିଏ ଜାତୀୟ ପତାକା ଓ ଗୋଟିଏ ଜାତୀୟ ପ୍ରତୀକ ସହିତ ଏକ ନାଗରିକତ୍ୱ ବ୍ୟବସ୍ଥା ପ୍ରଚଳିତ କରାଯାଇଥିଲା । ଧାରା ୫,୬,୭,୮ରେ ଭାରତ ନାଗରିକତା ସମ୍ବନ୍ଧରେ ବିଶଦ ଭାବରେ ଆଲୋଚିତ ହୋଇଛି । ଭାରତୀୟ ସମ୍ବିଧାନ ଭାରତର ନାଗରିକମାନଙ୍କୁ ୬ଟି ମୌଳିକ ଅଧିକାର ପ୍ରଦାନ କରିଅଛି । କିନ୍ତୁ ସମ୍ବିଧାନ ପ୍ରଣୟନଠାରୁ ୧୯୭୯ ମସିହା ଏପ୍ରିଲ୍ ମାସ ପର୍ଯ୍ୟନ୍ତ ଏହା ସାତ ପ୍ରକାର ଥିଲା । ୪୪ତମ ସମ୍ବିଧାନ ସଂଶୋଧନ ବ୍ୟବସ୍ଥା ଅନୁସାରେ ସମ୍ପତ୍ତିଗତ ଅଧିକାରକୁ ମୌଳିକ ଅଧିକାରରୁ ବାଦ୍ ଦିଆଯାଇଛି, ତାହା ବର୍ତ୍ତମାନ ଆଇନଗତ ଅଧିକାର ରୂପେ ମାନ୍ୟତା ଲାଭ କରିଛି । ୬ଟି ମୌଳିକ ଅଧିକାର ହେଲା ସମାନତା ଅଧିକାର, ସ୍ୱାଧୀନତା ଅଧିକାର, ଶୋଷଣ ବିରୋଧୀ ଅଧିକାର, ଧର୍ମଗତ ସ୍ୱାଧୀନତା ଅଧିକାର, ସାଂସ୍କୃତିକ ଓ ଶିକ୍ଷାଗତ ଅଧିକାର ସମ୍ବିଧାନିକ ପ୍ରତିକାର ଅଧିକାର । ଏଗୁଡ଼ିକ ୧୨ରୁ ୩୫ ଧାରା ମଧ୍ୟରେ ଉଲ୍ଲେଖ କରାଯାଇଛି ।

ସମ୍ବିଧାନର ଚତୁର୍ଥ ଭାଗରେ ୩୬ରୁ ୫୧ ଧାରା ମଧ୍ୟରେ ବର୍ଣ୍ଣିତ ରାଷ୍ଟ୍ରୀୟ ନିର୍ଦ୍ଦେଶମୂଳକ ନୀତି ହେଉଛି ଏକ ପବିତ୍ର ଚିନ୍ତାଧାରା । ଏହା ମାନବିକ ଓ ସାମାଜିକ ମୂଲ୍ୟବୋଧ ଓ ଜନମଙ୍ଗଳ ଚିନ୍ତାଧାରାର ଏକ ବାସ୍ତବ ପରିପ୍ରକାଶ । ଏହା ୩ ପ୍ରକାରର ଯଥା– ସମାଜବାଦୀ ନୀତି, ଗାନ୍ଧିବାଦୀ ନୀତି ଓ ଉଦାରବାଦୀ ନୀତି ।

ଅଧିକାର ଓ କର୍ତ୍ତବ୍ୟ ଗୋଟିଏ ମୁଦ୍ରାର ଦୁଇ ପାର୍ଶ୍ୱଭଳି । ତେଣୁ ନାଗରିକ ଅଧିକାର ଉପଯୋଗ କରିବା ସହିତ ରାଷ୍ଟ୍ରପ୍ରତି ତା'ର କର୍ତ୍ତବ୍ୟବୋଧ ରହିବା ସ୍ୱାଭାବିକ । ୧୯୭୯ ମସିହାରେ ୪୨ତମ ସମ୍ବିଧାନ ସଂଶୋଧନ ବ୍ୟବସ୍ଥା ଅନୁସାରେ ମୌଳିକ କର୍ତ୍ତବ୍ୟକୁ ସମ୍ବିଧାନର ଧାରା ୫୧(କ)ରେ ଯୋଡ଼ି ଦିଆଗଲା । ସେସମୟରେ ୧୦ଟି ମୌଳିକ କର୍ତ୍ତବ୍ୟ ସମ୍ବିଧାନ ସ୍ୱୀକୃତି ପାଇଲା, କିନ୍ତୁ ୨୦୦୨ ମସିହାରେ ସମ୍ବିଧାନର ୮୬ତମ ସଂଶୋଧନ ବ୍ୟବସ୍ଥା ଅନୁଯାୟୀ ଏହାକୁ ୧୧କୁ ବୃଦ୍ଧି କରାଯାଇଛି ।

ମହାମାନ୍ୟ ରାଷ୍ଟ୍ରପତିଙ୍କୁ ଭାରତର ପ୍ରଥମ ନାଗରିକ ବୋଲି ବର୍ଣ୍ଣନା କରାଯାଏ । ସମ୍ବିଧାନର ୫୨ ଧାରାରେ ଭାରତରେ ଜଣେ ରାଷ୍ଟ୍ରପତି ରହିବେ । ଧାରା ୫୩ରେ ତାଙ୍କର କାର୍ଯ୍ୟପାଳକ କ୍ଷମତା ଉଲ୍ଲେଖ ଅଛି । ଧାରା ୫୪ରେ ନିର୍ବାଚକ ମଣ୍ଡଳୀ ଗଠନ ରହିଅଛି । ୫୫ଧାରାରେ ତାଙ୍କର ନିର୍ବାଚନ ପଦ୍ଧତି ଓ ୫୬ ଧାରାରେ ରାଷ୍ଟ୍ରପତିଙ୍କ କାର୍ଯ୍ୟକଳାପ ରହିଛି । ୫୮ ଧାରାରେ ତାଙ୍କ ପଦ ପାଇଁ ଯୋଗ୍ୟତା ଓ ୬୦ ଧାରାରେ ତାଙ୍କର ଶପଥପାଠ ବିଷୟ ସମ୍ବିଧାନରେ ସ୍ଥାନିତ ହୋଇଛି । ଧାରା ୬୧ରେ ରାଷ୍ଟ୍ରପତିଙ୍କୁ ବହିଷ୍କାର ପାଇଁ ମହାଭିଯୋଗ ପ୍ରସ୍ତାବର ବିଶଦ ବିବରଣୀ ରହିଛି ।

୬୧ରୁ ୭୧(କ) ଧାରାରେ ମହାମାନ୍ୟ ଉପରାଷ୍ଟ୍ରପତିଙ୍କ ବିଷୟରେ ଉଲ୍ଲେଖ କରାଯାଇଛି । ଧାରା ୬୩ରେ ଉପରାଷ୍ଟ୍ରପତିଙ୍କ ପଦବୀ ରହିବ । ୬୪ ଧାରାରେ ସେ ରାଜ୍ୟସଭାର ଅଧ୍ୟକ୍ଷ ପଦ ମଣ୍ଡନ କରିଥାନ୍ତି । ଧାରା ୫୬ରେ ରାଷ୍ଟ୍ରପତି ପଦରେ ଶୂନ୍ୟସ୍ଥାନ ସୃଷ୍ଟି ହେବା ପରିସ୍ଥିତିରେ ଉପରାଷ୍ଟ୍ରପତିଙ୍କ ଦ୍ୱାରା କାର୍ଯ୍ୟ ଓ ପଦବୀ ମଣ୍ଡନ ବ୍ୟବସ୍ଥା ରହିଛି । ଧାରା ୬୬ରେ ତାଙ୍କର ନିର୍ବାଚନ ପଦ୍ଧତି ରହିଛି । ଧାରା ୬୭ରେ ତାଙ୍କର କାର୍ଯ୍ୟକାଳ ବିଷୟରେ ଲେଖାଯାଇଛି । ଧାରା ୭୧(କ)ରେ ଉଭୟ ରାଷ୍ଟ୍ରପତି ଓ ଉପରାଷ୍ଟ୍ରପତିଙ୍କ ନିର୍ବାଚନ ମୋକଦ୍ଦମାର ଗୁରୁତ୍ୱପୂର୍ଣ୍ଣ ବିଷୟଟି ଆମ ସମ୍ବିଧାନରେ ଲେଖାଯାଇଅଛି ।

ପ୍ରତି ୫ ବର୍ଷରେ ଥରେ ଦେଶରେ ସାଧାରଣ ନିର୍ବାଚନ ହୋଇଥାଏ । ଏହି ନିର୍ବାଚନରେ ଯେଉଁ ଦଳ ବିପୁଳ ପରିମାଣରେ ସଂଖ୍ୟାଗରିଷ୍ଠତା ହାସଲ କରେ ସେ ଦଳ କେନ୍ଦ୍ରରେ ସରକାର ଗଠନ କରିଥାନ୍ତି । ଧାରା ୭୪ରେ ଅଛି ଯେ କେନ୍ଦ୍ର ମନ୍ତ୍ରିମଣ୍ଡଳ

ଶାସନ କାର୍ଯ୍ୟ ସମ୍ବନ୍ଧୀୟ ପରାମର୍ଶ ରାଷ୍ଟ୍ରପତିଙ୍କୁ ପ୍ରଦାନ କରିଥାନ୍ତି । ଧାରା ୭୫(୧)ରେ ରାଷ୍ଟ୍ରପତି, ପ୍ରଧାନମନ୍ତ୍ରୀ ଓ ଅନ୍ୟାନ୍ୟ କେନ୍ଦ୍ର ମନ୍ତ୍ରୀମାନଙ୍କୁ ନିଯୁକ୍ତି ପ୍ରଦାନ କରିଥାନ୍ତି । ଧାରା ୭୫(୨)ରେ ମନ୍ତ୍ରିମଣ୍ଡଳର କାର୍ଯ୍ୟକାଳ ସ୍ଥିରୀକୃତ ହୋଇଥାଏ । ଧାରା ୭୫(୩)ରେ ଲୋକସଭା ନିକଟରେ ମନ୍ତ୍ରିମଣ୍ଡଳ ନିଜର କାର୍ଯ୍ୟ ପାଇଁ ମିଳିତ ଭାବରେ ଦାୟୀ ରହେ । ଏହାକୁ ମନ୍ତ୍ରିମଣ୍ଡଳର 'ମିଳିତ ଦାୟିତ୍ୱ' ବୋଲି କୁହାଯାଏ ।

୭୬ ଧାରାରେ ଭାରତର ମହାନ୍ୟାୟବାଦୀ ବା ଅଟର୍ଣ୍ଣି ଜେନେରାଲ ନିଯୁକ୍ତି ହୋଇଥାନ୍ତି । ୭୮ ଧାରାରେ ପ୍ରଧାନମନ୍ତ୍ରୀ ମନ୍ତ୍ରିମଣ୍ଡଳୀୟ ନିଷ୍ପତ୍ତି ରାଷ୍ଟ୍ରପତିଙ୍କୁ ଜଣାନ୍ତି । ରାଷ୍ଟ୍ରପତି ଲୋକସଭା ଓ ରାଜ୍ୟସଭାକୁ ମିଳିତ ଭାବରେ ସଂସଦ କୁହାଯାଏ । ସମ୍ବିଧାନର ୭୯ ଧାରାରେ କୁହାଯାଇଛି ଯେ, କେନ୍ଦ୍ରରେ ଏକ ସଂସଦ ରହିବ ଓ ତାହା ରାଷ୍ଟ୍ରପତି ଓ ଦୁଇ ସଭାର ଯଥା – ଲୋକସଭା ଓ ରାଜ୍ୟସଭାକୁ ନେଇ ଗଠିତ ହେବ । ଧାରା ୮୦ରେ ରାଜ୍ୟସଭାର ଗଠନ ପ୍ରଣାଳୀ ବର୍ଣ୍ଣନା କରାଯାଇଛି । ରାଜ୍ୟସଭାକୁ ଉଚ୍ଚକକ୍ଷ ଓ ବୟସ୍କମାନଙ୍କ ସଦନ ମଧ୍ୟ କୁହାଯାଏ । ଏହା ଏକ ସ୍ଥାୟୀ ସଭା ଅଟେ । ଏହାର ସଭ୍ୟ ସଂଖ୍ୟା ୨୫୦ ଅଟେ । ୮୧ ଧାରାରେ ଲୋକସଭାର ଗଠନ ପ୍ରଣାଳୀ ରହିଛି । ଏହାକୁ ନିମ୍ନକକ୍ଷ ଓ ଜନପ୍ରିୟ ସଦନ କୁହାଯାଏ । ଏଥିରେ ସର୍ବାଧିକ ୫୫୨ଜଣ ସଭ୍ୟ ରହିପାରିବେ । ଏହାର ସଭ୍ୟମାନେ ଜନସାଧାରଣଙ୍କ ଦ୍ୱାରା ପ୍ରତ୍ୟକ୍ଷ ଭାବରେ ନିର୍ବାଚିତ ହୋଇଥାନ୍ତି । ଆମ ଓଡ଼ିଶାରୁ ୨୧ଜଣ ସଭ୍ୟ ନିର୍ବାଚିତ ହୋଇ ଲୋକସଭାକୁ ଯାଇଥାନ୍ତି । ସମ୍ବିଧାନର ୮୩ ଧାରାରେ ରାଜ୍ୟ ସଭାର କାର୍ଯ୍ୟକାଳ, ପ୍ରତି ଦୁଇବର୍ଷରେ ଏକ ତୃତୀୟାଂଶ ସଭ୍ୟଙ୍କ ଅବସର ଗ୍ରହଣ ବିଷୟ ଉଲ୍ଲେଖ ରହିଛି । ୮୩(୨) ଧାରାରେ ଲୋକସଭାର କାର୍ଯ୍ୟକାଳ ୫ ବର୍ଷ ରହିଛି । ୮୪ରେ ସଂସଦ ସଭ୍ୟମାନଙ୍କର ଯୋଗ୍ୟତା, ୮୫ ଧାରାରେ ସଂସଦର ଅଧିବେଶନ, ୮୯ ଧାରାରେ ରାଜ୍ୟସଭାର ଅଧକ୍ଷ ଓ ଉପାଧକ୍ଷ ବିଷୟରେ, ୯୩ ଧାରାରେ ଲୋକସଭା ବାଚସ୍ପତିଙ୍କର ନିଯୁକ୍ତି ଓ କାର୍ଯ୍ୟକାଳ, ୯୪ ଧାରାରେ ଲୋକସଭା ବାଚସ୍ପତିଙ୍କ ପଦଚ୍ୟୁତି ବିଷୟରେ ଲେଖାଯାଇଛି ।

ସେହିପରି ଧାରା ୯୮ରେ ସଂସଦର ସଚିବାଳୟ, ୧୦୦(୩) ଧାରାରେ ସଂସଦର ଅଧିବେଶନ ପାଇଁ କୋରମ୍, ୧୦୫ ଧାରାରେ ସଂସଦର ସଦସ୍ୟମାନଙ୍କ ସ୍ୱାଧିକାର, ୧୦୬ଧାରାରେ ସାଂସଦମାନଙ୍କର ଦରମା ଓ ଭତ୍ତା, ୧୦୭ ଧାରାରେ ସଂସଦର ଆଇନ୍ ପ୍ରଣୟନ ବ୍ୟବସ୍ଥା, ୧୦୮ ଧାରାରେ ରାଷ୍ଟ୍ରପତି ସଂସଦର ମିଳିତ ବୈଠକ ଆହ୍ୱାନ କରନ୍ତି । ବ୍ୟବସ୍ଥାପିକାର ପ୍ରଧାନ କାର୍ଯ୍ୟ ହେଲା ଆଇନ୍ ପ୍ରଣୟନ କରିବା, ସମ୍ବିଧାନର ୧୦୭ ଧାରାରୁ ୧୧୨ ଧାରା ପର୍ଯ୍ୟନ୍ତ କେନ୍ଦ୍ରୀୟ ଆଇନ୍ ପ୍ରଣୟନ ପଦ୍ଧତି ବର୍ଣ୍ଣନା କରାଯାଇଛି । ଆଇନ୍‌ର ପୂର୍ବବର୍ତ୍ତୀ ଅବସ୍ଥାକୁ ଚିଠା ବା ବିଧେୟକ କୁହାଯାଏ । ବିଧେୟକ ୩ ପ୍ରକାରର ହୋଇଥାଏ ଯଥା – ସାଧାରଣ ବିଧେୟକ, ଅର୍ଥବିଧେୟକ ଓ ସମ୍ବିଧାନ ସଂଶୋଧନ ବିଧେୟକ । ୧୧୧ ଧାରାରେ ରାଷ୍ଟ୍ରପତି ବିଧେୟକ କ୍ଷେତ୍ରରେ ଭିଟୋ କ୍ଷମତା ଉପଭୋଗ କରନ୍ତି । ୧୧୨ ଧାରାରେ ଆର୍ଥିକ ବର୍ଷ ଆରମ୍ଭରେ ରାଷ୍ଟ୍ରପତି ବଜେଟ୍ ଉପସ୍ଥାପନ କରାଇବେ । ୧୧୭ ଧାରାରେ ଅର୍ଥ ବିଧେୟକ ଉପରେ ସ୍ୱତନ୍ତ୍ର ବ୍ୟବସ୍ଥା କରାଯାଇଥାଏ । ୧୨୩ ଧାରାରେ ରାଷ୍ଟ୍ରପତି ଅଧ୍ୟାଦେଶ ଜାରି କରନ୍ତି । ଅଧ୍ୟାଦେଶଟି ଆଇନ୍ ପରି କାର୍ଯ୍ୟକରେ । ସଂସଦର ବୈଠକ ବସି ନଥିଲା ବେଳେ କୌଣସି ଆଇନ୍‌ର ଜରୁରୀ ଆବଶ୍ୟକତା ପଡ଼ିଲେ ରାଷ୍ଟ୍ରପତି ମନ୍ତ୍ରିମଣ୍ଡଳର ପରାମର୍ଶକ୍ରମେ ଅଧ୍ୟାଦେଶ ଜାରି କରନ୍ତି । ସଂସଦ ଅଧିବେଶନ ଆରମ୍ଭ ହେବାର ୬ ସପ୍ତାହ ମଧ୍ୟରେ ଏହି ଅଧ୍ୟାଦେଶ ଗୃହୀତ ନ ହେଲେ ଏହା ଆପେ ଆପେ ରଦ୍ଦ ହୋଇଯାଏ ।

ଭାରତ ଏକ ସଂଘୀୟ ରାଷ୍ଟ୍ର, କିନ୍ତୁ ଐକିକ ପ୍ରକୃତି ଏଠାରେ ଦୃଷ୍ଟିଗୋଚର ହୋଇଥାଏ । ଏକ ସଂଘୀୟ ରାଷ୍ଟ୍ରରେ ଉଚ୍ଚତମ ନ୍ୟାୟାଳୟ ବା ସୁପ୍ରିମ କୋର୍ଟର ଭୂମିକା ଗୁରୁତ୍ୱପୂର୍ଣ୍ଣ । ଆମ ଭାରତର ଉଚ୍ଚତମ ନ୍ୟାୟାଳୟ ନୂଆଦିଲ୍ଲୀରେ ପ୍ରତିଷ୍ଠା ହୋଇଛି । ଏହି ଉଚ୍ଚତମ ନ୍ୟାୟାଳୟର ପୁଙ୍ଖାନୁପୁଙ୍ଖ ଆଲୋଚନା ସମ୍ବିଧାନର ଧାରା ୧୨୪ରୁ ୧୪୭ ମଧ୍ୟରେ ରହିଛି ।

୧୪୮ ଧାରାରେ ମହାହିସାବ ରକ୍ଷକ ଓ ମହାସମୀକ୍ଷକଙ୍କ ନିଯୁକ୍ତି, ୧୪୯ ଧାରାରେ ସେମାନଙ୍କର କାର୍ଯ୍ୟକାଳ, ୧୫୧ରେ ଅଡିଟ୍ ରିପୋର୍ଟ ସମ୍ବିଧାନରେ ଲିଖିତ ଆକାରରେ ସୁରକ୍ଷିତ ହୋଇ ରହିଅଛି । ଧାରା ୧୫୩ ରୁ ୧୬୮ ମଧ୍ୟରେ ରାଜ୍ୟପାଳଙ୍କ ଭଳି ଗୁରୁତ୍ୱପୂର୍ଣ୍ଣ ପଦବୀର ବ୍ୟକ୍ତିତ୍ୱଙ୍କ ବିଷୟରେ ସମ୍ବିଧାନରେ ବର୍ଣ୍ଣିତ ହୋଇଅଛି ।

୧୬୯ ଧାରାରେ ବିଧାନ ପରିଷଦର ସୃଷ୍ଟି ଓ ଉଚ୍ଛେଦ ବିଷୟରେ ଉଲ୍ଲେଖ କରାଯାଇଛି। ୧୭୦ ଧାରାରେ ବିଧାନସଭାର ଗଠନ, ୧୭୧ରେ ବିଧାନପରିଷଦର ଗଠନ ବିଷୟରେ କୁହାଯାଇଛି । ଧାରା ୧୭୨ରୁ ୧୯୫ରେ ବିଧାନମଣ୍ଡଳର ଚିକିନିଖି ବିଷୟକୁ ସମ୍ବିଧାନରେ ସ୍ଥାନିତ କରାଯାଇଛି । ୧୯୬ ଧାରାରେ ବିଧେୟକ ଉପସ୍ଥାପନ ଓ ସ୍ୱୀକୃତି, ୧୯୮ ଓ ୧୯୯ ଧାରାରେ ରାଜ୍ୟ ବ୍ୟବସ୍ଥାପିକାର ଅର୍ଥ ବିଧେୟକ ଉପରେ

ଆଲୋଚନା କରାଯାଏ । ୨୦୦ ଧାରାରେ ବିଧେୟକକୁ ରାଜ୍ୟପାଳଙ୍କ ସ୍ୱୀକୃତି ମିଳିଥାଏ ଓ ୨୦୧ ଧାରାରେ ବିଧେୟକ ସଂରକ୍ଷିତ କରି ରାଷ୍ଟ୍ରପତିଙ୍କ ପାଖକୁ ପଠାଯାଇଥାଏ । ୨୧୩ ଧାରାରେ ରାଜ୍ୟପାଳ ଅଧ୍ୟାଦେଶ ଜାରି କରନ୍ତି ।

ଭାରତ ୨୮ ରାଜ୍ୟ ଓ ୭ଟି କେନ୍ଦ୍ରଶାସିତ ଅଞ୍ଚଳକୁ ନେଇ ଗଠିତ । ସାରା ଭାରତରେ ନ୍ୟାୟପାଳିକା ସଂସ୍ଥା ସ୍ୱାଧୀନ ଓ ନିରପେକ୍ଷ ଅଟେ । ସର୍ବୋଚ୍ଚ ସ୍ତରରେ ଉଚ୍ଚତମ ନ୍ୟାୟାଳୟ ରହିବା ସ୍ଥଳେ ପ୍ରତ୍ୟେକ ରାଜ୍ୟର ନ୍ୟାୟ ବ୍ୟବସ୍ଥା ପାଇଁ ଉଚ୍ଚ ନ୍ୟାୟାଳୟମାନ ପ୍ରତିଷ୍ଠା କରାଯାଇଛି । ସମ୍ବିଧାନର ୨୧୪ ଧାରାରୁ ୨୩୫ ଧାରା ମଧ୍ୟରେ ହାଇକୋର୍ଟ ବିଷୟରେ ବିସ୍ତୃତଭାବେ ବର୍ଣ୍ଣନା କରାଯାଇଛି । ୨୩୯ ଧାରାରେ ଦେଶର ୭ଟି କେନ୍ଦ୍ରଶାସିତ ଅଞ୍ଚଳର ଶାସନ ସମ୍ବନ୍ଧରେ ଲିପିବଦ୍ଧ ହୋଇଛି ।

ଭାରତର ଶାସନ ବ୍ୟବସ୍ଥା ତୃଣମୂଳ ସ୍ତରରୁ ଆରମ୍ଭ ହୋଇ କେନ୍ଦ୍ର ପର୍ଯ୍ୟନ୍ତ ବ୍ୟାପିଅଛି । ଆଞ୍ଚଳିକ ସ୍ତରରେ ଶାସନର ସୁବିଧା ଦୃଷ୍ଟିରୁ ସାରା ଭାରତରେ ସ୍ୱାୟତ୍ତ ଶାସନ ବ୍ୟବସ୍ଥା ପ୍ରତିଷ୍ଠା କରାଯାଇଛି । ଦେଶର ଜନସାଧାରଣ ସ୍ୱାୟତ୍ତ ଶାସନରୁ ରାଜନୈତିକ ଶିକ୍ଷା ଲାଭ କରିଥାନ୍ତି ଓ ସରକାରୀ ସ୍ତରରେ ନିଜକୁ ସାମିଲ୍ କରିବାର ସୁଯୋଗ ପାଇଥାନ୍ତି । ସ୍ୱାୟତ୍ତ ଶାସନ ବ୍ୟବସ୍ଥା ଦୁଇ ପ୍ରକାରର ଯଥା – ସହରାଞ୍ଚଳ ସ୍ୱାୟତ୍ତ ଶାସନ ବ୍ୟବସ୍ତା ଓ ଗ୍ରାମାଞ୍ଚଳ ସ୍ୱାୟତ୍ତ ଶାସନ ବ୍ୟବସ୍ଥା । ୨୩୪ (କ), (ଖ), (ଗ), (ଘ) ଧାରାରେ ଗ୍ରାମସଭା ଗଠନ, ପଞ୍ଚାୟତ ଗଠନ, ମ୍ୟୁନିସିପାଲିଟି ଗଠନ ବିଷୟ ସମ୍ବିଧାନରେ ଅତି ସରଳ ଭାବରେ ଦର୍ଶାଇ ଦିଆଯାଇଛି ।

କେନ୍ଦ୍ର ଓ ରାଜ୍ୟ ସରକାରଙ୍କ ସମ୍ପର୍କକୁ ୩ ଭାଗରେ ବିଭକ୍ତ କରାଯାଇଛି । ଯଥା– ବ୍ୟବସ୍ଥାପକ ସମ୍ପର୍କ, ପ୍ରଶାସନିକ ସମ୍ପର୍କ ଓ ଆର୍ଥିକ ସମ୍ପର୍କ । ଆଇନ୍ ପ୍ରଣୟନ କ୍ଷେତ୍ରରେ କେନ୍ଦ୍ର ଓ ରାଜ୍ୟ ସରକାରଙ୍କ ମଧ୍ୟରେ ବ୍ୟବସ୍ଥାପକ ସମ୍ପର୍କ ସମ୍ବିଧାନର ସପ୍ତମ ଅନୁସୂଚୀରେ ପ୍ରଦତ୍ତ ୩ଟି ତାଲିକା ଯଥା– କେନ୍ଦ୍ର ତାଲିକା, ରାଜ୍ୟ ତାଲିକା ଓ ଯୁଗ୍ମ ତାଲିକାରେ ବର୍ଣ୍ଣନା କରାଯାଇଛି । ଏହି ଗୁରୁତ୍ୱପୂର୍ଣ୍ଣ ତାଲିକାରେ ବର୍ଣ୍ଣନା ଧାରା ୨୪୬ରୁ ୨୫୮ ଧାରା ମଧ୍ୟରେ ରହିଅଛି । ପ୍ରଶାସନିକ ଓ ଆର୍ଥିକ ସମ୍ପର୍କ ୨୬୨ ଧାରାରୁ ଆରମ୍ଭ ହୋଇ ୨୯୩ ମଧ୍ୟରେ ଖୁବ୍ ସରଳ ଭାବରେ ଲେଖାଯାଇଛି । ଭାରତ ସମ୍ବିଧାନରେ ଅନେକ ରାଜନୀତି ସମ୍ବନ୍ଧୀୟ ବିଷୟବସ୍ତୁ ସ୍ଥାନ ପାଇଛି । ଯେ କୌଣସି ନାଗରିକ ସମ୍ବିଧାନର ଧାରାଗୁଡ଼ିକୁ ଜାଣିବାକୁ ଆଗ୍ରହ ପ୍ରକାଶ କଲେ ସେତେ ଜ୍ଞାନର ସମୁଦ୍ରକୁ ଝାସ ଦେବାକୁ ଚେଷ୍ଟା କରିଥାଏ । ସର୍ବୋପରି ଭାରତ ସମ୍ବିଧାନ ପୃଥିବୀର ସର୍ବଶ୍ରେଷ୍ଠ ଆଖ୍ୟା ଲାଭ କରିଛି ।

୩୧୨ ଧାରାରେ ସଂସଦ ରାଜ୍ୟ ସଭାର ପ୍ରସ୍ତାବକ୍ରମେ ସର୍ବଭାରତୀୟ ସେବା ସୃଷ୍ଟି କରିପାରିବ । ୩୧୫ ଧାରାରେ କେନ୍ଦ୍ର ଲୋକସେବା ଆୟୋଗ ଓ ରାଜ୍ୟ ଲୋକସେବା ଆୟୋଗରେ ବର୍ଣ୍ଣିତ ହୋଇଛି । ୩୨୪ ଧାରାରେ ନିର୍ବାଚନ ଆୟୋଗ, ୩୨୬ ଧାରାରେ ସାର୍ବଜନୀନ ସାବାଳକ ଭୋଟ୍ ବ୍ୟବସ୍ଥାକୁ ବର୍ଣ୍ଣନା କରାଯାଇଅଛି ।

୩୩୦ଧାରାରେ ଦେଶର ଦଳିତମାନଙ୍କ ପାଇଁ ଯଥା– ତଫସିଲଭୁକ୍ତ ଜାତି ଓ ଉପଜାତିଙ୍କ ପାଇଁ ସଂରକ୍ଷଣର ବ୍ୟବସ୍ଥା କରାଯାଇଅଛି ।

୩୩୧ଧାରାରେ ଲୋସସଭାକୁ ରାଷ୍ଟ୍ରପତିଙ୍କ ଦ୍ୱାରା ୨ଜଣ ଆଁଗ୍ଲୋଇଣ୍ଡିଆନ୍ ସଭ୍ୟ ମନୋନୀତ ହୋଇଥାଆନ୍ତି ।

୩୩୨ ଧାରାରେ ରାଜ୍ୟ ବିଧାନସଭାରେ ଏସ୍‌ସି ଓ ଏସ୍‌ଟିମାନଙ୍କ ପାଇଁ ସ୍ଥାନ ସଂରକ୍ଷଣ ବ୍ୟବସ୍ଥା ରହିଛି । ଭାରତର ରାଷ୍ଟ୍ରପତିଙ୍କ ଜରୁରିକାଳୀନ କ୍ଷମତା ୩୫୨, ୩୫୬ ଓ ୩୬୦ ଧାରାରେ କେନ୍ଦ୍ର ତଥା ରାଜ୍ୟମାନଙ୍କରେ ରାଷ୍ଟ୍ରପତିଙ୍କ ନିର୍ଦ୍ଦେଶରେ ଘୋଷଣା କରାଯାଇଥାଏ । ଜରୁରିକାଳୀନ କ୍ଷମତା ୩ ପ୍ରକାରର । ଯଥା– ଜାତୀୟ ଜରୁରୀ ପରିସ୍ଥିତି, ରାଜ୍ୟ ଜରୁରୀ ପରିସ୍ଥିତି ଓ ଆର୍ଥିକ ଜରୁରୀ ପରିସ୍ଥିତି ।

୩୬୮ ଧାରାରେ ସମ୍ବିଧାନ ସଂଶୋଧନ ପଦ୍ଧତି ଭଳି ଗୁରୁତ୍ୱପୂର୍ଣ୍ଣ ବିଷୟ ସମ୍ବିଧାନରେ ଟିକିନିଖି ଭାବରେ ବର୍ଣ୍ଣନା କରାଯାଇଛି ।

ଭାରତର ୨୮ ରାଜ୍ୟ ମଧ୍ୟରେ ଜାମ୍ମୁ ଓ କାଶ୍ମୀର ରାଜ୍ୟକୁ ସମ୍ବିଧାନରେ ଅଧିକ ଗୁରୁତ୍ୱ ଆରୋପ କରାଯାଇଛି । ଆମ ପଡ଼ୋଶୀ ରାଷ୍ଟ୍ର ପାକିସ୍ତାନର ଦୃଷ୍ଟି ସର୍ବଦା ଏହି ସୁନ୍ଦର ପରିବେଶର ରାଜ୍ୟ ଉପରେ ପଡ଼ିଥାଏ ।

ପାକିସ୍ତାନ ସର୍ବଦା ଜାମ୍ମୁ–କାଶ୍ମୀର ତାଙ୍କ ଦେଶର ଅଂଶବିଶେଷ ବୋଲି ଦାବି କରି ଆସୁଅଛି । ୩୭୦ ଧାରାରେ ସମ୍ବିଧାନର ଜାମ୍ମୁ ଓ କାଶ୍ମୀର ପାଇଁ ସ୍ୱତନ୍ତ୍ର ସୁଯୋଗ ଓ କ୍ଷମତା ସୃଷ୍ଟି କରାଯାଇଅଛି ।

୩୯୫ ଧାରାରେ ଭାରତ ସ୍ୱାଧୀନତା ଆଇନ୍ ୧୯୪୭ ଓ ଭାରତ ଶାସନ ଆଇନ୍ ୧୯୩୫ ନାକଚ କରାଯାଇଅଛି ।

ଏହି ଆଲୋଚନାରୁ ଜଣାଯାଏ ଯେ ଭାରତ ସମ୍ବିଧାନର କଳେବର ତଥା ପରିସର ଅତ୍ୟନ୍ତ ବ୍ୟାପକ । ପୃଥିବୀର ପ୍ରାୟ ଉନ୍ନତ ଦେଶର ସମ୍ବିଧାନକୁ ଆମ ସମ୍ବିଧାନ ସହିତ ତୁଳନା କଲେ ଭାରତ ସମ୍ବିଧାନ ସର୍ବଶ୍ରେଷ୍ଠ, ସର୍ବୋତ୍କୃଷ୍ଟ ତଥା ଦୀର୍ଘତମ । ଏତେଗୁଡ଼ିଏ ଧାରା ଅନ୍ୟ କୌଣସି ରାଷ୍ଟ୍ରରେ ଦୃଷ୍ଟିଗୋଚର ହୁଏ ନାହିଁ । ଭାରତ ସମ୍ବିଧାନର ଧାରାଗୁଡ଼ିକ ସମସ୍ତ ନାଗରିକ ପଠନ କଲେ ରାଜନୈତିକ ଶିକ୍ଷା ଲାଭ କରିଥାନ୍ତି । ସମସ୍ତ ଧାରାଗୁଡ଼ିକ ଗୋଟିଏ ସୂତାରେ ମୁକ୍ତାମାଳା ପରି ସମ୍ବିଧାନରେ ସଜ୍ଜିତ ହୋଇ ରହିଅଛି । ସତରେ ଆମେ ଭାରତବାସୀ ଆମ ସମ୍ବିଧାନ ପାଇଁ ଗର୍ବ ଅନୁଭବ କରୁ । ୩୯୫ଟି ଧାରା ଓ ୧୨ଟି ଅନୁସୂଚୀକୁ ନେଇ ଆମ ଭାରତର ସମ୍ବିଧାନ ସମଗ୍ର ବିଶ୍ୱରେ ଉଚ୍ଚ ପ୍ରଶଂସିତ ହୋଇ ରହିଅଛି ।

ଅଧ୍ୟାପିକା
ରାଜନୀତି ବିଜ୍ଞାନ ବିଭାଗ
ଶ୍ରୀ ସୋମନାଥ ବାଲୁଙ୍କେଶ୍ୱର ଦେବ ମହିଳା
ମହାବିଦ୍ୟାଳୟ, କଣ୍ଡିଆ, ଜଟଣୀ, ଖୋର୍ଦ୍ଧା

# ଭାରତୀୟ ଗଣତନ୍ତ୍ର

ଇଂଜିନିୟର ରଘୁନାଥ ପାତ୍ର

ଆଜି ଜାନୁଆରୀ ଛବିଶି ତାରିଖ
ଗଣତନ୍ତ୍ର ଦିବସରେ
ଜାତି ବର୍ଣ୍ଣ ଧର୍ମ ବଇଷମ୍ୟ ଭୁଲି
ଶପଥ ନେବା ସକଳେ
ଆଗେଇ ନେବା ଏ ଦେଶ
ପରାଧୀନତାରୁ ମୁକ୍ତ କଲେ ଯେ
ସକଳ ଆମ ନମସ୍ୟ ।
ରାଜତନ୍ତ୍ରର ସ୍ୱେଚ୍ଛାଚାରିତା
ଦୂରେଇ ଯାଇଛି କାହିଁ
ସକଳ ଭାରତ ମାତାର ସନ୍ତାନ
ସକଳ ଭଉଣୀ ଭାଇ
ସଂକୀର୍ଣ୍ଣହୀନ ଚିନ୍ତା
ବ୍ୟକ୍ତି ଗୋଷ୍ଠୀର ସ୍ୱାର୍ଥ ସର୍ବସ୍ୱ
ଚେଷ୍ଟା ଲାଗଇ ପିତା ।
ପ୍ରକୃତି ସଂପଦେ ପୂର୍ଣ୍ଣ ଏ ଦେଶ
ଆମେ ନୁହଁ ଦୀନ ହୀନ
ଆଗେଇ ଯାଇଛେ ବିଶ୍ୱ ଦରବାରେ
ରଖି ଏ ଦେଶର ମାନ
ସାହିତ୍ୟ ବିଜ୍ଞାନ କ୍ଷେତ୍ରେ
କଳା କଉଶଳେ ଶିଳ୍ପ ଚାତୁରୀରେ
ଉନ୍ନତି ଛତ୍ରେ ଛତ୍ରେ ।

ସାଧନା ବଳରେ ସ୍ୱାଧୀନତା ପରେ
ଆମର ଆର୍ଥିକ ସ୍ଥିତି
ବଦଳି ଯାଇଛି ପଲ୍ଲୀଠୁ ସହର
ଦୂରେଇ ଦାରିଦ୍ର୍ୟ ଭୀତି
ଅରଜିବା ଯଶ କୀର୍ତ୍ତି
ବିଗତ ଗୌରବ ଫେରାଇ ଆଣିବା
ଗାଇ ଗୀତ ପ୍ରୀତି ମୈତ୍ରୀ ।
ପ୍ରୀତିପୂର୍ଣ୍ଣ ନେତ୍ରେ ସମନେତ୍ର ପାତେ
ତୋଷିବା ସକଳ ମନ
କୋଳେଇ ନେବାକୁ ବଢ଼ାଇବା ହାତ
କେହି ନୁହଁ ବଡ଼ ସାନ
ପ୍ରତିବେଶୀ ରାଜ୍ୟ ସହ
ବନ୍ଧୁତା ସୂତ୍ରେ ଆବଦ୍ଧ ଆମେ ଯେ
ଜୟ ଭାରତ ଜୟ ।

ବୃନ୍ଦାବନ ଧାମ
ଲୋକନାଥ ରୋଡ଼
ପାଟଣା ହାଟ ସାହି ଛକ
ପୁରୀ–୭୫୨୦୦୧

# ସାଧାରଣତନ୍ତ୍ର ଦିବସର ତାତ୍ପର୍ଯ୍ୟ

**ଜୟଶଙ୍କର ନାୟକ**

ଭାରତର ରାଜନୈତିକ ଜାତୀୟ ଇତିହାସରେ ୧୫ ଅଗଷ୍ଟ ୧୯୪୭ ଏବଂ ୨୬ ଜାନୁଆରୀ ୧୯୫୦ ମସିହା ହେଉଛି ଆମ ଜାତି ପାଇଁ ଏକ ଗର୍ବ ଓ ଗୌରବର ଦିନ । ଏହି ଦୁଇଟି ଦିବସ ହେଉଛି ଆମ ଜାତୀୟ ଇତିହାସରେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଦିବସ। ୧୫ ଅଗଷ୍ଟ ୧୯୪୭ରେ ଦେଶ ସ୍ୱାଧୀନତା ହୋଇଥିବାରୁ ଉକ୍ତ ଦିବସକୁ ସ୍ୱାଧୀନତା ଦିବସ ରୂପେ ଏବଂ ୨୬ ଜାନୁଆରୀ ୧୯୫୦ ମସିହାରେ ଆମ ଭାରତୀୟ ସଂବିଧାନ କାର୍ଯ୍ୟକାରି କରାଯାଇଥିବାରୁ ୨୬ ଜାନୁଆରୀକୁ ପ୍ରତିବର୍ଷ ସାଧାରଣତନ୍ତ୍ର ଦିବସ ରୂପେ ପାଳନ କରାଯାଏ ।

ଆମ ଦେଶ ଏହି ଦିବସରେ ବିଦେଶୀ କବଳରୁ ମୁକ୍ତିଲାଭ କରି ଏକ ସ୍ୱାଧୀନ ଓ ସାର୍ବଭୌମ ଗଣତାନ୍ତ୍ରିକ ରାଷ୍ଟ୍ରରେ ପରିଣତ ହୋଇଛି । ଆମ ପାଇଁ ସ୍ୱାଧୀନତା ଏକ ଦାନ ସ୍ୱରୂପ ନଥିଲା । ସ୍ୱାଧୀନତା ପ୍ରାପ୍ତି ନିମନ୍ତେ ଆମ ଦେଶବାସୀଙ୍କୁ କଠୋର ସଂଗ୍ରାମ ଓ ଅସୀମ ତ୍ୟାଗ ସ୍ୱୀକାର କରିବାକୁ ପଡ଼ିଛି । ସ୍ୱାଧୀନତା ସଂଗ୍ରାମରେ ଯେଉଁମାନେ ଆତ୍ମୋତ୍ସର୍ଗ କରିଛନ୍ତି, ସେମାନେ ଆଜି ଆମର ଚିର ନମସ୍ୟ । ସେମାନଙ୍କୁ ସ୍ମରଣ କରିବା ପାଇଁ ଆଜି ଦିନଟି ଆମକୁ ସୁଯୋଗ ଦେଇଥାଏ । ଭାରତ ଆଜି ତାଙ୍କ ନିକଟରେ ଚିରକୃତଜ୍ଞ । ତାଙ୍କରି ଯୋଗୁଁ ଭାରତବାସୀ ବିଜୟୀ ପତାକା ଫରଫର ଉଡ଼ାଇ ପାରିଛି । ୧୯୪୭ ମସିହା ଅଗଷ୍ଟ ୧୫ ତାରିଖରେ ଦେଶ ସ୍ୱାଧୀନ ହେବା ପରେ ଆମେ ଆମ ଦେଶକୁ କିପରି ଚଳାଇବୁ ସେଥିଲାଗି ନିୟମ କାନୁନ ପ୍ରସ୍ତୁତ କଲୁ । ଏହି ନିୟମାବଳୀରେ କେଉଁ ଉପାୟରେ ସରକାର ଗଠନ ହେବ, ଦେଶର ନୀତି କ'ଣ ରହିବ ସବୁ ଉଲ୍ଲେଖ କରାଗଲା । ଏହାକୁ କୁହାଗଲା ସମ୍ବିଧାନ । ଏହି ସମ୍ବିଧାନରେ ବିଦେଶୀ ଶାସନରୁ ମୁକ୍ତ ହେବା ପରେ ଦେଶ କିପରି ଶାସିତ ହେବ ଏବଂ କେଉଁ ଆଧାରରେ ଦେଶର ଶାସନ ବ୍ୟବସ୍ଥା କାର୍ଯ୍ୟକରିବ ଏଥି ନେଇ ବହୁ ସମସ୍ୟା ଥିଲା । ଦେଶ ସ୍ୱାଧୀନତା ଲାଭ ପରେ ସମ୍ବିଧାନ ପ୍ରସ୍ତୁତି ପାଇଁ ଏକ ସମ୍ବିଧାନ ସଭା ଗଠନ ହେଲା । ସେତେବେଳେ ଏହାର ପ୍ରଥମ ବୈଠକ ୧୯୪୬ ଡ଼ିସେମ୍ବର ୯ ତାରିଖରେ ବସିଥିଲା ଏବଂ ସେହି ସମୟରେ ଏହାର ସଭ୍ୟସଂଖ୍ୟା ୨୯୯ ଥିଲେ । ୨୮ ଅଗଷ୍ଟ ୧୯୪୭ରେ ଡ଼କ୍ଟର ଭୀମରାଓ ରାମଜୀ ଆମ୍ବେଦକରଙ୍କ ନେତୃତ୍ୱରେ ଭାରତୀୟ ସମ୍ବିଧାନ କମିଟି ଆରମ୍ଭ ହେଲା । ସମ୍ବିଧାନ ପ୍ରଣୟନ କାର୍ଯ୍ୟ ଆରମ୍ଭ ହୋଇ ୧୯୪୯ ମସିହା ନଭେମ୍ବର ୨୬ ତାରିଖରେ ସମାପ୍ତ ହୋଇଥିଲା ଏବଂ ଗଭୀର ଅଧ୍ୟୟନ ଓ ବହୁ ବିଚାର ବିମର୍ଷ ପରେ ତାହା ଗୃହୀତ ହୋଇଥିଲା । ଏଥିରେ ବଛା ବଛା ରାଜନୀତିଜ୍ଞ, ସମ୍ବିଧାନ ବିଶେଷଜ୍ଞ, ଆଇନବିତ୍ ଓ ଶିକ୍ଷାବିତ୍‌ମାନେ ସଭ୍ୟ ଥିଲେ । ଏଥିରେ ଅଧକ୍ଷତା କରିଥିଲେ ସ୍ୱାଧୀନ ଭାରତର ଆଇନ ମନ୍ତ୍ରୀ ଡ଼କ୍ଟର ବାବାସାହେବ ଭୀମରାଓ ରାମଜୀ ଆମ୍ବେଦକର । ତାଙ୍କର ବିଶେଷ ଅବଦାନ ଯୋଗୁଁ ତାଙ୍କୁ ଭାରତୀୟ ସମ୍ବିଧାନର ପିତା ବୋଲି କୁହାଯାଏ । ଆମ ସମ୍ବିଧାନର ନିର୍ମାତାମାନେ ଅନ୍ୟ ଦେଶର ସମ୍ବିଧାନ ଅଧ୍ୟୟନ କରି ଆମ ଦେଶ ପାଇଁ ଯାହା ଉପଯୋଗୀ ତାହା ଆମ ସମ୍ବିଧାନରେ ଖଞ୍ଜି ଦେଇଥିଲେ । ଏହି ସମ୍ବିଧାନରେ ମହାତ୍ମା ଗାନ୍ଧୀଙ୍କ ଚିନ୍ତାଧାରା ଦେଶବାସୀଙ୍କ ଆଶା ଆକାଂକ୍ଷା ଓ ଭାରତର ଯେଉଁ ମହାନ୍ ପରମ୍ପରା ଓ ଦର୍ଶନ ତାହା କୋଣ ଅନୁକୋଣରେ ପ୍ରତିଫଳିତ ହୋଇଛି । ଏହି ବିଶାଳ ଦେଶର ନାନା ଅଞ୍ଚଳ, ଭାଷା, ଜାତି, ଧର୍ମ – ସବୁକୁ ଆଖି ଆଗରେ ରଖି ଆଇନ୍ ତିଆରି କରି ସେଗୁଡ଼ିକୁ ଲିପିବଦ୍ଧ କରୁକରୁ ଏହା ପୃଥିବୀର ସର୍ବବୃହତ ଲିଖିତ ସମ୍ବିଧାନରେ ପରିଣତ ହୋଇଗଲା ।

ଲିଖିତ ସମ୍ବିଧାନରେ ଅନେକ ଥର ସଂଶୋଧନ କରାଯିବା ପରେ ଏହାକୁ ସର୍ବସମ୍ମତିକ୍ରମେ ଲାଗୁ ହେବା ପାଇଁ ୨ ବର୍ଷ ୧୧

ମାସ ୧୮ ଦିନ ସମୟ ଲାଗିଥିଲା । ଭାରତୀୟ ସମ୍ବିଧାନରେ ସଂସଦୀୟ ଶାସନ ପଦ୍ଧତି, ଲୋକସଭା ତଥା ବିଧାନସଭା ପ୍ରତି ମନ୍ତ୍ରିମଣ୍ଡଳର ସାମୂହିକ ଉତ୍ତରଦାୟିତ୍ୱ, ରାଷ୍ଟ୍ରମୁଖ୍ୟ ଭାବେ ରାଷ୍ଟ୍ରପତିଙ୍କ ଔପଚାରିକ ସ୍ଥିତି, ସଂସଦ ଏବଂ ବିଧାନମଣ୍ଡଳଗୁଡ଼ିକର ପ୍ରକ୍ରିୟା ତଥା ସଂସଦ ଓ ବିଧାନମଣ୍ଡଳଗୁଡ଼ିକର ସଦସ୍ୟମାନଙ୍କର ବିଶେଷାଧିକାର ଏବଂ କ୍ଷମତାଗୁଡ଼ିକ ବ୍ରିଟେନ୍ ସମ୍ବିଧାନରୁ ନିଆଯାଇଛି । ୧୯୫୦ ମସିହା ଜାନୁଆରୀ ୨୬ ତାରିଖ ଦିନ ଡ଼କ୍ଟର ରାଜେନ୍ଦ୍ର ପ୍ରସାଦ ଗଭର୍ଣ୍ଣମେଣ୍ଟ ହାଉସର ଦରବାର ହଲଠାରେ ଭାରତର ପ୍ରଥମ ରାଷ୍ଟ୍ରପତି ଭାବେ ଶପଥ ନେଇଥିଲେ । ସେଦିନ ଇରୱିନ ଷ୍ଟାଡ଼ିୟମଠାରେ ପତାକା ଉତ୍ତୋଳନ କରାଯାଇଥିଲା । ଏହା ଥିଲା ସ୍ୱାଧୀନ ଭାରତର ପ୍ରଥମ ଗଣତନ୍ତ୍ର ଦିବସ ପାଳନ । ସେଦିନ ମୁଖ୍ୟ ଅତିଥି ଭାବେ ଉପସ୍ଥିତ ଥିଲେ ଇଣ୍ଡୋନେସିଆର ରାଷ୍ଟ୍ରପତି ସୁକର୍ଣ୍ଣ ।

ସମ୍ବିଧାନ ବିଧାୟକ ସଭା ୧୬୬ ଦିନ ବସିଥିଲା । ବହୁ ଆଲୋଚନା ଏବଂ ପର୍ଯ୍ୟାଲୋଚନା ପରେ ଆମ ସମ୍ବିଧାନ ସ୍ୱୀକୃତି ଲାଭ କଲା । ସେହିଦିନଠାରୁ ନାଗରିକତା, ନିର୍ବାଚନ ମଧ୍ୟବର୍ତ୍ତୀ କାଳୀନ ସଂସଦ ସଂକ୍ରାନ୍ତୀୟ କେତେକ ଅଧିନିୟମ ଲାଗୁ କରାଯାଇଥିଲା । ୨୧ ଜାନୁଆରୀ ୧୯୫୦ର ନିର୍ବାଚନ ପରେ ସମ୍ବିଧାନ ସଭାର ୩୦୮ ସଭ୍ୟଙ୍କର ୨୪ ଜାନୁଆରୀ ୧୯୫୦ରେ ସମ୍ବିଧାନର ଦୁଇକିତା ହସ୍ତଲେଖା ଦଲିଲ ଉପରେ ଦସ୍ତଖତ କରାଗଲା । ଏହା ଦୁଇକିତା ହିନ୍ଦୀ ଓ ଇଂରାଜୀରେ ଲେଖାଯାଇଥିଲା । ଏହାର ଦୁଇଦିନ ପରେ ଅର୍ଥାତ୍ ୨୬ ଜାନୁଆରୀରେ ଏହା କାର୍ଯ୍ୟକାରୀ ହେଲା ଓ ସେହି ଦିନଠାରୁ ୨୬ ଜାନୁଆରୀ ୧୯୫୦ ହିଁ ଆମ ସମ୍ବିଧାନର ପ୍ରାରମ୍ଭ ଦିବସ । ଏହି ଦିନଠାରୁ ଆମ ଦେଶ ଭାରତ ଏକ ସାର୍ବଭୌମ ସମାଜବାଦୀ ଧର୍ମ ନିରପେକ୍ଷ ଗଣତାନ୍ତ୍ରିକ ସାଧାରଣତନ୍ତ୍ର ରାଷ୍ଟ୍ରଭାବେ ପରିଣତ ହେଲା । ବିଶ୍ୱର ବହୁରାଷ୍ଟ୍ର ଭାରତର ଶାସନ ବ୍ୟବସ୍ଥାକୁ ନେଇ ଆଶଙ୍କା ପ୍ରକାଶ କରିଥିଲେ । ବିଭିନ୍ନ ଜାତି, ଧର୍ମ, ବର୍ଣ୍ଣର ଲୋକଙ୍କ ସମାହାର ଭାରତରେ ରହିଛି । ବିଭିନ୍ନ ଭାଷାଭାଷୀ ଲୋକେ ଏଠାରେ ବସବାସ କରୁଛନ୍ତି । ଏ ସମସ୍ତଙ୍କୁ ନେଇ ଭାରତୀୟ ଗଣତନ୍ତ୍ର ବେଶୀ ଦିନ ତିଷ୍ଠି ପାରିବ ନାହିଁ ବୋଲି କୁହାଯାଉଥିଲା । ଏହା ମଧ୍ୟରେ ସାଧାରଣତନ୍ତ୍ର ହେବାର ବହୁ ବର୍ଷ ଅତିକ୍ରାନ୍ତ ହୋଇଯାଇଛି । ଅନେକ ଘାତ-ପ୍ରତିଘାତ ସଂଘର୍ଷ- ଆହ୍ୱାନ ମଧ୍ୟରେ ଦେଶ ଗତି କରିଛି ତଥାପି ଏ ମହାନ ରାଷ୍ଟ୍ରର ଯାତ୍ରା ଥମି ନାହିଁ ।

ପ୍ରତ୍ୟେକ ଲିଖିତ ସମ୍ବିଧାନ ପରି ଭାରତ ସମ୍ବିଧାନର ପ୍ରାରମ୍ଭରେ ଏକ ପ୍ରସ୍ତାବନା ରହିଛି । ପ୍ରସ୍ତାବନା ସମ୍ବିଧାନର ଏକ ସଂକ୍ଷିପ୍ତ ରୂପ ଅଟେ । ଏଥିରେ ସମ୍ବିଧାନର ପ୍ରକୃତ ଲକ୍ଷ୍ୟ, ଅଭିପ୍ସା ଆକାଂକ୍ଷା ଓ ଆଇନଗତ ଭିତ୍ତି ସମ୍ବନ୍ଧରେ ସୂଚନା ଦିଆଯାଇଛି । ସମ୍ବିଧାନର ପ୍ରସ୍ତାବନାରେ କୁହାଯାଇଛି- 'ଆମେ ଭାରତର ଜନସାଧାରଣ, ଭାରତକୁ ଏକ ସାର୍ବଭୌମ, ସମାଜବାଦୀ ଧର୍ମନିରପେକ୍ଷ, ଗଣତାନ୍ତ୍ରିକ, ସାଧାରଣତନ୍ତ୍ର ରାଷ୍ଟ୍ରରେ ପରିଣତ କରିବା ନିମିତ୍ତ ଏବଂ ଏହାର ସମସ୍ତ ନାଗରିକମାନଙ୍କୁ ସାମାଜିକ, ଅର୍ଥନୈତିକ, ରାଜନୈତିକ, ନ୍ୟାୟ ଚିନ୍ତା, ମତପ୍ରକାଶ ବିଶ୍ୱାସ, ଧର୍ମ ଓ ଉପାସନାର ସ୍ୱାଧୀନତା, ସ୍ଥିତି ଓ ସୁଯୋଗର ସମାନତା ପ୍ରଦାନ ତଥା ସେମାନଙ୍କ ମଧ୍ୟରେ ବ୍ୟକ୍ତିର ଗୌରବ ଓ ଜାତୀୟ ଐକ୍ୟ ଓ ସଂହତି ନିଶ୍ଚିତ ଭାବେ ରକ୍ଷା କରିବାର ଭ୍ରାତୃଭାବ ବର୍ଦ୍ଧନ କରାଇବା ନିମିତ୍ତ ସତ୍ୟ ଓ ନିଷ୍ଠାର ସହିତ ସଂକଳ୍ପ କରି ଆମ୍ଭମାନଙ୍କର ଏହି ଶାସନ ବିଧାୟକ ସଭାରେ ଅଦ୍ୟ ୧୯୪୯ ମସିହା ନଭେମ୍ବର ୨୬ ତାରିଖରେ ଏହି ସମ୍ବିଧାନକୁ ଅଙ୍ଗୀକୃତ, ଅଧିନିୟମିତ ଓ ଆତ୍ମାର୍ପିତ କରିଅଛୁ । ଏଠାରେ ଉଲ୍ଲେଖନୀୟ ଯେ ୧୯୭୬ ମସିହାରେ ୪୨ ତମ ସମ୍ବିଧାନ ସଂଶୋଧନ ଅନୁଯାୟୀ ମୁଖବନ୍ଧରେ ସମାଜବାଦୀ ଓ ଧର୍ମନିରପେକ୍ଷ ଏବଂ ସଂହତି ଶବ୍ଦ ଯୋଗ କରାଯାଇ ଏହାକୁ ସାର୍ବଭୌମ ସମାଜବାଦୀ ଧର୍ମନିରପେକ୍ଷ ଓ ଗଣତାନ୍ତ୍ରିକ ସାଧାରଣତନ୍ତ୍ର ରୂପେ ଘୋଷଣା କରାଯାଇଛି । ଏହାର ସାର୍ବଭୌମତ୍ୱ ଅଛି । ଅର୍ଥାତ୍ ନିଜ ଆଭ୍ୟନ୍ତରୀଣ ବ୍ୟାପାରରେ ସେ ସର୍ବେସର୍ବା ଏବଂ ବିଦେଶୀ ଶକ୍ତିଦ୍ୱାରା ପ୍ରଭାବିତ ବା ପରିଚାଳିତ ନୁହେଁ । ଏହାକୁ ସମାଜବାଦୀ ରାଷ୍ଟ୍ର ଅର୍ଥାତ୍ ଦାରିଦ୍ର୍ୟ, କ୍ଷୁଧା ଓ ବେକାରୀ ଦୂରୀକରଣ, ଉତ୍ପାଦନ ବୃଦ୍ଧି, ଅର୍ଥନୈତିକ ବ୍ୟବସ୍ଥା ଓ ବିଭିନ୍ନ ଶ୍ରେଣୀ ମଧ୍ୟରେ ରହିଥିବା ବୈଷମ୍ୟର ବିଲୋପ ସାଧନାକୁ ଗୁରୁତ୍ୱ ଦିଏ ।

ଏହା ଏକ ଧର୍ମନିରପେକ୍ଷ ରାଷ୍ଟ୍ର ଅର୍ଥାତ୍ କୌଣସି ଧର୍ମକୁ ଆମ ସମ୍ବିଧାନ ଉଚ୍ଚ ଆସନ ଦେଇନାହିଁ କି କେଉଁ ଧର୍ମ ରାଷ୍ଟ୍ରୀୟ ଧର୍ମ ପୃଷ୍ଠପୋଷକତା ଲାଭ କରି ନାହିଁ । ଏହା ଗଣତାନ୍ତ୍ରିକ ଅର୍ଥାତ୍ ଲୋକ ଶାସନ, ଲୋକଙ୍କ ପାଇଁ ଏବଂ ଲୋକଙ୍କ ଦ୍ୱାରା ପରିଚାଳିତ ଅଟେ । ଏହା ସାଧାରଣତନ୍ତ୍ର ଅର୍ଥାତ୍ ବଂଶାନୁକ୍ରମିକ ରାଜାରାଜୁଡ଼ା ଶାସନ ନୁହେଁ । ସର୍ବସାଧାରଣ ନିର୍ବାଚନ ମଇଦାନରେ ଅବତୀର୍ଣ୍ଣ ହୋଇ ଗାଦିକୁ ଆସିପାରିବେ । ସଂହତି ଶବ୍ଦ ପ୍ରୟୋଗ ଦ୍ୱାରା ବିଭିନ୍ନତା ମଧ୍ୟରେ ଏକତା ଓ ସଦ୍‌ଭାବକୁ ବୁଝାଏ । ଏହା ଦେଶର ଏକତା ଓ ଅଖଣ୍ଡତା ପାଇଁ ନିହାତି ଜରୁରୀ ଅଟେ । ଏତଦ୍‌ଭିନ୍ନ ପ୍ରସ୍ତାବନାର ଉଦ୍ଦେଶ୍ୟ ଓ ଲକ୍ଷ୍ୟ ହେଲା ଭାରତର ସମସ୍ତ

ନାଗରିକଙ୍କ ପାଇଁ ସାମାଜିକ, ଅର୍ଥନୈତିକ ଓ ରାଜନୈତିକ ନ୍ୟାୟ ପ୍ରତିଷ୍ଠା ଚିନ୍ତା, ଭାଷଣ, ବିଶ୍ୱାସ ଓ ଧର୍ମରେ ସ୍ୱାଧୀନତା ସ୍ଥିତି ଓ ସୁଯୋଗରେ ସମାନତା ଏବଂ ବ୍ୟକ୍ତିଗତ ସମ୍ମାନ ଓ ଜାତୀୟ ଏକତା ପ୍ରତିଷ୍ଠା ନିମନ୍ତେ ଭ୍ରାତୃଭାବ ପ୍ରତିଷ୍ଠା କରିବା ବ୍ୟବସ୍ଥା ଅଛି । ନିର୍ମଳ ଶାସନ ନିମନ୍ତେ ଏହି ବ୍ୟବସ୍ଥାରେ ବ୍ୟବସ୍ଥାପିକା ଓ କାର୍ଯ୍ୟପାଳିକାଠାରୁ ବିଚାର ବିଭାଗକୁ ସ୍ୱତନ୍ତ୍ର ଓ ସ୍ୱାଧୀନ କରାଯାଇଛି । ସଂସଦୀୟ ଶାସନ ବ୍ୟବସ୍ଥା, କେନ୍ଦ୍ରାଭିମୁଖୀ ଓ ରାଷ୍ଟ୍ରସଂଘ ଏହାର ମୂଳପିଣ୍ଡ । ନାଗରିକମାନଙ୍କୁ ପ୍ରଦତ୍ତ ମୌଳିକ ଅଧିକାର ରାଷ୍ଟ୍ରୀୟ ନିର୍ଦ୍ଦେଶମୂଳକ ନୀତି, ଏକ–ନାଗରିକତ୍ୱ ପ୍ରଦାନ, ଜନମଙ୍ଗଳକାରୀ ରାଷ୍ଟ୍ର ଗଠନ ତଥା ସାର୍ବଜନୀନ ସାବାଳକ ଭୋଟପ୍ରଥା ଏହାର ମୂଳ, କାଣ୍ଡ, ପତ୍ର, ଫୁଲ ଓ ଫଳର ନିଶ୍ଚିତ ସ୍ୱରୂପ କାର୍ଯ୍ୟ କରିଥାନ୍ତି । ସଂକ୍ଷେପରେ ଏହାହିଁ ଆମର ସମ୍ବିଧାନ ।

ଆମ ଦେଶର ସର୍ବୋଚ୍ଚ ଶାସନକର୍ତ୍ତା ଜନସାଧାରଣଙ୍କ ଦ୍ୱାରା ନିର୍ବାଚିତ । ସାଧାରଣ ଜନତାଙ୍କର ରାୟ ହିଁ ସର୍ବୋଚ୍ଚ ରାୟ । ସାଧାରଣ ଜନତାଙ୍କ ପସନ୍ଦ ଅନୁସାରେ ଶାସନ ଚାଲେ ଓ ଶାସକ ନିର୍ବାଚିତ ହୁଅନ୍ତି । ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥାରେ ସାଧାରଣ ଜନତା ସାର୍ବଭୌମ କ୍ଷମତା ଜାହିର କରନ୍ତି । ସାଧାରଣତନ୍ତ୍ର ଓ ଗଣତନ୍ତ୍ର ଉଭୟ ସଂଲଗ୍ନ ଶବ୍ଦ ଉଭୟରେ ଗଣ ବା ଲୋକମାନଙ୍କର କ୍ଷମତାକୁ ହିଁ କେନ୍ଦ୍ରବିନ୍ଦୁରେ ରଖାଯାଏ । ସେଥିପାଇଁ ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥାକୁ ଲୋକମାନଙ୍କର, ଲୋକମାନଙ୍କ ଦ୍ୱାରା ଓ ଲୋକମାନଙ୍କ ପାଇଁ ସରକାର ବୋଲି କୁହାଯାଏ ।

ମହାତ୍ମା ଗାନ୍ଧୀଙ୍କ ରାଜନୈତିକ ଦର୍ଶନରେ ଗ୍ରାମ୍ୟ ସାଧାରଣତନ୍ତ୍ର ବା ଭିଲେଜ ରିପବ୍ଲିକ ଏକ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିଛି । ଗାନ୍ଧୀଙ୍କ ମତରେ ଶାସନର ବିକେନ୍ଦ୍ରୀକରଣରେ ଗ୍ରାମ୍ୟ ସାଧାରଣତନ୍ତ୍ରର ଭୂମିକା ଗୁରୁତ୍ୱପୂର୍ଣ୍ଣ । ଯେଉଁଠାରେ ଲୋକମାନେ ନିଜେ ନିଜର ସମସ୍ୟାକୁ ଉପଲବ୍ଧି କରି ତା'ର ସମାଧାନ ବାଟ ବାହାର କରିପାରିବେ ଓ ସଚେତନ ନାଗରିକ ଭାବେ ତା'ର ପରିଚାଳନା କରିବେ ସେଠାରେ ଶାସନ ସଫଳ ହେବା ନିଶ୍ଚିତ । ଶାସକ ଯଦି ଜନାଭିମୁଖୀ ହୁଏ ଓ ଜନତାର ରାୟ ଅନୁସାରେ ଶାସନ ଚାଲେ ତେବେ ଦ୍ୱନ୍ଦ୍ୱ ଉପୁଜିବ ନାହିଁ । ଶାସକ ଓ ଶାସିତର ଉଦ୍ଦେଶ୍ୟ ଯଦି ଏକ ହୁଏ ତାହା ସମାଜର ମଙ୍ଗଳ ସାବ୍ୟସ୍ତ ହୁଏ । କ୍ଷମତାର ବିକେନ୍ଦ୍ରୀକରଣ ହେଲେ ତାହା ଦୁର୍ନୀତିକୁ ହ୍ରାସ କରାଏ ଓ ଶାସନ କରିବା ସହଜ ହୁଏ । ସାଧାରଣତନ୍ତ୍ର ରାଷ୍ଟ୍ରରେ ପ୍ରତି ନାଗରିକ ଦେଶର ଜଣେ ଜଣେ ଜାଗ୍ରତ ପ୍ରହରୀ । ଶାସନରେ ପ୍ରତ୍ୟକ୍ଷ ଅଂଶଗ୍ରହଣ ଦ୍ୱାରା ମଣିଷ ନିଜେ ନିଜକୁ ପରିମାର୍ଜିତ କରି ଶିଖେ । ମଣିଷ ଆତ୍ମକୈନ୍ଦ୍ରିକ ନହୋଇ ସାମାଜିକ ଓ ସାମୂହିକ ଚିନ୍ତାଧାରାରେ ଉଦ୍‌ବୁଦ୍ଧ ହୁଏ । ଶାସକର ଭୁଲ ଠିକ୍‌କୁ ପରୀକ୍ଷାନିରୀକ୍ଷା କରି ଠିକ୍ ବାଟରେ ଯିବା ପାଇଁ ଚେତେଇ ଦିଏ । ଲୋକ ପ୍ରତିନିଧି ମାଧ୍ୟମରେ ଭୋଟ ଦେଇ ଜନସାଧାରଣ ସେମାନଙ୍କର ସାର୍ବଭୌମ କ୍ଷମତାକୁ ଜାହିର କରନ୍ତି । ଆମ ଦେଶ ଭାରତର ସ୍ୱାଧୀନତା ପାଇଁ ହୋଇଥିବା ଜନ ଆନ୍ଦୋଳନ ଶାସକକୁ ଉଚିତ୍ ମାର୍ଗରେ ଶାସନ କରିବା ପାଇଁ ଶିକ୍ଷା ଦିଏ । ସାଧାରଣତନ୍ତ୍ର ରାଷ୍ଟ୍ରରେ ବ୍ୟକ୍ତିର ସ୍ୱାଧୀନତା ଓ ରାଷ୍ଟ୍ରର କ୍ଷମତା ଭିତରେ ସନ୍ତୁଳନ ରକ୍ଷା ନିହାତି ଜରୁରୀ । ଯେଉଁଠି ରାଷ୍ଟ୍ରର କ୍ଷମତା ବ୍ୟକ୍ତି ସ୍ୱାଧୀନତାକୁ ପଦଦଳିତ କରେ, ସାମାଜିକ ଶୃଙ୍ଖଳାକୁ ଭଙ୍ଗକରେ, ବେଆଇନକୁ ଆଇନ କରି ସମାଜ ଉପରେ ଲଦିଦିଏ ଓ ଦୁର୍ନୀତିଗ୍ରସ୍ତ ହୋଇ ସାମାଜିକ ସନ୍ତୁଳନକୁ ଦୋହଲାଇ ଦିଏ, ସେଠାରେ ସାଧାରଣ ଜନତା ତାର ସାର୍ବଭୌମ କ୍ଷମତାକୁ ଜାହିର କରି ଶାସକକୁ ପଦଚ୍ୟୁତ କରେ ।

ଭାରତର ସମ୍ବିଧାନ ପୃଥିବୀରେ ସର୍ବବୃହତ୍ ଲିଖିତ ସମ୍ବିଧାନ । ଅନେକ ଆଶା ନେଇ ନୂଆଦିଲ୍ଲୀ ସ୍ଥିତ ବ୍ୟବସ୍ଥାପକ ସଭାଗୃହରେ ୨୭୧ ଜଣ ନିର୍ବାଚିତ ପୁରୁଷ ଓ ମହିଳା ପ୍ରତିନିଧି ସ୍ୱାଧୀନ ଭାରତର ସମ୍ବିଧାନକୁ ସ୍ୱୀକୃତି ଦେବା ପାଇଁ ଏକତ୍ରିତ ହୋଇଥିଲେ । ସାମ୍ବିଧାନିକ ସଭା ୨୬ ନଭେମ୍ବର ୧୯୫୦ରେ କାର୍ଯ୍ୟଶେଷ କରିଥିଲେ ହେଁ ସମ୍ବିଧାନକୁ ଲାଗୁ କରିବା ପାଇଁ ୨୬ ଜାନୁଆରୀ ୧୯୫୦ ପର୍ଯ୍ୟନ୍ତ ଅପେକ୍ଷା କରାଯାଇଥିଲା । ନବେହଜାର ଶବ୍ଦ ବିଶିଷ୍ଟ ସମ୍ବିଧାନ ରଚିତ ହୋଇଥିଲା ଉଭୟ ହିନ୍ଦୀ ଓ ଇଂରାଜୀ ଭାଷାରେ । ରାଷ୍ଟ୍ରପତି ଡ଼ଃ. ରାଜେନ୍ଦ୍ର ପ୍ରସାଦ ସଦସ୍ୟମାନଙ୍କୁ ସମ୍ବିଧାନରେ ସ୍ୱାକ୍ଷର କରିବା ପାଇଁ ଆମନ୍ତ୍ରଣ କରିଥିଲେ । ନେହେରୁ ପ୍ରଥମେ ସ୍ୱାକ୍ଷର କରିଥିଲେ ଏବଂ ସର୍ବଶେଷରେ ରାଜେନ୍ଦ୍ର ପ୍ରସାଦ । ନିର୍ମଳ ଶାସନ ନିମନ୍ତେ ଏହି ଅବସ୍ଥାରେ ବ୍ୟବସ୍ଥାପିକା ଓ କାର୍ଯ୍ୟପାଳିକାଠାରୁ ବିଚାର ବିଭାଗକୁ ସ୍ୱତନ୍ତ୍ର ଓ ସ୍ୱାଧୀନ କରାଯାଇଛି । ପ୍ରସ୍ତାବନା ଅନୁଯାୟୀ ଭାରତର ସାର୍ବଭୌମ କ୍ଷମତା ଲୋକମାନଙ୍କ ହସ୍ତରେ ନ୍ୟସ୍ତ । ଭୋଟ ପ୍ରଥା ଆମ ଗଣତନ୍ତ୍ରକୁ ସୁଦୃଢ଼ କରିବା ପାଇଁ ବ୍ୟବସ୍ଥା କରାଯାଇଛି । ସଂକ୍ଷେପରେ ଏହା ହିଁ ଆମ ସମ୍ବିଧାନର ବିଶେଷତ୍ୱ ।

ଦୀର୍ଘପଥ ଅତିକ୍ରମ କରି ଏକ ସାଧାରଣତନ୍ତ୍ର ଭାବେ ଭାରତ ଗୋଟିଏ ପରେ ଗୋଟିଏ ସଫଳତା ହାସଲ କରିଚାଲିଛି । ସବୁଜ ବିପ୍ଳବରେ ଏ ଦେଶ ଖାଦ୍ୟ ଉତ୍ପାଦନରେ ଆତ୍ମନିର୍ଭର





ହୋଇପାରିଛି । ଶ୍ୱେତ ବିପ୍ଳବ ଯୋଗୁଁ ଦେଶରେ ଦୁଗ୍ଧର ବନ୍ୟା ସୃଷ୍ଟି ହୋଇଛି । ଭାରତ ପୃଥିବୀର ସର୍ବାଧିକ ଦୁଗ୍ଧ ଉତ୍ପାଦନକାରୀ ଦେଶ । ସ୍ୱାଧୀନତା ବେଳେ ଯେଉଁ ଦେଶରେ ପିନ୍ କଣ୍ଟାଟିଏ ଉତ୍ପାଦନ ହୋଇପାରୁ ନଥିଲା, ଆଜି ସେହି ଦେଶ ବିଜ୍ଞାନ ଓ କାରିଗରୀରେ ବିଶ୍ୱର ଗୋଟିଏ ଆଗଧାଡ଼ିର ଦେଶ । ସମସ୍ତଙ୍କୁ ଖାଦ୍ୟ, ବାସଗୃହ, ସ୍ୱାସ୍ଥ୍ୟସେବା, ବିଜୁଳି, ରାସ୍ତାଘାଟ ଓ ପାନୀୟ ଜଳ ଯୋଗାଣରେ ମଧ୍ୟ ଆଶାନୁପାତିକ ଆଗେଇ ଚାଲିଛି । ବିଶ୍ୱର ସର୍ବବୃହତ୍ ଗଣତାନ୍ତ୍ରିକ ରାଷ୍ଟ୍ର ଭାବେ ଭାରତର ପରିଚୟ ହିଁ ଆମ ପାଇଁ ଆଶ୍ୱସନାର ବିଷୟ ହୋଇ ପାରିଛି । ଦେଶର ସଂସଦ ଦେଶବାସୀଙ୍କ ପାଇଁ ମନ୍ଦିର ସଦୃଶ । ଏଠାରେ ଆଇନ୍ ତିଆରି ହୁଏ, ଦେଶ ପାଇଁ ତିଆରି ହୁଏ ଶାସନ ଖସଡ଼ା । ଆମ ସମ୍ବିଧାନ ବିଶ୍ୱର ବୃହତ୍ତମ ସମ୍ବିଧାନ ଭାବରେ ପରିଣତ ହୋଇଛି । ମୂଳ ଦଲିଲରେ ୩୯୫ଟି ଅନୁଚ୍ଛେଦ (ଧାରା) ଓ ୮ ଗୋଟି ଅନୁସୂଚୀ (ଉପଧାରା) ଲିପିବଦ୍ଧ ହୋଇଥିଲା । ଅଧୁନା ଏହାର ୪୪୧ଟି ଅନୁଚ୍ଛେଦ ଓ ୧୨ ଗୋଟି ଅନୁସୂଚୀ ଅଛି । ୧୯୨୯ ମସିହା ଡ଼ିସେମ୍ବର ୩୧ ତାରିଖ କଥା, ଇତିହାସ ପ୍ରସିଦ୍ଧ ଲାହୋରଠାରେ ଅନୁଷ୍ଠିତ ନିଖିଳ ଭାରତୀୟ କଂଗ୍ରେସ କମିଟିରେ ଏକ ପ୍ରସ୍ତାବ ଗୃହୀତ ହୋଇଥିଲା ଯେ ଆସନ୍ତା ଜାନୁଆରୀ ୨୬କୁ ପୂର୍ଣ୍ଣ ସ୍ୱରାଜ ଦିବସ ରୂପେ ପାଳନ କରାଯିବ । ଏହାକୁ ବ୍ରିଟିଶ ସରକାର ସ୍ୱୀକୃତି ନ ଦେଲେ କଂଗ୍ରେସ ଆଇନ ଅମାନ୍ୟ ଆନ୍ଦୋଳନ ଆରମ୍ଭ କରିବ । ତାହା ହିଁ ହେଲା । ଠିକ୍ ସେହିପରି ୧୯୩୧ ମସିହା ଜାନୁଆରୀ ୨୬ରେ କରାଚିଠାରେ ଅନୁଷ୍ଠିତ ହୋଇଥିଲା ନିଖିଳ ଭାରତୀୟ କଂଗ୍ରେସର ଅନ୍ୟ ଏକ ଅଧିବେଶନ । ଆମେ କୋଟି କୋଟି ଭାରତୀୟ ଯେଉଁ ତ୍ରିରଙ୍ଗା ତଳେ ଛିଡ଼ା ହୋଇ ଦେଶ ଭକ୍ତିର ସଂଙ୍ଗୀତ ଗାନ କରୁଛୁ, ତା'ର ସ୍ମୃତି କରାଚି ଅଧିବେଶନ ସହିତ ଜଡ଼ିତ । ଏଠାରେ ଘୋଷଣା କରାଯାଇଥିଲା ଯେ ଉପରେ ରହିବ କମଳା ରଙ୍ଗ ସାହସ ଓ ତ୍ୟାଗର ପ୍ରତୀକ, ମଝିରେ ରହିବ ଧଳାରଙ୍ଗ ସତ୍ୟ, ଶାନ୍ତି ଓ ଅହିଂସା ଏବଂ ତଳେ ରହିବ ସବୁଜ ରଙ୍ଗ ଯାହା ବିଶ୍ୱାସ, ବୀରତ୍ୱ ଓ ପ୍ରଗତିର ବାର୍ତ୍ତାବହ । ଧଳାରଙ୍ଗ ଉପରେ ଥିଲା ଏକ ଛୋଟ ଚରଖା ଚିହ୍ନ । ଜାତୀୟ ପତାକାର ଓସାର ଦୁଇଗୁଣ ହେଲେ ଲମ୍ବ ତିନିଗୁଣ ହେବ ବୋଲି ସ୍ଥିର କରାଯାଇଥିଲା। ପରବର୍ତ୍ତୀ ସମୟରେ ତ୍ରିରଙ୍ଗା ପତାକାରେ ସାମାନ୍ୟ ପରିବର୍ତ୍ତନ କରି ଚରଖା ସ୍ଥାନରେ ସାରନାଥର ଧର୍ମଚକ୍ର ସ୍ଥାନ ପାଇଥିଲା ।

ଦେଶରେ ସମାଜବାଦ ପ୍ରତିଷ୍ଠା ଆମ ସମ୍ବିଧାନର ଲକ୍ଷ୍ୟ । ଯେଉଁ ଦେଶରେ ଶୋଷଣ ନଥାଏ, ପ୍ରତ୍ୟେକ ବ୍ୟକ୍ତିର ସର୍ବନିମ୍ନ ଚାହିଦା ପୂରଣ କରାଯାଇ ସମସ୍ତଙ୍କୁ ସମାନ ଭାବରେ ନ୍ୟାୟ ପ୍ରଦାନ କରାଯାଇଥାଏ, ତାକୁ ସମାଜବାଦୀ ରାଷ୍ଟ୍ର କୁହାଯାଏ । ଆମେ ଧର୍ମନିରପେକ୍ଷତାରେ ବିଶ୍ୱାସ କରୁ । ରାଷ୍ଟ୍ର ଆଗରେ ସବୁ ଧର୍ମ ସମାନ । ଗଣତନ୍ତ୍ର ବ୍ୟକ୍ତିର ଉନ୍ନତି ଚାହେଁ । ତେଣୁ ପ୍ରତ୍ୟେକ ନାଗରିକଙ୍କୁ ବ୍ୟକ୍ତିଗତ ସ୍ୱାତନ୍ତ୍ର୍ୟ ଦିଆଯାଇଛି । ଦିଲ୍ଲୀ ରାଇସିନା ହିଲର ରାଷ୍ଟ୍ରପତି ଭବନଠାରୁ ରାଜପଥ ଦେଇ ଇଣ୍ଡିଆ ଗେଟ୍ ଯାଏଁ ପ୍ୟାରେଡ଼ ଚାଲେ । ଯେଉଁମାନେ ଦେଶ ସ୍ୱାଧୀନତା ସଂଗ୍ରାମରେ ଝାସ ଏବଂ ପରେ ଦେଶର ସାର୍ବଭୌମତ୍ୱ ରକ୍ଷା କରିବାରେ ଜୀବନ ଉତ୍ସର୍ଗ କରିଛନ୍ତି, ସେମାନଙ୍କ ଉଦ୍ଦେଶ୍ୟରେ ଆମର ପ୍ରଧାନମନ୍ତ୍ରୀ ଅମର ଜ୍ୟୋତି ଠାରେ ପୁଷ୍ପାର୍ଘ୍ୟ ଅର୍ପଣ କରନ୍ତି । ଏହାପରେ ସେ ଅନ୍ୟାନ୍ୟ ନିମନ୍ତ୍ରିତ ଅତିଥିମାନଙ୍କ ସହ ପତାକା ଉତ୍ତୋଳନ ସ୍ଥଳରେ ଉପସ୍ଥିତ ହୁଅନ୍ତି । ଏହା ପରେ ରାଷ୍ଟ୍ରପତି ସେଠାରେ ଉପସ୍ଥିତ ହୋଇ ଜାତୀୟ ପତାକା ଉତ୍ତୋଳନ କରନ୍ତି, ଜାତୀୟ ସଂଗୀତ ବୋଲାଯାଏ ଏବଂ ୨୧ଟି ତୋପ ସଲାମି ଦିଆଯାଏ । ଏହାପରେ କ୍ରମାନ୍ୱୟରେ ଚାଲେ ସୈନ୍ୟବାହିନୀର ତିନି ବିଭାଗ – ଜଳ, ସ୍ଥଳ ଓ ଆକାଶ ବାହିନୀର ମାର୍ଚ୍ଚପାଷ୍ଟ । ସେମାନେ ରାଷ୍ଟ୍ରପତିଙ୍କୁ ସଲାମୀ ବା ସାଲ୍ୟୁଟ ଜଣାନ୍ତି ଏବଂ ରାଷ୍ଟ୍ରପତି ଏହି ଅଭିବାଦନ ଗ୍ରହଣ କରିଥାନ୍ତି । ଏହା ପରେ ରାଜ୍ୟ ଓ କେନ୍ଦ୍ରଶାସିତ ଅଞ୍ଚଳରୁ ଆସିଥିବା ବିଭିନ୍ନ ସାଂସ୍କୃତିକ ତୋରଣ, ମେଢ଼, ଏନ୍.ସି.ସି, ଏନ୍.ଏସ୍.ଏସ୍, ସ୍କାଉଟ୍ସ, ଗାଇଡ୍ସମାନଙ୍କର ଆକର୍ଷଣୀୟ ପ୍ରଦର୍ଶନ କରାଯାଏ । ସାଧାରଣତନ୍ତ୍ର ଦିବସ ଉତ୍ସବର ପ୍ରାରମ୍ଭରେ ଅଶୋକ ଚକ୍ର ଏବଂ କୀର୍ତ୍ତି ଚକ୍ର ଭଳି ମହତ୍ୱପୂର୍ଣ୍ଣ ସମ୍ମାନ ପ୍ରଦାନ କରାଯାଏ । ଏହି ଅବସରରେ ସୈନ୍ୟ ବିଭାଗ ତଥା ଅନ୍ୟାନ୍ୟ ଦୁଃସାହସିକ କାର୍ଯ୍ୟ ପାଇଁ ବ୍ୟକ୍ତିବିଶେଷଙ୍କୁ ବିଭିନ୍ନ ଉପାଧି ଓ ପୁରସ୍କାର ଦ୍ୱାରା ସମ୍ମାନିତ କରାଯାଏ । ରାଜ୍ୟ ରାଜଧାନୀରେ ରାଜ୍ୟପାଳମାନେ ଅଭିବାଦନ ଗ୍ରହଣ କରନ୍ତି । ତାଙ୍କ ଅନୁପସ୍ଥିତିରେ ମୁଖ୍ୟମନ୍ତ୍ରୀ, ଅନ୍ୟସ୍ଥାନମାନଙ୍କରେ ମନ୍ତ୍ରୀ ବା ଅଧିକାରୀମାନେ ଅଭିବାଦନ ଗ୍ରହଣ କରନ୍ତି ।

ଏ ସବୁ ଦୃଷ୍ଟିରୁ ବିଚାର କଲେ ଭାରତର ସମ୍ବିଧାନ ଏକ ମହାନ ଦଲିଲ୍ । ଆମର ଭାରତ ମହାନ । ଏଣୁ ଏହି ମହାନ ଦେଶର ୨୬ ଜାନୁଆରୀ ଏକ ଗୁରୁତ୍ୱପୂର୍ଣ୍ଣ ଦିବସ ଅଟେ । ଏହା ଆମ ପାଇଁ ଏବଂ ଦେଶର ଭବିଷ୍ୟତ ପାଇଁ ଏକ ମହାନ ପରମ୍ପରା ହୋଇ ପାଳିତ ହେଉଅଛି ଏବଂ ହେଉଥିବ, ଏଥିରେ କୌଣସି ସନ୍ଦେହର ଅବକାଶ ନାହିଁ ।

ଗ୍ରାମ/ପୋଷ୍ଟ ଅଫିସ୍– ଖୁଚିଂ
ଜିଲ୍ଲା– ମୟୂରଭଞ୍ଜ–୭୫୭୦୩୯

# ଭାରତରତ୍ନ ବାବା ସାହେବ

**ଛନ୍ଦା ମିଶ୍ର**

ସ୍ରଷ୍ଟାଙ୍କ ସୃଷ୍ଟିର ଶ୍ରେଷ୍ଠ ଜୀବ ମାନବ, ନିଜର ବିଦ୍ୟା, ବୁଦ୍ଧି ଓ ବିବେକ ବଳରେ ନିଜକୁ ସ୍ୱର୍ଗର ଦେବତାଙ୍କ ସମକକ୍ଷ କରି ପାରିଛି । ମହନୀୟତା ଫୁଟି ଉଠିଛି ତା'ର କର୍ମରେ, ତା' ଆଚରଣରେ । ଏହି କର୍ମ ଦେଇଛି ତାକୁ ଏକ ସ୍ୱତନ୍ତ୍ର ପରିଚୟ । ଏହି ପରିଚୟ ବଳରେ ସେ ନିଜ ସହିତ, ସମଗ୍ର ସମାଜର ଉନ୍ନତି କଳ୍ପେ, ଜୀବନର ପ୍ରତିଟି ମୁହୂର୍ତ୍ତକୁ କରି ଚାଲିଛି ସୁବିନିଯୋଗ । କଣ୍ଟକିତ ପଥକୁ ମନେ କରିଛି ପୁଷ୍ପିତ ଉପବନ ଭାବେ ଓ ଜୀବନର ପ୍ରତିଟି ଝଡ଼ଝଞ୍ଜାକୁ ଈଶ୍ୱରଙ୍କର ଆଶୀର୍ବାଦ । କାରଣ ତା' ପାଇଁ ଗୁରୁମନ୍ତ୍ର ସାଜିଛି ଗୀତାର ସେହି ବାଣୀ – କର୍ମଣ୍ୟେ ବାଧିକା ରସ୍ତେ ମା' ଫଳେସୁ କଦାଚନ । ସେ ଭୁଲି ଯାଇଛି କ୍ଷୁଧା, ତୃଷ୍ଣା ଓ ନିଦ୍ରା, ସତେଯେପରି ସମଗ୍ର ବସୁଧାର ଦଳିତ ଓ ନିଷ୍ପେଷିତଙ୍କ ଉଦ୍ଧାର ହେଉଛି ତା' ଜୀବନର ଏକ ମାତ୍ର ବ୍ରତ ଓ ପରମ କର୍ତ୍ତବ୍ୟ ।

ସ୍ୱାଧୀନୋତ୍ତର କାଳରେ ଯେଉଁ କେତେଜଣ ଯୋଗଜନ୍ମା ନିଜର ଆଦର୍ଶ ଓ ଅଧ୍ୟବସାୟ ବଳରେ ସମଗ୍ର ମାନବ ସମାଜକୁ ଗଭୀର ଭାବେ ପ୍ରଭାବିତ କରି ପାରିଛନ୍ତି, ସେମାନଙ୍କ ମଧ୍ୟରେ ଭାରତରତ୍ନ ବାବା ସାହେବ ଡକ୍ଟର ଭୀମରାଓ ରାମଜୀ ଆମ୍ବେଦକର ଥିଲେ ଅଗ୍ରଗଣ୍ୟ । ଡକ୍ଟର ଆମ୍ବେଦକର ମହାରାଷ୍ଟ୍ରର ରତ୍ନଗିରି ଜିଲ୍ଲାର ଆମ୍ବାଦାବେ ଗ୍ରାମରେ ୧୮୯୧ ମସିହା ଏପ୍ରିଲ୍ ୧୪ ତାରିଖରେ ଏକ ଦରିଦ୍ର ମାହାର ପରିବାରରେ ଜନ୍ମ ଗ୍ରହଣ କରିଥିଲେ । ପିତା ରାମଜୀ ସକ୍‌ପାଲ ଓ ମାତା ଭୀମାବାଈଙ୍କର ସେ ଥିଲେ ଚତୁର୍ଦ୍ଦଶ ଓ ସର୍ବକନିଷ୍ଠ ସନ୍ତାନ । ମାତ୍ର ପାଞ୍ଚବର୍ଷ ବୟସରେ ମା'ଛେଉଣ୍ଡ ହୋଇ ପିଯୂଷୀ ମୀରାବାଈଙ୍କ ପାଖରେ ଲାଳିତ ପାଳିତ ହେଲେ ଭୀମରାଓ । ମହାରାଷ୍ଟ୍ରର ସୀତାରାଠାରେ ଭୀମରାଓଙ୍କର ବିଦ୍ୟାରମ୍ଭ ହୋଇଥିଲା । ଜଣେ ଅତ୍ୟନ୍ତ ମେଧାବୀ ଛାତ୍ର ରୂପେ ଛାତ୍ର ଓ ଶିକ୍ଷକ ମହଲରେ ସେ ନିଜର ସୁନାମ ବାଣ୍ଟିବାରେ ଲାଗିଲେ । ସେତେବେଳେ ଭାରତବର୍ଷରେ ଜାତିଭେଦକୁ ନେଇ ଘୋର କୁସଂସ୍କାର ବ୍ୟାପୀ ରହିଥିଲା । ଉଚ୍ଚ ଜାତି ଓ ନୀଚ ଜାତି ମଧ୍ୟରେ ଅସହିଷ୍ଣୁତା ଥିଲା ଖୁବ୍ ତୀବ୍ର । ଛୁଆଁ ଅଛୁଆଁର ଭେଦଭାବ, ଉତ୍କଟ ରୂପ ଧାରଣ କରିଥିଲା । ସବର୍ଣ୍ଣ ଲୋକେ ଅସବର୍ଣ୍ଣ ଲୋକଙ୍କୁ ସ୍ପର୍ଶ କରିବା ତ ଦୂରର କଥା, ସେମାନଙ୍କ ଛାଇ ମାଡ଼ିବାକୁ ମଧ୍ୟ ଘୃଣା କରୁଥିଲେ । ଉଚ୍ଚ ଜାତିର ଲୋକେ, ଛୋଟ ଜାତିର ଲୋକମାନଙ୍କ ସହ ମିଳାମିଶା, ଏକାଠି ପାଠପଢ଼ା ଏପରିକି ଗୋଟିଏ କୂଅ ବା ପୋଖରୀରୁ ପାଣି ନେବାକୁ ମଧ୍ୟ ଘୃଣ୍ୟ ଚକ୍ଷୁରେ ଦେଖୁଥିଲେ ।

ଆମ୍ବେଦକରଙ୍କୁ ଏହି ଜାତିପ୍ରଥାର ପ୍ରକୃତ ରୂପ ଖୁବ୍ ନିକଟରେ ଦେଖିବାକୁ ମିଳିଥିଲା । ସହପାଠୀମାନଙ୍କ ସହ ଏକାଠି ବସି ପାଠପଢ଼ିବାରୁ ସେ ହୋଇଥିଲେ ବଞ୍ଚିତ । ତାଙ୍କ ସହ ପଢ଼ୁଥିବା ଅନ୍ୟ ଉଚ୍ଚଜାତିର ଛାତ୍ରମାନଙ୍କଠାରୁ ଦୂରରେ ଶ୍ରେଣୀ କକ୍ଷର ଗୋଟିଏ କୋଣକୁ ଅନ୍ୟ ନୀଚଜାତିର ଛାତ୍ରଙ୍କ ସହ ବସିବାକୁ ହେଉଥିଲା । ବିଦ୍ୟାଳୟର ପାଣି ମାଠିଆରୁ ପାଣି ପିଇବାକୁ ତାଙ୍କୁ ଥିଲା ବାରଣ । ଶୋଷ କଲେ ସ୍କୁଲ ପିଅନ ଉପରୁ ପାଣି ଢାଳୁଥିଲା

ଓ ଆଞ୍ଜୁଳା କରି ଜଳପାନ କରିବା ପାଇଁ ପଡୁଥିଲା । ଥରେ ସ୍କୁଲରୁ ଫେରିଲା ବାଟରେ ପଥପ୍ରାନ୍ତରେ ଥିବା ଏକ କୂଅରୁ ପାଣି କାଢ଼ି ପିଇଦେଇଥିଲେ ବୋଲି ଭୀମରାଓଙ୍କୁ ଅନେକ ମାନସିକ ଲାଞ୍ଛନା ସହ ବେତ୍ରାଘାତ ମଧ୍ୟ କରାଗଲା । ଏହା ତାଙ୍କ କିଶୋର ମନରେ ଗଭୀର ରେଖାପାତ କଲା । କାରଣ ସେ ହୃଦୟଙ୍ଗମ କରିଥିଲେ ଯେ, ଛୋଟ ଜାତିରେ ଜନ୍ମ ନେବା ପାପ କିମ୍ବା ଅନ୍ୟାୟ ନୁହେଁ । ସେ ଜାଣିଥିଲେ ଯେ ଏସବୁ କୁସଂସ୍କାରରୁ ସମାଜକୁ ବଞ୍ଚାଇବାର ଏକମାତ୍ର ଉପାଦାନ ହେଉଛି ଶିକ୍ଷା । ଜ୍ଞାନର ଆଲୋକ ବଳରେ ହିଁ ସମାଜର ଏ ଅନ୍ଧକାର ଦିଗଟି ଉପରେ ଆଲୋକପାତ କରାଯାଇପାରିବ ବୋଲି ସେ ଥିଲେ ଦୃଢ଼ ନିଶ୍ଚିତ । ତାଙ୍କର ଏକମାତ୍ର ଲକ୍ଷ୍ୟ ଓ ଉଦ୍ଦେଶ୍ୟ ଥିଲା ଜ୍ଞାନ ସଂଗ୍ରହ । ଦୁଃଖ ଓ ଆର୍ଥିକ ଅନଟନ ଆଦି ଅନେକ ବାଧାବିଘ୍ନ ସତ୍ତ୍ୱେ ବିଦ୍ୟାର୍ଜନ ପାଇଁ ସମସ୍ତ ପ୍ରତିବନ୍ଧକକୁ ହସି ହସି ସେ ଆଗକୁ ଆଗକୁ ମାଡ଼ି ଚାଲିଲେ । ୧୯୦୮ ମସିହାରେ ବମ୍ବେର ଏଲଫିନ୍ ଷ୍ଟୋନ୍ ହାଇସ୍କୁଲରୁ ଆମ୍ବେଦକର ଅଛୁଆଁ ଜାତିର ପ୍ରଥମ ମ୍ୟାଟ୍ରିକୁଲେଟ୍ ଥିଲେ । ଅନେକ ଅସୁବିଧାର ସମ୍ମୁଖୀନ ହୋଇ ୧୯୧୨ ମସିହାରେ ସ୍ନାତକ ଶିକ୍ଷା ସମାପ୍ତ କରି ବରୋଦାର ରାଜା ସୟାଜୀରାଓ ଗାୟକୱାଡ଼ଙ୍କ ସହାୟତାରେ ଉଚ୍ଚଶିକ୍ଷା ନିମନ୍ତେ ବିଦେଶ ଯାତ୍ରା କଲେ । ପୃଥିବୀ ପ୍ରସିଦ୍ଧ ଆମେରିକାର କଲମ୍ବିଆ ବିଶ୍ୱବିଦ୍ୟାଳୟରୁ ଏମ୍.ଏ. ଏବଂ ଅର୍ଥନୀତିରେ ପିଏଚ୍.ଡି ଡ୍ରିଗୀ ହାସଲ କରି ଭାରତ ଫେରିଆସି ରାଜାଙ୍କ ସର୍ତ୍ତ ଅନୁଯାୟୀ ତାଙ୍କ ଦେୱାନୀରେ ବରୋଦା ରାଜ୍ୟର ସାମରିକ ସଚିବ ହିସାବରେ କାର୍ଯ୍ୟ କରିବା ଆରମ୍ଭ କଲେ । ମାତ୍ର ଆମ୍ବେଦକର ଜଣେ ଉଚ୍ଚ ଶିକ୍ଷିତ ତଥା ଜ୍ଞାନ ଓ ଗରିମାର ମୂର୍ତ୍ତିମନ୍ତ ପ୍ରତୀକ ଥିଲେ ମଧ୍ୟ ଜଣେ ଅସବର୍ଣ୍ଣ ହୋଇଥିବାରୁ ତାଙ୍କୁ ଅନ୍ୟ ରାଜକର୍ମଚାରୀମାନଙ୍କ ତାଚ୍ଛଲ୍ୟର ଶୀକାର ହେବାକୁ ପଡିଥିଲା । ତଳିଆ କର୍ମଚାରୀମାନେ ତାଙ୍କ ଜାତିକୁ ଆକ୍ଷେପ କରି ତାଙ୍କୁ ଦୁଃବ୍ୟବହାର ପ୍ରଦର୍ଶନ କରୁଥିଲେ । ଏପରିକି ପିଅନମାନେ ମଧ୍ୟ ଆମ୍ବେଦକରଙ୍କ ଟେବୁଲକୁ ଛୁଇଁଲେ, ଜାତି ଚାଲିଯିବାର ଆଶଙ୍କା କରି ଦୂରରୁ ଟେବୁଲ ଉପରକୁ ଫାଇଲପତ୍ର ଫୋପାଡ଼ି ଦେଉଥିଲେ । ଶିଶୁକାଳୁ ଦେଖିଆସୁଥିବା ଏ ଘୃଣ୍ୟ ଜାତିପ୍ରଥାକୁ ସମାଜରୁ ହଟେଇ ଦେବା ପାଇଁ ବିପ୍ଳବାତ୍ମକ ପନ୍ଥା ଅବଲମ୍ବନ କରିବା ପାଇଁ ମନେ ମନେ ନିଜକୁ ପ୍ରସ୍ତୁତ କରି ଆମ୍ବେଦକର ଲଣ୍ଡନ ସ୍କୁଲ ଅଫ୍ ଇକୋନୋମିକ୍ସରୁ ୧୯୨୧ରେ ଅର୍ଥନୀତିରେ ଡିଗ୍ରୀ ଓ ୧୯୨୨ରେ ବାରିଷ୍ଟର ଏବଂ ଡିଏସ୍‌ସି ଡିଗ୍ରୀରେ ଭୂଷିତ ହେଲେ । ଏଠାରେ ଉଲ୍ଲେଖଯୋଗ୍ୟ ଯେ, ଏହି ଡିଗ୍ରୀ ହାସଲରେ ସେ ଥିଲେ ପ୍ରଥମ ଭାରତୀୟ ।

ବମ୍ବେ ହାଇକୋର୍ଟରେ ଓକିଲାତି ଆରମ୍ଭ କଲେ ଡକ୍ଟର ଆମ୍ବେଦକର । ତାଙ୍କ ପ୍ରତିଭା ଓ ବିଚକ୍ଷଣ ବୁଦ୍ଧିରେ ଚମତ୍କୃତ ହେଲେ ତାଙ୍କ ଚତୁଃପାର୍ଶ୍ୱରେ ଥିବା ସମସ୍ତ ବ୍ୟକ୍ତି । ଅବିଳମ୍ବେ ଓକିଲ ମହଲରେ ଶ୍ରେଷ୍ଠ ସ୍ଥାନ ଗ୍ରହଣ କରିଲେ ଆମ୍ବେଦକର । କିନ୍ତୁ ମନରେ ନ ଥିଲା ଶାନ୍ତି, ହୃଦୟରେ ନ ଥିଲା ତୃପ୍ତି । ମନ ମଧ୍ୟରେ ଅହରହ ଚାଲିଥିଲା ସଂଘର୍ଷ । ଲକ୍ଷ ଲକ୍ଷ ଦଳିତ ଓ ନିଷ୍ପେଷିତମାନଙ୍କର ଦୁଃଖ, କଷ୍ଟ ଓ ଅଜ୍ଞତା ସର୍ବଦା ତାଙ୍କ ମନକୁ ଭୀଷଣ କଷ୍ଟ ଦେଉଥିଲା । ସବର୍ଣ୍ଣମାନଙ୍କ ସହ ଅସବର୍ଣ୍ଣମାନଙ୍କୁ ସମାଜର ପ୍ରତ୍ୟେକ କ୍ଷେତ୍ରରେ ସମାନ ଅଧିକାର ଦେବା ପାଇଁ ସେ ନିଜର କର୍ମପନ୍ଥା ମନେ ମନେ ସ୍ଥିର କରୁଥିଲେ । ଅସ୍ପୃଶ୍ୟମାନଙ୍କୁ ସାମାଜିକ ଅଧିକାର ପ୍ରଦାନ କରିବା ପାଇଁ ମନ୍ଦିର ପ୍ରବେଶ ଅଭିଯାନ ଆରମ୍ଭ କଲେ ୧୯୨୧ ମସିହାରେ । ୧୯୨୪ ମସିହାରେ 'ବହିଷ୍କୃତ ହିତକାରିଣୀ' ସଭା ଗଠନ କରି ଘୋଷଣା କଲେ ଯେ, ମନୁଷ୍ୟ ଗୋଟିଏ ଜାତି ଓ ସମସ୍ତେ ଈଶ୍ୱରଙ୍କର ସନ୍ତାନ । ଅସ୍ୱଶ୍ୟମାନଙ୍କ ଦ୍ୱାରା କିପରି ଅବାଧରେ କୂଅ ଓ ପୁଷ୍କରିଣୀର ଜଳ ବ୍ୟବହାର ହୋଇ ପାରିବ ସେଥିପାଇଁ ସେ ଆନ୍ଦୋଳନ ଆରମ୍ଭ କରିଦେଲେ । କୋଲାବ ଜିଲ୍ଲାର ମାହାଡ଼ ମ୍ୟୁନିସିପାଲିଟି ଦ୍ୱାରା ଚୋଦାର ପୁଷ୍କରିଣୀର ଜଳ ଦଳିତବର୍ଗଙ୍କ ଦ୍ୱାରା ବ୍ୟବହୃତ ହୋଇପାରିବ ବୋଲି ଘୋଷଣା କରାଯାଇଥିଲେ ମଧ୍ୟ ଏହା କାର୍ଯ୍ୟକାରୀ ନହେବାରୁ ୧୯୨୭ ମସିହା ମାର୍ଚ୍ଚ ୨ ତାରିଖରେ ଏହି ପୁଷ୍କରିଣୀର ଜଳ ବ୍ୟବହାର କରି ଆମ୍ବେଦକର ସାମାଜିକ ସାମ୍ୟବାଦର ଝଣ୍ଡା ଉଡ଼ାଇଥିଲେ । ୧୯୨୮ ମସିହାରେ ବମ୍ବେ ଆଇନ୍ ମହାବିଦ୍ୟାଳୟର ପ୍ରଥମେ ପ୍ରଫେସର ଭାବେ ଓ ପରେ ଅଧ୍ୟକ୍ଷ ରୂପେ ଅବସ୍ଥାପିତ ହୋଇଥିଲେ । ପରବର୍ତ୍ତୀ ସମୟରେ ଆମ୍ବେଦକର ମହାତ୍ମା ଗାନ୍ଧୀଙ୍କ ସହ ସ୍ୱାଧୀନତା ଆନ୍ଦୋଳନରେ ଯୋଗଦେଇ ୧୯୩୦ ମସିହାରେ ଲଣ୍ଡନଠାରେ ଅନୁଷ୍ଠିତ ଗୋଲ୍‌ଟେବୁଲ ବୈଠକରେ ଦଳିତ ଶ୍ରେଣୀଙ୍କ ତରଫରୁ ପ୍ରତିନିଧିତ୍ୱ କରିଥିଲେ । ସେଠାରେ ତାଙ୍କର ଧୀଶକ୍ତି ଓ ଅକାଟ୍ୟ ଯୁକ୍ତି ଗାନ୍ଧିଜୀଙ୍କୁ ବେଶ୍ ପ୍ରଭାବିତ କରିଥିଲା । ଦଳିତ ଓ ନିଷ୍ପେଷିତଙ୍କ ସ୍ୱାର୍ଥ ରକ୍ଷା ପାଇଁ ସ୍ୱତନ୍ତ୍ର ଭାରତରେ ଦଳିତ ଶ୍ରେଣୀଙ୍କ 'ରାଜନୈତିକ ଅଧିକାର', ଭାରତ ସମ୍ବିଧାନରେ 'ଦଳିତ ଶ୍ରେଣୀଙ୍କର ଶାସନ ଅଧିକାର' ଓ ସୈନ୍ୟ ବିଭାଗରେ ଦଳିତ ଶ୍ରେଣୀଙ୍କ ନିଯୁକ୍ତି ଏବଂ ସେମାନଙ୍କ ପାଇଁ 'ସ୍ୱତନ୍ତ୍ର ନିର୍ବାଚନ ମଣ୍ଡଳୀ' ଗଠନ କରିବା ପାଇଁ ଆମ୍ବେଦକର ନିଜର ଦାବି ଉପସ୍ଥାପନ କରିଥିଲେ । ଲଣ୍ଡନରୁ ଫେରି ସମସ୍ତ ଦଳିତ ଜାତିଙ୍କୁ ଏକତ୍ର କରିବାରେ ସେ ଲାଗିପଡ଼ିଲେ ।

ଡକ୍ଟର ଆମ୍ବେଦକର, ମହାତ୍ମାଗାନ୍ଧୀ ଓ ପଣ୍ଡିତ ମନମୋହନ ମାଲବ୍ୟଙ୍କ ମଧ୍ୟରେ 'ପୁନାପ୍ୟାକ୍ଟ' ନାମରେ ଏକ ଐତିହାସିକ ରାଜିନାମା ୧୯୩୨ ମସିହା ସେପ୍ଟେମ୍ବର ୨୪ ତାରିଖ ଦିନ ସ୍ୱାକ୍ଷରିତ ହେଲା । ଏହି ରାଜିନାମା ଅନୁଯାୟୀ ଅସ୍ପୃଶ୍ୟମାନଙ୍କ ପାଇଁ ଆନୁପାତିକ ସ୍ଥାନ ସଂରକ୍ଷଣ ବ୍ୟବସ୍ଥା ନିର୍ଦ୍ଧାରଣ କରାଗଲା । ଭାଇସ୍‌ରାୟଙ୍କ କାର୍ଯ୍ୟକାରିଣୀ ପରିଷଦର ସଦସ୍ୟ ରୂପେ ଆମ୍ବେଦକର ୧୯୪୨ରୁ ୧୯୪୬ ମସିହା ପର୍ଯ୍ୟନ୍ତ କାର୍ଯ୍ୟ କରିଥିଲେ ଓ ଏହି ସମୟରେ ସେ ଶ୍ରମିକମାନଙ୍କର ମଜୁରି ସମସ୍ୟା, ମାଲିକ ଓ ଶ୍ରମିକଙ୍କ ମଧ୍ୟରେ ସୁସମ୍ପର୍କ ତଥା କୃଷକମାନଙ୍କର ଆର୍ଥିକ ଉନ୍ନତି ପ୍ରତି ଧ୍ୟାନ ଦେଇଥିଲେ ।

ଭାରତ ସ୍ୱାଧୀନ ହେଲା ପରେ ସମ୍ବିଧାନ ପ୍ରସ୍ତୁତ କରିବାର ଗୁରୁ ଦାୟିତ୍ୱ ନ୍ୟସ୍ତ ହେଲା ଡକ୍ଟର ଆମ୍ବେଦକରଙ୍କ ଉପରେ । ଏହା ପ୍ରସ୍ତୁତ କରିବା ପାଇଁ ତାଙ୍କୁ ୨ ବର୍ଷ, ୧୧ ମାସ ଓ ୧୭ ଦିନ ସମୟ ଲାଗିଥିଲା । ଏହି ସମୟ ମଧ୍ୟରେ ଡକ୍ଟର ଆମ୍ବେଦକର ଆଇନ୍ ଓ ବିଚାରଶାସ୍ତ୍ର ଏବଂ ପୃଥିବୀର ବିଭିନ୍ନ ଦେଶର ସମ୍ବିଧାନକୁ ସୂଚାରୁ ରୂପେ ଅନୁଧ୍ୟାନ କରି ଭାରତର ସମ୍ବିଧାନ ପ୍ରସ୍ତୁତ କରିଥିଲେ । ସେ ଗଣତନ୍ତ୍ର ଓ ସମାଜବାଦର ଦୃଢ଼ ପ୍ରଶଂସକ ଥିଲେ । ତାଙ୍କ ଦ୍ୱାରା ପ୍ରସ୍ତୁତ 'ହିନ୍ଦୁ କୋର୍ଡ଼ ବିଲ୍' ଏହାର ଜ୍ୱଳନ୍ତ ଉଦାହରଣ ।

ଡକ୍ଟର ଆମ୍ବେଦକର ଜଣେ ବହୁମୁଖୀ ପ୍ରତିଭାର ଅଧିକାରୀ ଥିଲେ । ଶିକ୍ଷା, ସମାଜ ସଂସ୍କାର ଓ ଭାରତୀୟ ରାଜନୀତିକୁ ତାଙ୍କର ଅବଦାନ ସ୍ୱର୍ଣ୍ଣିମ ଅକ୍ଷରରେ ଲିପିବଦ୍ଧ ହୋଇ ରହିଛି । ଅର୍ଥନୀତି, ଦର୍ଶନ, ସଂସ୍କୃତ, ଇଂରାଜୀ, ଆଇନ୍ ଓ ରାଜନୀତିରେ ଥିଲା ତାଙ୍କର ଅଗାଧ ପାଣ୍ଡିତ୍ୟ । ଆମ ସାମାଜିକ ସମସ୍ୟା ଓ କୁସଂସ୍କାରର ଦୂରୀକରଣ ପାଇଁ ଶିକ୍ଷା ହିଁ ଏକମାତ୍ର ମହୌଷଧି ବୋଲି ସେ କହିଥିଲେ । ପଣ୍ଡିତ ଜବାହରଲାଲ ନେହେରୁଙ୍କ ମନ୍ତ୍ରିମଣ୍ଡଳରେ ସେ ପ୍ରଥମ ଆଇନ୍ ମନ୍ତ୍ରୀ ଭାବେ କାର୍ଯ୍ୟଭାର ଗ୍ରହଣ କରିଥିଲେ । ୧୯୫୬ ମସିହା ଅକ୍ଟୋବର ୧୪ ତାରିଖରେ ନାଗପୁରଠାରେ ବୌଦ୍ଧଭିକ୍ଷୁ ଚନ୍ଦ୍ରମଣିଙ୍କଠାରୁ ନିଜ ସ୍ତ୍ରୀ ଓ ହଜାର ହଜାର ଅନୁଗାମୀଙ୍କ ସହ ବୌଦ୍ଧ ଧର୍ମରେ ଦୀକ୍ଷିତ ହୋଇଥିଲେ । ତାଙ୍କ ଅସ୍ପୃଶ୍ୟତା ନିବାରଣ ଆନ୍ଦୋଳନକୁ ଦେଖି କେହି ତାଙ୍କୁ ଆବ୍ରାହମ୍ ଲିଙ୍କନଙ୍କ ସହ ତୁଳନା କରୁଥିଲା ବେଳେ ତାଙ୍କ ସଂସ୍କାରମୂଳକ ବିଚାରଧାରାକୁ ଦେଖି କେହି ମାର୍ଟିନ୍ ଲୁଥର କିଙ୍ଗ୍ ବୋଲି କହୁଥିଲେ । କେହି ପୁଣି ତାଙ୍କ ସଂଘର୍ଷ ଓ ସମତାକୁ ଦେଖି କାର୍ଲମାକ୍ସ ଆଖ୍ୟା ଦେଉଥିଲା ବେଳେ ଅନ୍ୟ କେହି ତାଙ୍କ ବୌଦ୍ଧଧର୍ମ ପ୍ରତି ଗଭୀର ଆଗ୍ରହ ଓ ନିଷ୍ଠା ଦେଖି ବୋଧିସତ୍ତ୍ୱ ଉପାଧିରେ ଭୂଷିତ କରିଥିଲା । ବହୁ ପ୍ରତିଭାର ଅଧିକାରୀ ଯୋଗଜନ୍ମା ଡକ୍ଟର ଆମ୍ବେଦକରଙ୍କୁ କିନ୍ତୁ ଜନସାଧାରଣ, ପରମ ଶ୍ରଦ୍ଧା ଓ ସମ୍ମାନର ସହ 'ବାବା ସାହେବ' ନାମରେ ସମ୍ବୋଧନ କରୁଥିଲେ । ଏହି ମହାମନୀଷୀ ଥିଲେ ଏକାଧାରରେ ଅର୍ଥନୀତିଜ୍ଞ, ଆଇନଜ୍ଞ, ସମାଜ ସଂସ୍କାରକ, ଗବେଷକ, ଦକ୍ଷ ପ୍ରଶାସକ, ଜନନେତା ଓ ରାଷ୍ଟ୍ରନାୟକ । ତାଙ୍କ ଦ୍ୱାରା ପ୍ରଣୀତ ଭାରତର ସମ୍ବିଧାନଟି ପୃଥିବୀର ସର୍ବଶ୍ରେଷ୍ଠ ସମ୍ବିଧାନ ବୋଲି ଗଣନା କରାଯାଉଛି । ଜୀବନରେ ବହୁ ବାଧାବିଘ୍ନ ଓ ଅଭାବ ମଧ୍ୟ ଦେଇ ଗତି କରିଥିଲେ ମଧ୍ୟ ତାଙ୍କର ତ୍ୟାଗ ଓ ନିଷ୍ଠା ଦ୍ୱାରା ସେ ଚିରକାଳ ପାଇଁ ଅମର ହୋଇଛନ୍ତି । ଏହି ମହାନ୍ ପୁରୁଷଙ୍କର ଜୀବନର ପରିସମାପ୍ତି ଘଟିଥିଲା ୧୯୫୬ ମସିହା ଡିସେମ୍ବର ୬ ତାରିଖରେ । ଡିସେମ୍ବର ୭ ତାରିଖରେ ବମ୍ବେର ଦାଦର ଚୌପାଟୀଠାରେ ତାଙ୍କର ଶେଷକୃତ୍ୟ ସମ୍ପନ୍ନ ହୋଇଥିଲା, ଯାହା ବର୍ତ୍ତମାନ 'ଚୌତ୍ୟଭୂମି ଦାଦର' ଭାବେ ଖ୍ୟାତ । ୧୯୯୦ ମସିହାରେ ତାଙ୍କ ମହନୀୟତା ଓ ଆଦର୍ଶ ପ୍ରତି ରାଷ୍ଟ୍ରୀୟ ସମ୍ମାନ ପ୍ରଦାନ କରି ଭାରତ ସରକାର ତାଙ୍କୁ ମରଣୋତ୍ତର ଭାବେ 'ଭାରତରତ୍ନ' ଉପାଧିରେ ଭୂଷିତ କରିଛନ୍ତି । ତାଙ୍କର ଅମର କୀର୍ତ୍ତି ଚିରଦିନ ପାଇଁ ମାନବ ସମାଜକୁ ପ୍ରେରଣା ଓ ଦିଗ୍‌ଦର୍ଶନ ଯୋଗାଇ ଆସୁଥିବ, ଏଥିରେ ସନ୍ଦେହ ନାହିଁ ।

୩ ଆର/୬, ବିଜେବି ନଗର
ଭୁବନେଶ୍ୱର



# ନେତାଜୀ ସୁଭାଷ ଚନ୍ଦ୍ର ବୋଷ

ସୁକାନ୍ତ କିଶୋର ମହାନ୍ତି

କଟକ ସହରର ଓଡ଼ିଆ ବଜାର, ଯେଉଁଠାରେ ପୃଥିବୀ ପ୍ରସିଦ୍ଧ ନେତା, ୧୮୯୭ ମସିହା ଜାନୁଆରୀ ମାସ ୨୩ ତାରିଖରେ ଜନ୍ମ ନେଇଥିଲେ, ସେ ହେଉଛନ୍ତି ମହାନ ନେତା ସୁଭାଷ ଚନ୍ଦ୍ର ବୋଷ । ତତ୍କାଳୀନ ଜଣେ ସ୍ୱନାମଧନ୍ୟ ଓକିଲ ଜାନକୀନାଥଙ୍କ ପୁତ୍ର ସୁଭାଷ । କଟକ ସହରରେ ଓକିଲାତିକୁ ପେଶା କରି ପୁରୁଣା ଜେଲ ସନ୍ନିକଟରେ ଥିବା ତାଙ୍କର ବାସଭବନ ଏବେ ବି ଭାରତ ମାନଚିତ୍ରରେ ଏକ ବିଶିଷ୍ଟ ସ୍ଥାନ ଲାଭ କରି ପାରିଛି । କାରଣ ଆମ ଦେଶର ରାଜନୈତିକ ଅବସ୍ଥା ଯେତେବେଳେ ପରାଧୀନତା ଓ ବ୍ରିଟିଶ ସରକାରଙ୍କ ନିର୍ମମ ଶୋଷଣ ଓ ଅତ୍ୟାଚାରରେ ମର୍ମାହତ ହୋଇଥିଲା, ସେହି ସମୟରେ ଯୁବକମାନଙ୍କୁ ଏକତ୍ର କରି ସ୍ୱାଧୀନତା ସଂଗ୍ରାମକୁ ଅଧିକ ଗତିଶୀଳ କରିବା ପାଇଁ ଯେଉଁ ପରମାତ୍ମାଙ୍କ ବିଶେଷ ଅବଦାନ ଥିଲା -ସେ ଆଉ କେହି ନୁହଁନ୍ତି, ଆମର ପ୍ରିୟ ନେତାଜୀ ସୁଭାଷ ଚନ୍ଦ୍ର ବୋଷ । ବାସ୍ତବରେ ସେ ଥିଲେ ତତ୍କାଳୀନ ସମାଜରେ ଜଣେ ଅଗ୍ନିସ୍ଫୁଲିଙ୍ଗର ମୂର୍ତ୍ତିମାନ ପ୍ରତୀକ । ତାଙ୍କର ଓଜସ୍ୱିନୀ ଭାଷଣ ଯୁବ ସମାଜ ଉପରେ ଗଭୀର ପ୍ରଭାବ ବିସ୍ତାର କରିଥିଲା ।



ଜନ୍ମ ତାରିଖ ୨୩ ଜାନୁଆରୀ, ଯାହା ସଂଖ୍ୟା ଜ୍ୟୋତିଷ ହିସାବରେ (୨+୩= ୫) ପାଞ୍ଚ । ପାଞ୍ଚ ଏଭଳି ଏକ ସଂଖ୍ୟା ଯାହାର ପ୍ରଭାବ ତାଙ୍କର ଜୀବନ ଶୈଳୀର ପ୍ରତିଟି କ୍ଷେତ୍ରରେ ପ୍ରତୀୟମାନ ହେଉଥିଲା । ସେ ଥିଲେ ଜଣେ ଯୋଗଜନ୍ମା ବିପ୍ଳବୀ ବୀର । ବିଜ୍ଞ ରାଜନୀତିଜ୍ଞ, ଓଜସ୍ୱୀ ବକ୍ତା, ବିଶେଷ କରି ଅନେକଙ୍କୁ ପ୍ରଭାବିତ କରି ପାରୁଥିବା ଜଣେ ନିଷ୍ପାପର ନେତା । ତାଙ୍କର ପ୍ରତିଟି କାର୍ଯ୍ୟଶୈଳୀ ଥିଲା -ଦୁଃସାହସିକ, କର୍ମପ୍ରବଣତାପୂର୍ଣ୍ଣ ।

ଜନ୍ମଭୂମି ପାଇଁ ଥିଲା ତାଙ୍କର ଆନ୍ତରିକ ପ୍ରଗାଢ଼ ସ୍ନେହ ଓ ପ୍ରାଣୋତ୍ସର୍ଗ ଭାବନା । ୧୯୧୩ ମସିହାର କଥା, ଯେଉଁ ସମୟରେ ପରିସ୍ଥିତି କ୍ରମେ ତାଙ୍କୁ କଟକ ଛାଡ଼ିବାକୁ ପଡ଼ିଥିଲା । କାରଣ ପାଠ ପଢ଼ିବା ପାଇଁ ତାଙ୍କୁ ସୁଦୂର କୋଲକତାକୁ ଯାତ୍ରା କରିବାର ଥିଲା । ସେତେବେଳେ ସୁଭାଷ ଚନ୍ଦ୍ର ବୋଷ ଏତେ ଭାବପ୍ରବଣ ହୋଇପଡ଼ିଥିଲେ ଯେ, ତାଙ୍କ ଦୁଇ ଆଖିରୁ ଧାର ଧାର ଲୁହ ବହିଯାଇଥିଲା ।

ସେ ନିଜ ଗୁରୁଙ୍କୁ ସର୍ବଦା ଭକ୍ତି କରୁଥିଲେ । ତାଙ୍କର ବାଲ୍ୟକାଳର ଗୁରୁ ବେଣୁମାଧବ ଦାଶଙ୍କୁ ସେ ଯେ ଅତ୍ୟନ୍ତ ଭକ୍ତି କରୁଥିଲେ ତାହା ନୁହେଁ, ତାଙ୍କଦ୍ୱାରା ଅନୁପ୍ରାଣିତ ହୋଇ ଆଧ୍ୟାତ୍ମିକତା ପ୍ରତି ଆକୃଷ୍ଟ ହୋଇଥିଲେ । ପରବର୍ତ୍ତୀ ଜୀବନରେ ଗୁରୁ ବେଣୁମାଧବଙ୍କ ସ୍ମୃତିଚାରଣ କରିବାର ଦୃଷ୍ଟାନ୍ତ ଅଛି ।

ସତ୍ୟର ସନ୍ଧାନୀ ସୁଭାଷ ଚନ୍ଦ୍ର ବୋଷ, ତାଙ୍କର ପ୍ରତିଭାକୁ ବିକଶିତ କରିବାକୁ ଯାଇ ସର୍ବଦା ବିଭିନ୍ନ ତତ୍କାଳୀନ ଗୁରୁମାନଙ୍କ ଦ୍ୱାରା ଅନୁପ୍ରାଣିତ ହୋଇଥିଲେ, ଯଥା – ବିବେକାନନ୍ଦ ଓ ରାମକୃଷ୍ଣ ପରମହଂସ । ଯଦ୍ୱାରା ପରବର୍ତ୍ତୀ ସମୟରେ ତାଙ୍କୁ ଗୃହତ୍ୟାଗ କରି ତୀର୍ଥ ପର୍ଯ୍ୟଟନରେ ଯିବାକୁ ପ୍ରେରଣା ଯୋଗାଇଥିଲା । ଯେଉଁ ସମୟରେ ତାଙ୍କର ବୟସ ମାତ୍ର ସତର ବର୍ଷ ସାବାଳକ ହେବାର ପ୍ରାକ୍ ସମୟରେ ତୀର୍ଥ ପର୍ଯ୍ୟଟନ । ତେଣୁ ଜୀବନ ଦର୍ଶନରେ କି ଅଦ୍ଭୁତ ପରିପକ୍ୱତା !

ସତ୍ୟର ଅନୁସନ୍ଧାନ କରିବା ତାଙ୍କ ଜୀବନର ଥିଲା ବୃହତ୍ ଲକ୍ଷ୍ୟ । ଶୁଣାକଥାକୁ ପାରମ୍ପରିକ ଭାବେ ବିଶ୍ୱାସ କଲେ ମଧ୍ୟ

ସତ୍ୟସନ୍ଧାନ କରିବାର ଇଚ୍ଛା ତାଙ୍କୁ ସଦାସର୍ବଦା ଦୁଃସାହସିକ କର୍ମ ପାଇଁ ପ୍ରେରଣା ଯୋଗାଉଥିଲା । ସେ ମାନସିକ ଶାନ୍ତିଲାଭ କରିବା ପାଇଁ ଦୀକ୍ଷା ଗ୍ରହଣ କରିବା ଉଦ୍ଦେଶ୍ୟରେ ଦୀର୍ଘ ଦୁଇମାସକାଳ ବନାରସ, ଗୟା, ମଥୁରା, ବୃନ୍ଦାବନ, ହରିଦ୍ୱାର, ଋଷିକେଶାଦି ବିଭିନ୍ନ ତୀର୍ଥ ସ୍ଥାନକୁ ଯାତ୍ରା କରିଥିଲେ । ସେଠାକାର ସାଧୁ ସନ୍ନ୍ୟାସୀଙ୍କ ସହିତ ନିବିଡ଼ ମିଳାମିଶା କଲାପରେ ସେ ଏହି ସିଦ୍ଧାନ୍ତରେ ଉପନୀତ ହୋଇଥିଲେ ଯେ, ଗେରୁଆବସ୍ତ୍ର ପରିଧାନକାରୀ ସାଧୁବର୍ଗ ପ୍ରକୃତ ସାଧୁ ନୁହଁନ୍ତି । ତେଣୁ ଶେଷରେ ସେ ଫେରିଆସି ତାଙ୍କ ପଢ଼ାରେ ପୁନଃ ମନୋନିବେଶ କରିଥିଲେ ।

'ତୁଳସୀ ଦୁଇପତ୍ରରୁ ବାସେ' । ଛାତ୍ରାବସ୍ଥାରୁ ସୁଭାଷଙ୍କଠାରେ ବିପ୍ଳବୀ ଲକ୍ଷଣମାନ ପରିଲକ୍ଷିତ ହେଉଥିଲା । ଏଠାରେ କହିବା ବାହୁଲ୍ୟ ହେବ ଯେ, ଶିକ୍ଷକ, ଗୁରୁ, ସାଧୁ ଯେ କେହି ହୁଅନ୍ତୁ, କାହାରି ଔଦ୍ଧତ୍ୟକୁ ମଥାପାତି ବରଦାସ୍ତ କରିବା ତାଙ୍କ ପକ୍ଷରେ ସମ୍ଭବପର ନଥିଲା । ତେଣୁ ସେସମୟରେ ଇଂରାଜୀ ଅଧାପକ ମିଓ୍ୱାଟେନ୍ ତାଙ୍କର ଔଦ୍ଧତ୍ୟ ପାଇଁ ତାଙ୍କୁ ରାସ୍ତା ମଝିରେ ମାଡ଼ମାରି ରାସ୍ତାକଡ଼ର ନର୍ଦ୍ଦମାକୁ ଫିଙ୍ଗି ଦେଇଥିଲେ । ସେଥିପାଇଁ ସୁଭାଷଙ୍କୁ କଲେଜରୁ ବହିଷ୍କୃତ ହେବାକୁ ପଡ଼ିଥିଲା । ଏଥିପାଇଁ ଦେଢ଼ବର୍ଷ ବିଦ୍ୟା ଅଧ୍ୟୟନରୁ ସେ ବିରତ ରହିଥିଲେ । ତତ୍‌ପରେ ସ୍କଟିସ୍ ଚର୍ଚ୍ଚ କଲେଜରେ ନାମ ଲେଖାଇ ପଢ଼ିବାର ସୁଯୋଗ ପାଇଥିଲେ । କିନ୍ତୁ ଦେଢ଼ବର୍ଷର ଏହି ଦୀର୍ଘ ସମୟକୁ ସେ ତାଙ୍କର ଜନ୍ମଭୂମିର ଦରିଦ୍ର ନିଃସହାୟ ଓଡ଼ିଆମାନଙ୍କର ସେବାରେ ନିୟୋଜିତ କରିପାରିଥିଲେ । ଏହି ସମୟରେ ସେ ଏକ ସ୍ୱେଚ୍ଛାସେବକ ବାହିନୀ ଗଠନ କରି ଉପକୂଳ ଅଞ୍ଚଳରେ ବନ୍ୟା ପ୍ରପୀଡିତ ଜନସାଧାରଣଙ୍କ ସେବା ଓ ତତ୍‌ପରେ ଅଗମ୍ୟ ଅଞ୍ଚଳରେ ହଇଜାଦ୍ୱାରା ଆକ୍ରାନ୍ତ ରୋଗୀଙ୍କର ସେବା କରି ନିଜର ଆତ୍ମତୃପ୍ତି ପାଇଥିଲେ ।

ମଣିଷ ଜୀବନରେ ମାନବ ସେବା ହିଁ ମାଧବ ସେବା, ତାହା ସେ ପ୍ରକୃତରେ ହୃଦୟଙ୍ଗମ କରିଥିଲେ । ଯଥାର୍ଥରେ ସଦାସର୍ବଦା ଜନ୍ମଭୂମି, ଜନ୍ମଭୂମିର ନିଃସହାୟ ଗରିବ ସାଧାରଣ ଜନତା ପାଇଁ ତାଙ୍କର ସହୃଦୟତାକୁ ପାଞ୍ଚସଂଖ୍ୟା ଜ୍ୟୋତିଷର ବିଶେଷ ଗୁଣ ବୋଲି ବିବେଚନା କରିବାକୁ ପଡ଼ିବ, ଯାହା ତାଙ୍କ ଜୀବନରେ ଯଥାର୍ଥ ରୂପେ ପ୍ରତିଫଳିତ ହୋଇପାରିଛି ।

୧୯୧୭ ମସିହାରେ ତୃତୀୟ ବାର୍ଷିକ କଳାଶ୍ରେଣୀରେ ପୁନଃପ୍ରବେଶ କଲାପରେ ସୁଭାଷ ପାଠପଢ଼ା ସହିତ ୟୁ.ଟି.ସି. (ବିଶ୍ୱବିଦ୍ୟାଳୟ ସ୍ତରୀୟ ତାଲିମ ସେନା)ରେ ଯୋଗ ଦେଇଥିଲେ, ଯାହା ତାଙ୍କ କର୍ମମୟ ଭବିଷ୍ୟତ ଜୀବନରେ ତାଙ୍କୁ ବିଶେଷ ସାହାଯ୍ୟ କରିଥିଲା । ୧୯୧୯ରେ ସେ ଦର୍ଶନ ଶାସ୍ତ୍ରରେ ପ୍ରଥମ ଶ୍ରେଣୀ ଅନର୍ସ ସହିତ ବି.ଏ. ପାସ୍ କଲାପରେ, ମନୋବିଜ୍ଞାନ ବିଷୟଟିକୁ ସ୍ନାତକୋତ୍ତର ଶ୍ରେଣୀରେ ଚୟନ କରି ବିଦ୍ୟା ଅଧ୍ୟୟନ କରିବାକୁ ମନସ୍ଥିର କରିଥିଲେ । କିନ୍ତୁ ବିଧିର ବିଧାନ ଭିନ୍ନ ଥିଲା ସେସମୟରେ ପ୍ରଥମ ପୃଥିବୀ ମହାସମର ଶେଷ ହୋଇଥିଲା, ତେଣୁ ପିତା ଜାନକୀନାଥ, ସୁଭାଷଙ୍କୁ ଲଣ୍ଡନ ପଠାଇ ଦେଇଥିଲେ । ସେହିବର୍ଷ ଅକ୍ଟୋବର ମାସରେ ସେ କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟରେ ଯୋଗ ଦେଇଥିଲେ । ସେ ସମୟରେ ଓଡ଼ିଶାର ବିଶିଷ୍ଟ ଉଦ୍ଭିଦ ବିଜ୍ଞାନୀ ଡକ୍ଟର ପ୍ରାଣକୃଷ୍ଣ ପରିଜା ତାଙ୍କର ସେଠାକାର ଲୋକାଲ ଗାଡ଼ିଅନ୍ ହେବାର ସୁଯୋଗ ପାଇଥିଲେ ।

ତା'ପରବର୍ଷ ଆଇ.ସି.ଏସ୍. ପରୀକ୍ଷା ଦେଇ ସେଥିରେ ଦ୍ୱିତୀୟ ସ୍ଥାନ ରଖି ଉତ୍ତୀର୍ଣ୍ଣ ହୋଇଥିଲେ । ସେତେବେଳେ ସେ ଚାହିଁଥିଲେ ଉଚ୍ଚପଦବୀରେ ଚାକିରି କରିପାରିଥାନ୍ତେ, ମାତ୍ର ତାଙ୍କୁ ଏପରି ବନ୍ଧନଯୁକ୍ତ ଜୀବନ ଭଲ ଲାଗି ନଥିଲା । ଲୋକମାନ୍ୟ ତିଳକଙ୍କ ଉଦ୍‌ବୋଧନଦ୍ୱାରା କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟରେ ଗଭୀର ଭାବରେ ଅନୁପ୍ରାଣିତ ହୋଇ ସୁଭାଷ ଆଇ.ସି.ଏସ୍. ପଦବୀକୁ ତୁଚ୍ଛ ଜ୍ଞାନ କରି ସେହି ପଦବୀରୁ ଇସ୍ତଫା ଦେବା ପାଇଁ ମାନସିକ ଭାବରେ ସ୍ଥିର କରିନେଇଥିଲେ ।

ଶେଷରେ ୧୯୨୧ ମସିହା ଅପ୍ରେଲ ମାସରେ ସେ ଏହି ଆକର୍ଷଣୀୟ ଚାକିରିରୁ ଇସ୍ତଫା ଦେଇ ଜୁଲାଇ ମାସରେ ଭାରତକୁ ଫେରିଆସିଥିଲେ । ଏଥିପାଇଁ ତାଙ୍କ ପିତା ଜାନକୀନାଥ ଓ ଭାଇ ଶରତଚନ୍ଦ୍ରଙ୍କ ବିଭିନ୍ନ ଆଶ୍ୱାସନାପୂର୍ଣ୍ଣ ପ୍ରଲୋଭନକୁ ମଧ୍ୟ ପ୍ରତ୍ୟାଖ୍ୟାନ କରିବାକୁ ପଡ଼ିଥିଲା । ଦେଶ ମାତୃକାର ଆହ୍ୱାନ ଯେ ତାଙ୍କ ପକ୍ଷରେ ସର୍ବଶ୍ରେଷ୍ଠ ଆହ୍ୱାନ, ତାହା ସେ ହୃଦୟଙ୍ଗମ କରିଥିଲେ ଏବଂ ନିଜ ଜୀବନ କ୍ଷେତ୍ରରେ ତାହା ପ୍ରତିଫଳିତ ଓ ପ୍ରତିପାଦିତ ହୋଇ ପାରିଥିଲା ।

ଦେଶ ପରାଧୀନତା ବଳୟରୁ କିଭଳି ଶୃଙ୍ଖଳମୁକ୍ତ ହେବ, ତାଙ୍କ ମାନସପଟରେ ଏହିପରି ସ୍ୱପ୍ନ ସର୍ବଦା ଉଙ୍କି ମାରୁଥିଲା । ତେଣୁ ସେ ଭାରତରେ ପହଞ୍ଚିବା ପରେ ପ୍ରଥମେ ଦେଶବନ୍ଧୁ ଚିତ୍ତରଞ୍ଜନ ଦାସଙ୍କ ନିକଟକୁ ଧାଇଁଯାଇ ସ୍ୱାଧୀନତା ସଂଗ୍ରାମ ସମ୍ପର୍କରେ ଗଭୀର ଆଲୋଚନା କରିଥିଲେ । ସେହିଦିନଠାରୁ ଉଭୟଙ୍କ ମଧ୍ୟରେ ସହଯୋଗର ସେତୁ ଗଢ଼ି ଉଠିଥିଲା ।

୧୯୨୩ରେ ଦେଶବନ୍ଧୁ ଚିତ୍ତରଞ୍ଜନ ଦାସ ନିଖିଳ ଭାରତ ସ୍ୱରାଜଦଳ ଗଠନ କରି ତହିଁରେ ସଭାପତି ହୋଇଥିଲେ ଏବଂ

ମୋତିଲାଲ ନେହେରୁ ଏହାର ସାଧାରଣ ସମ୍ପାଦକ ରହିଥିଲେ । ସୁଭାଷ କଂଗ୍ରେସ ପ୍ରଚାର ବୋର୍ଡ଼ର ସେକ୍ରେଟାରୀ ଥିବା ସମୟରେ ସ୍ୱରାଜଦଳ ଗଠନରେ ମଧ୍ୟ ପ୍ରମୁଖ ଭାଗ ନେଇଥିଲେ । ଦିଲ୍ଲୀଠାରେ ଅନୁଷ୍ଠିତ କଂଗ୍ରେସ ସ୍ୱତନ୍ତ୍ର ଅଧିବେଶନରେ ସ୍ୱରାଜଦଳର ସାମ୍ବିଧାନିକ ସଂଘର୍ଷ ନୀତି ଏକ ପ୍ରସ୍ତାବ ରୂପେ ଗୃହୀତ ହେବାପରେ ଏହି ଦଳ ପକ୍ଷରୁ 'ଫରୱାର୍ଡ଼' ନାମକ ଇଂରାଜୀ ଦୈନିକ ପତ୍ରିକା ପ୍ରକାଶ କରାଯାଇଥିଲା, ଯାହାର ସମସ୍ତ ଦାୟିତ୍ୱ ସୁଭାଷଙ୍କ ଉପରେ ଅର୍ପଣ କରାଯାଇଥିଲା ।

୧୯୨୪ ମସିହାରେ ସି.ଇ.ଓ. (ଚିଫ୍ ଏକଜିକ୍ୟୁଟିଭ୍ ଅଫିସର) ପଦରେ ସୁଭାଷ ବୋଷ କଲିକତା କର୍ପୋରେସନରେ ନିଯୁକ୍ତି ପାଇ ଲୋକମାନଙ୍କ ସେବା କରିବାରେ ନିଜକୁ ନିୟୋଜିତ କରିଥିଲେ । ସେସମୟରେ ତାଙ୍କର ପ୍ରିୟସଖା ଦେଶବନ୍ଧୁ ଚିତ୍ତରଂଜନ ମେୟର ପଦରେ ଅଧିଷ୍ଠିତ ହୋଇଥିଲେ । ନିଷ୍ଠାପର ଜନସେବା ସୁଭାଷଙ୍କ ଲୋକପ୍ରିୟତାକୁ ଅନେକ ଗୁଣରେ ବଢ଼ାଇ ଦେବାରୁ ଚକ୍ରାନ୍ତକାରୀ ବ୍ରିଟିଶ ସରକାରଙ୍କ ଭୟ ଓ ଆଶଙ୍କାକୁ ମଧ୍ୟ ବହୁଗୁଣରେ ବଢ଼ାଇ ଦେଇଥିଲା । ତେଣୁ ୧୯୨୪ରେ ତାଙ୍କୁ ବନ୍ଦୀ କରାଯାଇଥିଲା ଏବଂ ଏଥିପାଇଁ ତାଙ୍କୁ ବର୍ମା (ଅଧୁନା ମିଆଁମାର) ଯିବାକୁ ପଡ଼ିଥିଲା ।

ବନ୍ଧୁ ତଥା ଗୁରୁ ଚିତ୍ତରଂଜନଙ୍କ ବିରହରେ ସେ ଅତ୍ୟନ୍ତ ମ୍ରିୟମାଣ ତଥା ମର୍ମାହତ ହୋଇଯାଇଥିଲେ, ଯାହା ଫଳରେ ତାଙ୍କର ସ୍ୱାସ୍ଥ୍ୟାବସ୍ଥାର ଅବନତି ମଧ୍ୟ ଘଟିଥିଲା । ଏହାର କିଛି ଦିନ ପରେ ସେ ସୁସ୍ଥ ହେଲା ବେଳକୁ ଜାତୀୟ କଂଗ୍ରେସର ଅବସ୍ଥା ଅତ୍ୟନ୍ତ ଶୋଚନୀୟ ହୋଇପଡ଼ିଥିଲା । ବିଶେଷ କରି ମହାତ୍ମାଗାନ୍ଧୀ ସକ୍ରିୟ ରାଜନୀତିରୁ ଓହରିଯିବାକୁ ସେ ଗୁରୁତ୍ୱହୀନ ଭାବରେ ଗ୍ରହଣ କରି ଅତ୍ୟନ୍ତ ନିଷ୍ଠା ଓ ଦୃଢ଼ ଭାବରେ ସ୍ୱାଧୀନତା ପାଇଁ କାର୍ଯ୍ୟ ଆରମ୍ଭ କରିଦେଇଥିଲେ । ସେହି ସମୟରେ ସେ କେବଳ ରାଜନୈତିକ ସ୍ୱାଧୀନତା ଚାହିଁ ନଥିଲେ, ବରଂ ତା' ସହିତ ସ୍ୱରାଜ ଗଠନର ଚିନ୍ତା ମଧ୍ୟ ତାଙ୍କ ମନରେ ବସା ବାନ୍ଧିଥିଲା ।

ଏକ ଓଜସ୍ୱିନୀ ଭାଷଣ ପ୍ରଦାନ ବେଳେ ସେ ଯଥାର୍ଥରେ କହିଥିଲେ, ମୋତେ ରକ୍ତ ଦିଅ, ମୁଁ ତୁମ୍ଭମାନଙ୍କୁ ସ୍ୱାଧୀନତା ଦେବି । ତେଣୁ ସଶସ୍ତ୍ର ସମରନୀତିର ପୃଷ୍ଠଭୂମିରେ ଶାନ୍ତି ଅହିଂସାର ମାର୍ଗ ତାଙ୍କ ପାଇଁ ଅବାସ୍ତବ ଥିଲା ।

୧୯୨୯ ନଭେମ୍ବରରେ ନାଗପୁର ଯୁବସମ୍ମିଳିନୀରେ ଯୁବକମାନଙ୍କୁ ତାଙ୍କ ଭାଷଣ ମାଧ୍ୟମରେ ଉଦ୍‌ବୋଧନ ଦେଇ କହିଥିଲେ, ଧ୍ୱଂସ ସାଧନ ବିନା ଆପଣମାନେ ଏକ ନୂତନ ସୃଷ୍ଟି ଲାଭ କରିପାରିବେ ନାହିଁ । ଆମେ ଯଦି ବିଶ୍ୱାସ କରିବା ଯେ, ଧ୍ୱଂସ ବିନା ସୃଷ୍ଟି ସମ୍ଭବ ତେବେ ଆମେ ଶୋଚନୀୟ ଅପରାଧ କରିବା ।

ପ୍ରକୃତରେ ଏହାର ପରବର୍ତ୍ତୀ ସମୟରେ ସ୍ୱାଧୀନତା ଆନ୍ଦୋଳନ ଅଧିକ ତୀବ୍ର ଗତିଶୀଳ ହେବାକୁ ଲାଗିଥିଲା । ସମଗ୍ର ଦେଶରେ ପୌରଆଇନ ଅମାନ୍ୟ ଆନ୍ଦୋଳନ ସାଙ୍ଗକୁ ଲବଣ ସତ୍ୟାଗ୍ରହ ଆନ୍ଦୋଳନ ଚତୁର୍ଦ୍ଦିଗକୁ ବ୍ୟାପିଯାଇଥିଲା । ୧୯୩୧ ମସିହା ମାର୍ଚ୍ଚ ୫ ତାରିଖରେ ସଂପାଦିତ ଗାନ୍ଧୀ–ଇର୍‌ୱିନ୍ ଚୁକ୍ତି ଦ୍ୱିତୀୟ ଗୋଲ ଟେବୁଲ ବୈଠକ ପରେ ନିଷ୍ଫଳ ବା ନିଷ୍ପ୍ରଭ ହୋଇଯାଇଥିଲା ।

୧୯୩୨ ମସିହା ଜାନୁଆରୀ ୫ ତାରିଖରେ ସୁଭାଷ ଚନ୍ଦ୍ର ବୋଷଙ୍କୁ ପୁନର୍ବାର ବନ୍ଦୀ କରାଗଲା । ମୁମ୍ବାଇର କଲ୍ୟାଣ ଷ୍ଟେସନଠାରେ ତାଙ୍କୁ ବନ୍ଦୀ କରାଯାଇ ହାଜତକୁ ନିଆଯାଇଥିଲା । ସେ ସିଓନ୍ ଜେଲରେ ରହିବା ସମୟରେ ତାଙ୍କ ସ୍ୱାସ୍ଥ୍ୟାବସ୍ଥାର ଅବନତି ଘଟିଥିଲା । ଇଂରେଜମାନେ ଚିକିତ୍ସା କରିବା ପାଇଁ ତାଙ୍କୁ ବିଲାତ ନେଇଯାଇଥିଲେ । ୧୯୩୩ ମସିହା ମାର୍ଚ୍ଚ ମାସରେ ସେ ଭିଏନାରେ ପହଞ୍ଚିଥିଲେ ।

ବିଠଲଭାଇ ପଟେଲଙ୍କର ସହିତ ସେଠାରେ ଆଲୋଚନା କରି ବିଶ୍ୱରାଜନୈତିକ ପରିସ୍ଥିତିକୁ ଅନୁଧ୍ୟାନ କରିଥିଲେ । 'ଭାରତୀୟ ସଂଘର୍ଷ' ନାମକ ଏକ ପୁସ୍ତକରେ ସେ ତାଙ୍କର ଚିନ୍ତାଧାରାର ଅବତାରଣା କରିବାର ପ୍ରଚେଷ୍ଟା ଜାରି ରଖିଥିଲେ । ସାମାନ୍ୟ ସୁସ୍ଥତା ଅନୁଭବ ପରେ, ୧୯୩୬ ମସିହା ଅପ୍ରେଲ ମାସରେ ଭାରତକୁ ପୁନଃ ପ୍ରତ୍ୟାବର୍ତ୍ତନ କରିଥିଲେ ।

ଦୁଃଖର କଥା ତତ୍‌କାଳୀନ ଭାରତର ଦ୍ୱାର, ମୁମ୍ବାଇ ବନ୍ଦରରେ ପହଞ୍ଚିଲା ବେଳକୁ ବ୍ରିଟିଶ୍ ପୋଲିସ ସୁଭାଷଙ୍କୁ ପୁନର୍ବାର ବନ୍ଦୀ କରି କାରାଗାରକୁ ନେଇଯାଇଥିଲେ । ମାସକ ପରେ ପୁଣି ରୋଗଗ୍ରସ୍ତ ହୋଇ ସେ କଲିକତା ମେଡ଼ିକାଲରେ ଏକ ବର୍ଷରୁ ଅଧିକ କାଳ ଚିକିତ୍ସିତ ହୋଇଥିଲେ । କିନ୍ତୁ ସ୍ୱାସ୍ଥ୍ୟର ଉନ୍ନତି ନହେବାରୁ ୧୯୩୭ ନଭେମ୍ବରରେ ପୁଣି ସୁଦୂର ଲଣ୍ଡନ ଯାତ୍ରା କରିଥିଲେ । ଲଣ୍ଡନରେ ରହିବା ସମୟରେ ତାଙ୍କ ସ୍ୱାସ୍ଥ୍ୟ ଅବସ୍ଥାକୁ ନେଇ ଯେତିକି ବିବ୍ରତ ନଥିଲେ, ତାଠାରୁ ଅଧିକ ଧ୍ୟାନ ଦେଉଥିଲେ, ବିଶ୍ୱ ସମସ୍ୟାକୁ ନେଇ । ତାହାକୁ ହୃଦୟଙ୍ଗମ କରି ୨ୟ ବିଶ୍ୱଯୁଦ୍ଧର ଆଶଙ୍କା ତାଙ୍କ ମନରେ ଉଙ୍କିମାରିଥିଲା । ତତ୍‌କାଳୀନ ଅଶାନ୍ତ ପରିସ୍ଥିତିର ସୁଯୋଗ ନେଇ ଭାରତକୁ କିପରି ସ୍ୱାଧୀନ କରିହେବ, ତାହା ସେ ଗଭୀର ଭାବରେ ଚିନ୍ତା କରିଥିଲେ । ୧୯୩୮ ମସିହାରେ ହରିପୁର

ଅଧିବେଶନରେ କଂଗ୍ରେସର ସଭାପତି ପାଇଁ ସେ ନିର୍ବାଚିତ ହୋଇଥିବା ସମ୍ବାଦ ପାଇ ଭାରତ ଫେରି ଆସିଥିଲେ ।

ସେସମୟରେ ଭାରତୀୟ କଂଗ୍ରେସର ତୁଙ୍ଗକର୍ମୀବୃନ୍ଦଙ୍କ ସହିତ ତାଙ୍କର ମତପାର୍ଥକ୍ୟ ଦେଖାଦେଇଥିଲା, ଯାହା ଦିନକୁ ଦିନ ଅଧିକ ତୀବ୍ରତର ହୋଇଥିଲା । ସେସମୟକୁ ୨ୟ ବିଶ୍ୱଯୁଦ୍ଧର ଆରମ୍ଭ ଓ ଅସହଯୋଗ ଆନ୍ଦୋଳନର ବ୍ୟାପକତା ଦେଖାଦେବାରୁ ପୁଣିଥରେ ସୁଭାଷ ବୋଷଙ୍କୁ ଅନ୍ୟ ନେତୃବୃନ୍ଦଙ୍କ ସହିତ ଜେଲ୍‌ଜୀବନ କଟାଇବାକୁ ପଡ଼ିଥିଲା ।

ବ୍ରିଟିଶମାନଙ୍କ ଶତ୍ରୁପକ୍ଷଙ୍କ ସହିତ ହାତ ମିଳାଇ କିପରି ଦେଶକୁ ସ୍ୱାଧୀନ କରିହେବ, ଏହା ସେ ଚିନ୍ତା କରି ମନରେ ଏକ ଗୁରୁତ୍ୱପୂର୍ଣ୍ଣ ଯୋଜନା ପ୍ରସ୍ତୁତ କରିଥିଲେ । ଛଳନା ପୂର୍ବକ ଜେଲରେ ସେ ଆମରଣ ଅନଶନ ଆରମ୍ଭ କରିଦେଲେ । ଫଳରେ ମାତ୍ର ଷୋଳ ଦିନର ଅନଶନ ପରେ ତାଙ୍କୁ କାରାମୁକ୍ତ କରି ଦିଆଯାଇଥିଲା ।

୧୯୪୦ ମସିହା ଡିସେମ୍ବର ୫ ତାରିଖ ଅର୍ଥାତ୍ କାରାମୁକ୍ତ ହେବା ଦିନଠାରୁ ତାଙ୍କୁ ବ୍ରିଟିଶ୍ ସରକାର ଦୃଢ଼ ନଜର ବନ୍ଦୀରେ ରଖିଥିଲେ । ମାତ୍ର ସେ ବିଭିନ୍ନ ଛଳନାର ଅବତାରଣା କରି ଛଦ୍ମବେଶରେ ଭାରତଛାଡ଼ି ବିଦେଶ ଯିବାର ପ୍ରଚେଷ୍ଟା ଜାରି ରଖିଥିଲେ । କେତେବେଳେ ସେ ସନ୍ନ୍ୟାସୀ ହୋଇ ହିମାଳୟ ଚାଲିଯିବା, ସତ୍ୟାଗ୍ରହ ଆନ୍ଦୋଳନ ସଙ୍ଗଠନର ପୁରୋଧା ବା ରୋଗଗ୍ରସ୍ତ ରୋଗୀ ହୋଇ ଚିକିତ୍ସିତ ହେବାର ଅଭିନୟ କରୁଥିଲେ । ଯାହେଉ ଦେଶରେ ୧୯୪୧ ମସିହା ଜାନୁଆରୀ ୧୭ ତାରିଖରେ ବ୍ରିଟିଶ୍ ସରକାରଙ୍କ ଆଖିରେ ଧୂଳି ଦେଇ ଛଦ୍ମବେଶରେ ଭାରତ ଛାଡ଼ି ବିଦେଶ ଚାଲିଯାଇଥିଲେ । ଦଶଦିନ ପର୍ଯ୍ୟନ୍ତ ବ୍ରିଟିଶ ସରକାରଙ୍କୁ ସେ ଅନ୍ଧାରରେ ରଖିପାରିଥିଲେ ।

ଦଶଦିନ ମଧ୍ୟରେ ସେ କାବୁଲ ବାଟ ଦେଇ ସେଠାରୁ ଇଟାଲୀୟ ପାସ୍‌ପୋର୍ଟ ଯୋଗାଡ଼ କରି ବର୍ଲିନ୍‌ରେ ପହଞ୍ଚିସାରିଥିଲେ । କି ଦୁଃସାହସିକ ପଦକ୍ଷେପ, ମାଟିମାର, ଦେଶମାତୃକାର ସ୍ୱାଧୀନତା ପାଇବା ପାଇଁ ବିଦେଶରେ ହିଟଲରଙ୍କ ସହିତ ବନ୍ଧୁତା ସ୍ଥାପନ କରି 'ଫ୍ରିଇଣ୍ଡିଆ ସେଣ୍ଟର' ଖୋଲିଥିଲେ । ସମସ୍ତ ଭାରତୀୟ ବନ୍ଦୀ ସୈନିକମାନଙ୍କୁ ନେଇ ସେ 'ଆଜାଦ୍ ହିନ୍ଦ୍ ଫୌଜ' ଗଢ଼ିଥିଲେ । ଜାପାନ ଦେଇ ଭାରତର ଉତ୍ତର ପୂର୍ବରେ ଥିବା ମଣିପୁର ପର୍ଯ୍ୟନ୍ତ ଆଜାଦ୍ ହିନ୍ଦ୍ ଫୌଜ ମାଡ଼ିଆସିଥିଲେ । ଉକ୍ତ 'ଆଜାଦ୍ ହିନ୍ଦ୍ ଫୌଜ'ରେ ଅନେକ ମହୀୟସୀ ମହିଳା ମଧ୍ୟ ଭାଗ ନେଇଥିଲେ, ସେମାନଙ୍କ ମଧ୍ୟରେ ଡକ୍ଟର ଲକ୍ଷ୍ମୀ ସେହଗଲ ନାମ ଅବିସ୍ମରଣୀୟ ।

ମାତ୍ର ଅତ୍ୟନ୍ତ ଦୁଃଖ ଓ ପରିତାପର ସହିତ କହିବାକୁ ହେଉଛି ଯେ, ମୁକ୍ତି ସଂଗ୍ରାମର ମହାନ ଯୋଦ୍ଧା ତଥା ଅଗ୍ନି ସ୍ଫୁଲିଙ୍ଗର ପ୍ରତୀକଙ୍କ ଅନ୍ତିମ ଜୀବନାବସାନ ଆଜି ମଧ୍ୟ ରହସ୍ୟାବୃତ୍ତ । ପାରିପାର୍ଶ୍ୱିକ ପରିସ୍ଥିତିକୁ ଅନୁଧ୍ୟାନ କରି ୧୯୪୫ ମସିହାରେ ଏକ ଉଡ଼ାଜାହାଜ ଦୁର୍ଘଟଣାରେ ପରଲୋକ–ଗତ ହୋଇଥିବା ଅନୁମାନ କରାଯାଏ ।

କିନ୍ତୁ ତାଙ୍କୁ ଭଲ ପାଉଥିବା ଅସଂଖ୍ୟ ଜନସାଧାରଣ ଘଟଣାଟିକୁ ସହଜରେ ବିଶ୍ୱାସ କରିବାକୁ ପ୍ରସ୍ତୁତ ନୁହଁନ୍ତି । ତାଙ୍କର କାର୍ଯ୍ୟଧାରା ଦେଶବାସୀଙ୍କ ପାଇଁ ଥିଲା ଅତ୍ୟନ୍ତ ଚମକପ୍ରଦ ଓ ରହସ୍ୟାବୃତ୍ତ । ତେଣୁ ଅନେକ ଦେଶପ୍ରେମୀ ଓ ସୁଭାଷ ପ୍ରେମୀ ନାଗରିକ ତାଙ୍କର ମୃତ୍ୟୁର ରହସ୍ୟକୁ ଲୋକଲୋଚନକୁ ଆଣିବାକୁ ଏବେ ମଧ୍ୟ କେନ୍ଦ୍ର ସରକାରଙ୍କୁ ବାରମ୍ବାର ଅନୁରୋଧ କରି ଆସୁଛନ୍ତି । ସୂଚନା ଅଧିକାର ନିୟମ ୨୦୦୫ ଲାଗୁହେବା ପରେ ଅନେକ ନାଗରିକ, ଅନେକ ଅଜଣା କଥାର ସୂଚନା ପାଇବା ପାଇଁ ବ୍ୟାକୁଳ ହୋଇ ଆବେଦନ କରିଆସୁଛନ୍ତି ।

ଏହା ମଧ୍ୟରେ ନେତାଜୀଙ୍କ ଜନ୍ମ ଶତବାର୍ଷିକୀ ରାଜ୍ୟ ତଥା ଦେଶବାସୀମାନେ ପାଳନ କରିଥିଲେ । ତାଙ୍କର ଜନ୍ମସ୍ଥାନ କଟକସ୍ଥ ଓଡ଼ିଆ ବଜାର 'ନେତାଜୀ ସଂଗ୍ରହାଳୟ' ନାମରେ ନାମିତ କରାଯାଇ, ଏହା ମଧ୍ୟରେ ଅନେକ ଗୁଡ଼ିଏ କାର୍ଯ୍ୟ କରାଯାଇଅଛି । ଲାଇଟ ଆଣ୍ଡ୍ ସାଉଣ୍ଡ୍ ମାଧ୍ୟମରେ ନେତାଜୀଙ୍କ ଜୀବନାଦର୍ଶକୁ ପର୍ଯ୍ୟଟକମାନଙ୍କୁ ଦେଖିବାର ସୁଯୋଗ ମିଳିପାରୁଛି ।

ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କ ପ୍ରେରଣାଦାୟକ ବଳିଷ୍ଠ ଅବଦାନ ପାଇଁ ସ୍ୱାଧୀନତା ସଂଗ୍ରାମର ଇତିହାସ ସହିତ ସମଗ୍ର ବିଶ୍ୱଇତିହାସରେ ସେ ଜଣେ ଅଦ୍ୱିତୀୟ ଓ ଅନନ୍ୟ ସାଧାରଣ ହୋଇ ରହିଥିବେ । ସେ କେବଳ ଜେଣ ବିପ୍ଳବୀ ବୀର ନଥିଲେ, ବିଜ୍ଞ, ରାଜନୀତିଜ୍ଞ, ଓଜସ୍ୱିନୀ ବକ୍ତା, ପ୍ରଭାବଶାଳୀ ନେତା, ଯାହାଙ୍କୁ ଇଂରେଜ ଶାସକମାନେ ସର୍ବଦା ଭୟ କରୁଥିଲେ । ଯେଉଁଥିପାଇଁ ୧୯୪୭ ମସିହା ଅଗଷ୍ଟ ପନ୍ଦରରେ ଭାରତ ସ୍ୱାଧୀନ ହେବା ହୁଏତ ସମ୍ଭବପର ହୋଇପାରିଥିଲା । ଏକଦା ଜଣେ ବ୍ରିଟିଶ୍ କୂଟନୀତିଜ୍ଞଙ୍କ ମନ୍ତବ୍ୟ ଥିଲା, ମହାତ୍ମାଗାନ୍ଧୀଙ୍କ ଅହିଂସା ଆନ୍ଦୋଳନ ସହିତ ନେତାଜୀଙ୍କ ବିଚକ୍ଷଣ କ୍ରିୟାକଳାପ ସେମାନଙ୍କୁ ଭାରତ ଛାଡ଼ିବାକୁ ବାଧ୍ୟ କରିଥିଲା ।

ସେକ୍ଟର –୯, ସି.ଡ଼ି.ଏ.
ମର୍କତନଗର, କଟକ –୧୪

# ଜ୍ୟୋତିର୍ବିଜ୍ଞାନୀ ପଠାଣି ସାମନ୍ତ

ସ୍ନେହଲତା ଆଚାର୍ଯ୍ୟ

ଆମେ ସମସ୍ତେ ଏହି ବିଜ୍ଞାନ ଯୁଗର ମଣିଷ । ଛୋଟିଆ ଆଲ୍‌ପିନ୍‌ଠାରୁ ଆରମ୍ଭ କରି ମହାକାଶ ଅଭିଯାନରେ ବ୍ୟବହୃତ ରକେଟ ଏହି ବିଜ୍ଞାନର ଅବଦାନ । ଯଦିଓ ବିଜ୍ଞାନ ଆଜି ଉତ୍କର୍ଷର ଶୀର୍ଷରେ ପହଞ୍ଚି ପାରିଛି ତଥାପି ଏହାର ମୂଳ କେଉଁଠାରେ ରହିଛି ତାହା ଯଦି ଆମେ ଖୋଜିବାକୁ ଚେଷ୍ଟା କରିବା, ତେବେ ଅନେକଗୁଡ଼ିଏ ନୂତନ ତଥ୍ୟ ଜାଣିବାକୁ ମିଳିବ । ବିଜ୍ଞାନ ବିନା ଉନ୍ନତି ଅସମ୍ଭବ ଏହା ଆଜି ପ୍ରମାଣିତ ହୋଇପାରିଛି । କିନ୍ତୁ ବିଜ୍ଞାନର ଏହି ଉନ୍ନତି ପାଇଁ ଯେଉଁମାନଙ୍କର ଅବଦାନ ଚିର ସ୍ମରଣୀୟ ସେମାନଙ୍କ ମଧ୍ୟରେ ଆମ ରାଜ୍ୟ ଓଡ଼ିଶାର ପ୍ରଥମ ବୈଜ୍ଞାନିକ ତଥା ଜ୍ୟୋତିର୍ବିଜ୍ଞାନୀ ପଠାଣି ସାମନ୍ତଙ୍କ ନାମ ଉଲ୍ଲେଖଯୋଗ୍ୟ । ଦୁଇଟି ବାଉଁଶ ନଳୀ ଓ ଗୋଟିଏ କାଠି ସାହାଯ୍ୟରେ ସେ ଗ୍ରହ ନକ୍ଷତ୍ରମାନଙ୍କର ଦୂରତା ମାପିବାରେ ସଫଳ ହୋଇ ଜ୍ୟୋତିର୍ବିଜ୍ଞାନକୁ ଏକ ଦିଗ୍‌ଦର୍ଶନ ଦେଇଛନ୍ତି କହିଲେ ଅତ୍ୟୁକ୍ତି ହେବ ନାହିଁ । ଏହି ଯୋଗଜନ୍ମା ପୁରୁଷ ପଠାଣି ସାମନ୍ତ ଆମ ଓଡ଼ିଶାର ଖଣ୍ଡପଡ଼ା ଅନ୍ତର୍ଗତ ଖଣ୍ଡପଡ଼ାଠାରେ ୧୮୩୫ ମସିହା ଡିସେମ୍ବର ୨୩ ପୌଷ, କୃଷ୍ଣ ଅଷ୍ଟମୀ ତିଥିରେ ପିତା ଶ୍ୟାମବନ୍ଧୁଙ୍କ ଔରସରୁ ଏବଂ ମାତା ଧରାକୋଟ ରାଜଜେମା ବିଷ୍ଣୁ ମାଳୀ ଦେବୀଙ୍କ କୋଳ ମଣ୍ଡନ କରି ଭୂମିଷ୍ଠ ହୋଇଥିଲେ । ପଠାଣି ସାମନ୍ତଙ୍କର ପୂରା ନାମ ମହାମହୋପାଧ୍ୟାୟ ସାମନ୍ତ ଚନ୍ଦ୍ରଶେଖର ସିଂହ ହରିଚନ୍ଦନ ମହାପାତ୍ର । ମହାମହୋପାଧ୍ୟାୟ ତାଙ୍କୁ ଉପାଧି ମିଳିଥିଲା । ସାମନ୍ତ ଓ ହରିଚନ୍ଦନ ତାଙ୍କର ରାଜବଂଶର ଉପାଧି ।



ତାଙ୍କ ପିତା ଚନ୍ଦ୍ରଶେଖର ଓ ବିଷ୍ଣୁମାଳୀ ଦେବୀଙ୍କର ନଅଟି କନ୍ୟା ସନ୍ତାନ ଓ ଗୋଟିଏ ପୁତ୍ର ସନ୍ତାନ ଥିଲେ । ସେଥିମଧ୍ୟରୁ ଶେଷ ଦୁଇ କନ୍ୟା ଓ ପୁତ୍ର ସନ୍ତାନଙ୍କର ଅସମୟରେ ମୃତ୍ୟୁ ହୋଇଥିବାରୁ ପିତା ମାତା ଉଭୟ ଭାଙ୍ଗି ପଡ଼ିଲେ । ରାମେଶ୍ୱର ମହାଦେବ (କେହି କେହି ଚନ୍ଦ୍ରଶେଖର ମଧ୍ୟ କହନ୍ତି)ଙ୍କ କୃପାରୁ ତାଙ୍କର ପୁତ୍ର ସନ୍ତାନ ହୋଇଥିବାରୁ ତାଙ୍କ ନାମ ଚନ୍ଦ୍ରଶେଖର ରଖିଲେ । କିନ୍ତୁ ପ୍ରଥମ ପୁତ୍ର ମରି ଯାଇଥିବାରୁ ତାଙ୍କୁ ଗୋଟିଏ ପଠାଣ ଘରକୁ ବିକ୍ରି କରିଦେଇଥିଲେ । ତେଣୁ ସେହିଦିନଠାରୁ ସେ ପଠାଣି ସାମନ୍ତ ନାମରେ ପରିଚିତ ହେଲେ । ଦୁଇଖଣ୍ଡ କାଠି ସାହାଯ୍ୟରେ ଗ୍ରହନକ୍ଷତ୍ରଙ୍କର ଗତିବିଧି ସ୍ଥିର କରି ସମଗ୍ର ବିଶ୍ୱକୁ ଯେ ଦିନେ ଚକିତ କରିଦେବେ ଏକଥା କେହି କଳ୍ପନା ମଧ୍ୟ କରି ନ ଥିଲେ ।

ପିତାମାତାଙ୍କର ମହନୀୟ ଚରିତ୍ର ଦ୍ୱାରା ପଠାଣି ସାମନ୍ତ ପ୍ରଭାବିତ ହୋଇଥିଲେ । ଚନ୍ଦ୍ରଶେଖର ପିଲାଦିନୁ ନମ୍ର,ଭଦ୍ର ଓ ମେଧାବୀ ଥିଲେ । ତୁଳସୀ ଦୁଇପତ୍ରରୁ ବାସିଲା ପରି ପଠାଣି ସାମନ୍ତଙ୍କ ପ୍ରତିଭା ଜନ୍ମବେଳରୁ ହିଁ ପ୍ରସ୍ଫୁଟିତ ହୋଇଥିଲା । ତାଙ୍କର ସ୍ମୃତିଶକ୍ତି ମଧ୍ୟ ପ୍ରଖର ଥିବାରୁ ୫ ବର୍ଷ ବୟସରେ ଗ୍ରାମ ଚାଟଶାଳୀରେ ଶିକ୍ଷାଲାଭ କରି ସାତ ବର୍ଷ ବୟସ ବେଳକୁ ସେ ଅନେକ ବିଷୟରେ ଜ୍ଞାନ ଅର୍ଜନ କରି ସାରିଥିଲେ । ପିତା ଶ୍ୟାମବନ୍ଧୁ ଜଣେ ଜ୍ୟୋତିଷ ଥିଲେ । ତେଣୁ ବାଲ୍ୟକାଳରୁ ସେ ଜ୍ୟୋତିଷ ବିଦ୍ୟା ପ୍ରତି ବିଶେଷ ଆଗ୍ରହ ଦେଖାଇଥିଲେ । ତାଙ୍କୁ ଛଅ ସାତ ବର୍ଷ ହେଲା ବେଳକୁ ସେ ଦିନରେ ଶୁକ୍ର ତାରାଙ୍କୁ ଦେଖିପାରିଥିଲେ । ତେଣୁ ତାଙ୍କ ପିତା

ପଠାଣିଙ୍କୁ ଅନେକ ତାରାଙ୍କ ସହିତ ମଧ୍ୟ ପରିଚୟ କରାଇ ଦେଇଥିଲେ । ଏପରିକି ତାଙ୍କୁ ୧୦ ବର୍ଷ ବୟସ ବେଳକୁ ସେ ବିବାହ ମେଳକ, ରାଶି ଗଣନା ଏବଂ କୌଣସି ବ୍ୟକ୍ତିର କର, କପାଳ କୋଷ୍ଠୀ ଦେଖି ଭବିଷ୍ୟତ କଥା ନିର୍ଭୁଲ ଭାବରେ ଗଣନା କରିବାର କ୍ଷମତା ଅକ୍ତିଆର କରିପାରିଥିଲେ । ତେଣୁ ସେ ସମସ୍ତଙ୍କ ପ୍ରିୟଭାଜନ ହୋଇପାରିଥିଲେ ।

ବାଲ୍ୟକାଳରୁ ହିଁ ଚନ୍ଦ୍ରଶେଖର ବିଭିନ୍ନ ପଦାର୍ଥର ଛାଇ ମାପିବାକୁ ଭଲପାଉଥିଲେ । ଦିନ ଭିତରେ ଗଛର ଛାଇ କେତେବେଳେ ଓ କେଉଁଠି ପଡୁଥିଲା ତାହା ସେ ଜାଣିପାରୁଥିଲେ । ଏପରିକି ସାଙ୍ଗମାନଙ୍କ ସହ ଖେଳିଲା ବେଳେ ମଧ୍ୟ ଆକାଶରେ ଉଡୁଥିବା ପକ୍ଷୀମାନଙ୍କୁ ନିର୍ଭୁଲ ଭାବରେ ଜାଣିପାରୁଥିଲେ ଏବଂ ସେମାନଙ୍କ ଦୂରତା ମାପି ପାରୁଥିଲେ ।

ପନ୍ଦର ବର୍ଷ ବୟସ ବେଳକୁ ସେ ନକ୍ଷତ୍ର ପରିଚୟ ଜାତକାଳଙ୍କାର, ବୃଦ୍ଦଜ୍ଜାତକ ଜ୍ୟୋତିଷ ଚନ୍ଦ୍ରୋଦୟ ଆଦି ଗ୍ରନ୍ଥ ପଢ଼ି ସାରିଥିଲେ । ପରେ ପରେ ସେ ସର୍ବାର୍ଥ ଚିନ୍ତାମଣି, ଉତଦୟ ପ୍ରଦୀପ, ଜ୍ୟୋତିବିଦ୍ୟାଭରଣ, ଲଘୁଜାତକ, ଜ୍ୟୋତିଷାର୍ଣ୍ଣବ ଇତ୍ୟାଦି ଅନେକ ଗ୍ରନ୍ଥ ଅଧ୍ୟୟନ କରିସାରିଥିଲେ ।

ଜ୍ୟୋତିଷ ଶାସ୍ତ୍ର ଦୁଇ ଭାଗରେ ବିଭକ୍ତ । ଗଣିତ ଜ୍ୟୋତିଷ ଓ ଫଳିତ ଜ୍ୟୋତିଷ । ଗଣିତ ଜ୍ୟୋତିଷ ଦ୍ୱାରା ସୂର୍ଯ୍ୟ ଚନ୍ଦ୍ରଙ୍କର ସ୍ଥିତି ଓ ଗ୍ରହମାନଙ୍କର ଚଳନ ନିର୍ଣ୍ଣୟ କରାଗଲା ବେଳେ ଫଳିତ ଜ୍ୟୋତିଷରେ ଗ୍ରହମାନଙ୍କ ରାଶିଚକ୍ରର ଅବସ୍ଥାନ, ଶୁଭଫଳ କି ଅଶୁଭ ଫଳ ଦିଏ ତାହା ବିଚାର କରାଯାଏ ।

ପଠାଣି ସାମନ୍ତଙ୍କର ଗଣିତରେ ଅଗାଧ ପାଣ୍ଡିତ୍ୟ ଥିବାରୁ ସେ ନିର୍ଭୁଲ ଗଣନା କରିପାରୁଥିଲେ । ତାଙ୍କର ଏହି ନିର୍ଭୁଲ ଗଣନାରେ ମୁଗ୍ଧ ହୋଇ ତତ୍କାଳୀନ ପୁରୀ ରାଜା ପଠାଣି ସାମନ୍ତଙ୍କୁ 'ହରିଚନ୍ଦନ ମହାପାତ୍ର' ଉପାଧିରେ ଭୂଷିତ କରିଥିଲେ ଏବଂ ତାଙ୍କରି ପଞ୍ଜିକା ପ୍ରାୟ ସର୍ବତ୍ର ବ୍ୟବହାର କରାଯାଉଛି ।

ଦିନରାତି ଆକାଶକୁ ଚାହିଁ ସୂର୍ଯ୍ୟ, ଚନ୍ଦ୍ର, ଗ୍ରହ ଓ ତାରାମାନଙ୍କର ଗତିବିଧି ସେ ଲକ୍ଷ୍ୟ କରୁଥିଲେ । ପଠାଣି ସାମନ୍ତ ଆକାଶକୁ ଚାହିଁବା ପାଇଁ ଗୋଳଯନ୍ତ୍ର ଓ ସମୟ ଜାଣିବା ପାଇଁ ସୂର୍ଯ୍ୟଘଡ଼ି ଏବଂ ଭୂଳମ୍ବୀ ଚକ୍ର ଇତ୍ୟାଦି ଅନେକ ଯନ୍ତ୍ର ଉଦ୍ଭାବନ କରିଥିଲେ । ଏହି ଯନ୍ତ୍ରର କାର୍ଯ୍ୟକାରିତା ତାଙ୍କୁ ବିଶ୍ୱପ୍ରସିଦ୍ଧ ବୈଜ୍ଞାନିକ ଭାବରେ ପ୍ରତିଷ୍ଠିତ କରିଥିଲା । ସୂର୍ଯ୍ୟ ସିଦ୍ଧାନ୍ତ ଓ ସିଦ୍ଧାନ୍ତ ଶିରୋମଣି ନାମକ ଦୁଇଟି ସଂସ୍କୃତ ଗ୍ରନ୍ଥର ଅନୁସରଣରେ ସେ ଯେଉଁ ବାଉଁଶ ନଳୀର ଯନ୍ତ୍ର ତିଆରି କରିଥିଲେ ତାକୁ ସ୍ୱୟଂବହ ଓ ମାନଯନ୍ତ୍ର ବୋଲି ନାମିତ କରିଥିଲେ ।

ଗୋଟିଏ ମଜା କଥା ହେଲା ଯେ, ସବୁକଥା ମାପିଚୁପି ଠିକଣା କରିବା ତାଙ୍କର ସ୍ୱଭାବ ଥିଲା । ଏପରିକି ସାଥୀଙ୍କ ସହ ସେ ତାଙ୍କ ଘରୁ ଜଗନ୍ନାଥ ଦର୍ଶନ ନିମନ୍ତେ ଚାଲିଚାଲି ପୁରୀ ଯାଇଥିଲେ ଓ ସିଂହଦ୍ୱାରରେ ପହଞ୍ଚିବା ପରେ ସେ ତାଙ୍କ ସାଙ୍ଗକୁ କହିଥିଲେ ଯେ, ତାଙ୍କ ଘରଠାରୁ ସିଂହଦ୍ୱାର ପର୍ଯ୍ୟନ୍ତ ଦୂରତା ହେଲା ୧,୫,୨୦୦ପାହୁଣ୍ଡ । ଏଣୁ ସେ କେତେ ଏକନିଷ୍ଠ ଏଥିରୁ ଜଣାପଡ଼େ ।

ଗ୍ରହ ନକ୍ଷତ୍ରର ଗତି ନିର୍ଣ୍ଣୟ କରିବାରେ ତ୍ରିକୋଣମିତିର ଆବଶ୍ୟକତା ବହୁତ ବେଶୀ ଥିବାରୁ ନିଜ ଅନୁଭୂତିରେ ସେ ତ୍ରିକୋଣମିତି ସୂତ୍ର ଆବିଷ୍କାର କରି ଗଣନା କରୁଥିଲେ । ତାଙ୍କ ନିର୍ମିତ ଖଗୋଳ ଓ ଶଙ୍କୁ ଯନ୍ତ୍ର ନିର୍ଭୁଲ ଗଣନା କରିବାରେ ବିଶେଷ ସହାୟକ । ପାହାଡ଼ର ଉଚ୍ଚତା ମାପିବାରେ ସେ ଥିଲେ ସିଦ୍ଧହସ୍ତ । ଏହି ଯନ୍ତ୍ର ସାହାଯ୍ୟରେ ସେ ପାହାଡ଼ର ଉଚ୍ଚତା, ଦୂରତା ଓ ବିସ୍ତାର ନିର୍ଣ୍ଣୟ କରୁଥିଲେ । ଥରେ କମିଶନର ସାହେବ ପଠାଣି ସାମନ୍ତଙ୍କଠାରୁ ଢେଙ୍କାନାଳର ସପ୍ତଶଯ୍ୟା ପାହାଡ଼ର ଉଚ୍ଚତା ଜାଣିବାକୁ ଚାହିଁଥିଲେ ଏବଂ ପଠାଣି ସାମନ୍ତ ତାଙ୍କର କାଠିମାନ ଯନ୍ତ୍ର ସାହାଯ୍ୟରେ ପାହାଡ଼ର ଉଚ୍ଚତା ୧୧୭୮ ହାତ ୧୬ ଆଙ୍ଗୁଳି ବୋଲି ଦର୍ଶାଇ ଥିଲେ ଯେଉଁଟାକି ନିର୍ଭୁଲ ଥିଲା । ତେଣୁ କମିଶନର ଏଥିରେ ଅବାକ୍ ହୋଇ ସାମନ୍ତଙ୍କ ମାପଯନ୍ତ୍ରକୁ ମୁଣ୍ଡରେ ଲଗାଇଥିଲେ ।

ପଠାଣି ସାମନ୍ତ ଜ୍ୟୋତିର୍ବିଜ୍ଞାନରେ ଏତେ ଦକ୍ଷତା ହାସଲ କରିଥିଲେ ଯେ, ବିଲାତରେ ଓ ଆମେରିକାରେ କେତେବେଳେ ସୂର୍ଯ୍ୟପରାଗ ଓ ଚନ୍ଦ୍ରଗ୍ରହଣ ହେବ ତାହା ଗଣନା କରି ଆଗରୁ କହି ପାରୁଥିଲେ ଏବଂ ସେଗୁଡ଼ିକ ମଧ୍ୟ ସତ ହେଉଥିବାରୁ ତାଙ୍କର ସୁଖ୍ୟାତି ଦେଶ ବିଦେଶକୁ ବ୍ୟାପୀ ଯାଇଥିଲା । ଓଡ଼ିଶା ଭଳି ଏକ ରାଜ୍ୟରେ ଏପରି ଜଣେ ଜ୍ୟୋତିଷ ଧ୍ରୁବତାରା ରୂପେ ଅଛନ୍ତି, ଏହା ଜାଣି ସମସ୍ତେ ଧନ୍ୟ ଧନ୍ୟ କଲେ ଏବଂ ତାଙ୍କୁ ଦେଖା କରିବାକୁ ଅନେକ ଜ୍ଞାନୀଗୁଣୀ ମଧ୍ୟ ଆସୁଥିଲେ । ତାଙ୍କ ଭଳି ଜଣେ ସୁଯୋଗ୍ୟ ସନ୍ତାନଙ୍କ ପାଇଁ ଓଡ଼ିଶା ଆଜି ପବିତ୍ର ହୋଇଛି । ତେଣୁ ପଠାଣି ସାମନ୍ତଙ୍କ ଉଦ୍ଦେଶ୍ୟରେ କବିବର ରାଧାନାଥ ଗାଇଥିଲେ– –

'ହେ ଉତ୍କଳ ମାତା ଯୋଗ୍ୟତମ ସୂତ
ତୁମ୍ଭ ଯୋଗୁଁ ଆମେ ସର୍ବେ ହେଲୁ ପୁତ ।

ସାରାଦିନ ଶାସ୍ତ୍ର ଅଧ୍ୟୟନ ଓ ଗବେଷଣା ଇତ୍ୟାଦିରେ ବ୍ୟସ୍ତ ରହି ଏବଂ ରାତିସାରା ଉଜାଗର ରହି ଗ୍ରହ ଓ ନକ୍ଷତ୍ରଙ୍କ ସ୍ଥିତି ଲକ୍ଷ୍ୟ କରି ପଠାଣି ସାମନ୍ତ ଅନେକ ସିଦ୍ଧାନ୍ତରେ ଉପନୀତ ହୋଇଥିଲେ ଏବଂ ସେହି ସିଦ୍ଧାନ୍ତଗୁଡ଼ିକୁ ସେ ଶ୍ଳୋକ ଆକାରରେ ପ୍ରକାଶ କରୁଥିଲେ । ୨୫୦୦ ଶ୍ଳୋକ ବିଶିଷ୍ଟ ଏହି ପୁସ୍ତକଟିର ନାମ ରଖିଲେ ସିଦ୍ଧାନ୍ତ ଦର୍ପଣ । ସେଥିମଧ୍ୟରୁ ୨୨୮୪ଟି ଶ୍ଳୋକ ସେ ନିଜେ ରଚନା କରିଥିଲେ ଓ ଅନ୍ୟ ୨୧୬ଟି ଶ୍ଳୋକ ବିଭିନ୍ନ ଗ୍ରନ୍ଥରୁ ଉଦ୍ଧୃତ କରିଥିଲେ । ସିଦ୍ଧାନ୍ତ ଦର୍ପଣ ପୁସ୍ତକରେ ଗ୍ରହ ଚଳନ, ଚନ୍ଦ୍ରର ହ୍ରାସ ବୃଦ୍ଧି, ଚନ୍ଦ୍ର ଗ୍ରହଣ, ସୂର୍ଯ୍ୟ ପରାଗ ବିଷୟରେ ତଥ୍ୟମାନ ରହିଛି ।

ନିଜର ସାଧନ ଓ ଦୃଢ଼ ମନୋବଳ ନିକଟରେ ସବୁକିଛି ହାର ମାନିଥାଏ । ଦିନଯାକର ଅକ୍ଳାନ୍ତ ପରିଶ୍ରମ ଓ ରାତି ଉଜାଗର ରହିବା ଫଳରେ ତାଙ୍କର ସ୍ୱାସ୍ଥ୍ୟହାନୀ ଘଟିଥିଲେ ମଧ ସେସବୁକୁ ଭ୍ରୂକ୍ଷେପ ନ କରି ଅକ୍ଳାନ୍ତ ପରିଶ୍ରମର ଫଳ ସ୍ୱରୂପ ଲେଖିଲେ ସିଦ୍ଧାନ୍ତ ଦର୍ପଣ । ସିଦ୍ଧାନ୍ତ ଦର୍ପଣ ଲେଖା ହୋଇଗଲା ସିନା ପ୍ରକାଶିତ ହୋଇପାରି ନ ଥିଲା ଆର୍ଥିକ ଅନଟନ କାରଣରୁ କିନ୍ତୁ ଊନବିଂଶ ଶତାବ୍ଦୀର ଶେଷ ଦଶକରେ କଟକସ୍ଥିତ ରେଭେନ୍ସା ମହାବିଦ୍ୟାଳୟର ବିଜ୍ଞାନ ଅଧ୍ୟାପକ ଯୋଗେଶ ଚନ୍ଦ୍ର ରାୟଙ୍କ ସାହାଯ୍ୟରେ ତାହା ପ୍ରକାଶିତ ହୋଇପାରିଲା । ଏହି ସିଦ୍ଧାନ୍ତ ଦର୍ପଣ ଯୁଗେ ଯୁଗେ ମାନବ ସମାଜର ହିତ ପାଇଁ ଉଦ୍ଦିଷ୍ଟ ହୋଇଥିବା ଯୋଗୁଁ ଏବଂ ଆଗାମୀ ସମୟର ଗଣନ କାର୍ଯ୍ୟ ଏହି ଗ୍ରନ୍ଥ ମାଧ୍ୟମରେ ସମ୍ପାଦିତ ହୋଇପାରୁଥିବା ଯୋଗୁଁ ତତ୍‌କାଳୀନ ସରକାର ତାଙ୍କୁ 'ମହାମହୋପାଧ୍ୟାୟ' ଉପାଧିରେ ଭୂଷିତ କରିଥିଲେ । ଏହି ପୁସ୍ତକ ପ୍ରକାଶିତ ହେବା ପରେ ଦେଶ ବିଦେଶର ବହୁ ବିଜ୍ଞାନୀ ଏବଂ ମନୀଷୀଗଣ ଏହି ଗ୍ରନ୍ଥର ଉପାଦେୟତାକୁ ଉପଲବ୍ଧି କରିପାରିଲେ । ଯାହା ଫଳରେ ଇଂଲଣ୍ଡ, ଫ୍ରାନ୍ସ, ଜାପାନ, ଆମେରିକା ପ୍ରଭୃତି ବିକାଶଶୀଳ ରାଷ୍ଟ୍ରର ବୈଜ୍ଞାନିକମାନେ ପଠାଣି ସାମନ୍ତଙ୍କୁ ବିଶ୍ୱର ସର୍ବଶ୍ରେଷ୍ଠ ଜ୍ୟୋତିର୍ବିଜ୍ଞାନୀ ଭାବେ ସ୍ୱୀକାର କରିଛନ୍ତି । ପାଶ୍ଚାତ୍ୟ ଜ୍ୟୋତିର୍ବିଜ୍ଞାନୀ ଥିବଟ ସାହେବ ସାମନ୍ତଙ୍କ ପାଣ୍ଡିତ୍ୟ ଦେଖି ସେ ତାଙ୍କ ଜୀବନରେ ଏପରି ଜ୍ୟୋତିର୍ବିଜ୍ଞାନୀ ଆଗରୁ ଦେଖିନାହାନ୍ତି ବୋଲି କହିଥିଲେ ।

ସିଦ୍ଧାନ୍ତ ଦର୍ପଣ ବ୍ୟତୀତ ପଠାଣି ସାମନ୍ତ ସଂସ୍କୃତରେ 'ଦର୍ପଦୀପିକା' ଓଡ଼ିଆ ଭାଷାରେ ନାମକ ଦର୍ପଣାସାର ଲୋକ କ୍ଷୁଦ୍ର ପୁସ୍ତକ ଲେଖିଥିଲେ ।

ରାଜ୍ୟ ସରକାରଙ୍କର ସହାୟତାରେ ଉତ୍କଳ ବିଶ୍ୱବିଦ୍ୟାଳୟର ପଦାର୍ଥ ବିଜ୍ଞାନ ବିଭାଗର ଚନ୍ଦ୍ରଶେଖର ଚେୟାର ସ୍ଥାପିତ ହୋଇଛି । ଭୁବନେଶ୍ୱରଠାରେ ମଧ୍ୟ ଅତ୍ୟାଧୁନିକ ପ୍ଲାନେଟୋରିୟମ୍ ନିର୍ମାଣ କରାଯାଇ ପଠାଣି ସାମନ୍ତ ପ୍ଲାନେଟୋରିୟମ୍ ନାମ ରଖାଯାଇଛି ।

ପଠାଣି ସାମନ୍ତ ଗଣନା ଦ୍ୱାରା ନିଜର ମୃତ୍ୟୁ ସମୟ ଯଥେଷ୍ଟ ପୂର୍ବରୁ ଜାଣିପାରି ଥିଲେ । ପୁରୀରେ ଶେଷ ନିଃଶ୍ୱାସ ତ୍ୟାଗ କରିବାକୁ ସେ ଇଚ୍ଛା କରିଥିଲେ । ତେଣୁ ଶେଷ ସମୟ ପୁରୀରେ ଅବସ୍ଥାନ କରି ଜଗନ୍ନାଥ ଦର୍ଶନ କରିଥିଲେ । ଶେଷରେ ୧୯୦୪ ମସିହା ମେ ମାସ ୧୧ତାରିଖ ଜ୍ୟେଷ୍ଠ କୃଷ୍ଣ ଦ୍ୱାଦଶୀ ତିଥିରେ ଦିନ ୧୧ଟା ସମୟରେ ଶେଷ ନିଃଶ୍ୱାସ ତ୍ୟାଗ କଲେ । ତେଣୁ କବିବର ରାଧାନାଥ ରାୟ ତାଙ୍କ ପ୍ରତିଭାକୁ ବର୍ଣ୍ଣନା କରିବାକୁ ଯାଇ ଲେଖିଥିଲେ–

ସିଦ୍ଧାନ୍ତ ଦର୍ପଣ ହେବ ନାହିଁ କ୍ଷୟ
ନର ଦେହେ ଥିବ ଯାବତ ହୃଦୟ ।

ବାସ୍ତବିକ ପଠାଣି ସାମନ୍ତ ଇହ ଜଗତରେ ନାହାନ୍ତି ସତ କିନ୍ତୁ ତାଙ୍କର ଏହି ସିଦ୍ଧାନ୍ତ ଦର୍ପଣ ଯୋଗୁଁ ସେ ମରି ସୁଦ୍ଧା ଅମର ହୋଇ ରହିଛନ୍ତି ଏବଂ ରହିବେ ମଧ୍ୟ । ଓଡ଼ିଆ ଭାଷାର ଶାରଳା ମହାଭାରତ ଓ ଜଗନ୍ନାଥ ଦାସଙ୍କ ରଚିତ ଓଡ଼ିଆ ଭାଗବତ ପରି ପଠାଣି ସାମନ୍ତ ପାଞ୍ଜି ଓଡ଼ିଆ ଜାତି ପାଇଁ ଏକ ଗର୍ବ ଓ ଗୌରବର ଗନ୍ତାଘର ।

ଶିକ୍ଷୟିତ୍ରୀ
ସରକାରୀ ବାଳିକା ଉଚ୍ଚ ବିଦ୍ୟାଳୟ
ଆସିକା



# ଐତିହାସିକ ପଟ୍ଟଭୂମିରେ ପଣ୍ଡିତ ନେହେରୁ

ଡକ୍ଟର ଅତୁଲଚନ୍ଦ୍ର ପ୍ରଧାନ

ଏକଦା ଲୋକପ୍ରିୟତା ଅର୍ଜନ କରିଥିବା ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁଙ୍କୁ ବିଭିନ୍ନ କାରଣରୁ ଲୋକମାନେ ପ୍ରଶଂସା କରନ୍ତି । ପ୍ରଶଂସକମାନେ କହନ୍ତି ଯେ ସେ ଜଣେ ନିର୍ଭୀକ ବିପ୍ଳବୀ ଥିଲେ ଏବଂ ବ୍ୟକ୍ତିଗତ ସୁଖ ସ୍ୱାଚ୍ଛନ୍ଦ୍ୟକୁ ଜଳାଞ୍ଜଳି ଦେଇ ନିଜକୁ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇଥିଲେ । ସେ ଜଣେ ବାମପନ୍ଥୀ ବା ସମାଜବାଦୀ ଭାବରେ କୃଷକ ଓ ଶ୍ରମିକମାନଙ୍କର କଲ୍ୟାଣ ପାଇଁ ପଦକ୍ଷେପମାନ ଭାରତୀୟ ଜାତୀୟ କଂଗ୍ରେସର କାର୍ଯ୍ୟକ୍ରମରେ ଅନ୍ତର୍ଭୁକ୍ତ କରିଥିଲେ । ଗତିଶୀଳ ଓ ବୈଜ୍ଞାନିକ ଭିତ୍ତିରେ ଅର୍ଥନୈତିକ ଉନ୍ନତି ପାଇଁ ସେ ଯୋଜନାମାନ ପ୍ରସ୍ତୁତ କରିଥିଲେ ତଥା କାର୍ଯ୍ୟକାରୀ କରିଥିଲେ । ସେ ବୈଜ୍ଞାନିକ ଚିନ୍ତାଧାରା, ଧର୍ମନିରପେକ୍ଷତା ଓ ମାନବବାଦର ପ୍ରବକ୍ତା ଥିଲେ । ସେ ଅସାଧାରଣ ବୌଦ୍ଧିକ ପ୍ରତିଭା ଓ କୌତୁହଳର ଅଧିକାରୀ ଥିଲେ ଏବଂ ଆତ୍ମଜୀବନୀ, ବିଶ୍ୱ ଇତିହାସର ଝଲକ ଏବଂ ଭାରତ ଆବିଷ୍କାର ଭଳି ଉତ୍କୃଷ୍ଟ ଗ୍ରନ୍ଥମାନ ରଚନା କରିଥିଲେ ଏବଂ ସର୍ବୋପରି ରାଷ୍ଟ୍ରନୀତିଜ୍ଞ ଭାବରେ ବିଶ୍ୱ ଶାନ୍ତି ଏବଂ ସାର୍ବଜନୀନ ଭ୍ରାତୃତ୍ୱ ପାଇଁ ସେ ନିଜକୁ ଉତ୍ସର୍ଗ କରିଥିଲେ ।



୧୯୧୬ ମସିହାରେ ଭାରତୀୟ ଜାତୀୟ କଂଗ୍ରେସର ଲକ୍ଷ୍ନୌ ଅଧିବେଶନରେ ଜବାହରଲାଲ ପ୍ରଥମେ ମହାତ୍ମା ଗାନ୍ଧୀଙ୍କୁ ସାକ୍ଷାତ୍ କରିଥିଲେ । ୧୯୨୦ ମସିହାରେ ସେ ପିତା ମୋତିଲାଲ ନେହେରୁଙ୍କ ସହିତ ଗାନ୍ଧୀଙ୍କ ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇଥିଲେ ଏବଂ ଯୁକ୍ତପ୍ରଦେଶ (ସାମ୍ପ୍ରତିକ ଉତ୍ତର ପ୍ରଦେଶ)ରେ ଅସହଯୋଗ ଆନ୍ଦୋଳନର ନେତୃତ୍ୱ ନେଇଥିଲେ । ୧୯୨୯ ମସିହା ଡିସେମ୍ବର ମାସରେ ଜାତୀୟ କଂଗ୍ରେସର ଲାହୋର ଅଧିବେଶନରେ ଜବାହରଲାଲ ସଭାପତି ଆସନ ମଣ୍ଡନ କରିଥିଲେ । ଏହି ଅଧିବେଶନରେ ପୂର୍ଣ୍ଣ ସ୍ୱରାଜ ପାଇଁ ଗୃହୀତ ପ୍ରସ୍ତାବ ୧୯୩୦ର ଆଇନ ଅମାନ୍ୟ ଆନ୍ଦୋଳନ ପାଇଁ କ୍ଷେତ୍ର ପ୍ରସ୍ତୁତ କରିଥିଲା । ୧୯୨୮ ମସିହାରେ କଲିକତାରେ ଅନୁଷ୍ଠିତ କଂଗ୍ରେସର ବାର୍ଷିକ ଅଧିବେଶନରେ ଜବାହରଲାଲ ନେହେରୁଙ୍କ ପିତା ମୋତିଲାଲ ନେହେରୁ ସଭାପତିତ୍ୱ କରିଥିଲେ । ତେଣୁ ୧୯୨୯ରେ ଜବାହରଲାଲ କଂଗ୍ରେସ ଅଧିବେଶନରେ ସଭାପତି ହେବାରେ ମୋତିଲାଲଙ୍କ ଭୂମିକା ସମ୍ବନ୍ଧରେ ପରସ୍ପର ବିରୋଧୀ ମତ ପରିଦୃଷ୍ଟ ହୁଏ । ୧୯୨୯ରେ ସେ ନାଗପୁରରେ ଅନୁଷ୍ଠିତ ସର୍ବଭାରତୀୟ ଶ୍ରମିକ ସଂଗଠନର ବାର୍ଷିକ ଅଧିବେଶନରେ ସଭାପତିତ୍ୱ କରିଥିଲେ । ୧୯୩୬-୩୭ରେ ଜବାହରଲାଲ ପୁଣି ଥରେ ଜାତୀୟ କଂଗ୍ରେସର ସଭାପତି ହୋଇଥିଲେ ଏବଂ ଶ୍ରମିକ ଓ କୃଷକମାନଙ୍କର କଲ୍ୟାଣ ପାଇଁ ଯୋଜନାମାନ କଂଗ୍ରେସ କାର୍ଯ୍ୟକ୍ରମରେ ଅନ୍ତର୍ଭୁକ୍ତ କରିବା ପାଇଁ ଏବଂ କଂଗ୍ରେସ ଅନୁଷ୍ଠାନରେ ଶ୍ରମିକ ସଂଘ ଓ କିସାନ ସଭାମାନଙ୍କର ଅଂଶ ଗ୍ରହଣ ପାଇଁ ଉଦ୍ୟମ କରିଥିଲେ । ୧୯୩୮ରେ ସୁଭାଷ ଚନ୍ଦ୍ର ବୋଷ ଭାରତୀୟ ଜାତୀୟ କଂଗ୍ରେସର ସଭାପତି ଥିଲାବେଳେ ଜବାହରଲାଲ ନେହେରୁ ଜାତୀୟ ଯୋଜନା କମିଟିର ଅଧ୍ୟକ୍ଷଭାବେ କାର୍ଯ୍ୟ କରିଥିଲେ । ୧୯୪୬ରେ

ଇଂରେଜ ସରକାର କ୍ଷମତା ହସ୍ତାନ୍ତର କରିବା ପୂର୍ବରୁ ଜବାହରଲାଲ ନେହେରୁ ପୁଣି ଥରେ କଂଗ୍ରେସର ସଭାପତି ହୋଇଥିଲେ । ଜାତୀୟତାବାଦୀ ଆନ୍ଦୋଳନର ନେତା ଭାବରେ ବିଭିନ୍ନ ସମୟରେ ତାଙ୍କୁ ସର୍ବମୋଟ ନଅ ବର୍ଷ ଜେଲ ଦଣ୍ଡ ଭୋଗିବାକୁ ପଡ଼ିଥିଲା । ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ବେଳେ ନେହେରୁ ପ୍ରଥମେ ଆଦର୍ଶବାଦୀ ଦୃଷ୍ଟିରୁ ମିତ୍ର ପକ୍ଷପ୍ରତି ସମର୍ଥନ ପ୍ରଦର୍ଶନ କରିଥିଲେ । କିନ୍ତୁ ଯେତେବେଳେ ଇଂଲଣ୍ଡ ସରକାର ବାସ୍ତବରେ ଭାରତକୁ ଗଣତନ୍ତ୍ର ଏବଂ ଆତ୍ମନିୟନ୍ତ୍ରଣର ଅଧିକାର ଦେବାକୁ ଚାହାନ୍ତି ନାହିଁ ବୋଲି ପ୍ରତୀୟମାନ ହେଲା, ସେତେବେଳେ ଗାନ୍ଧୀ ଓ ନେହେରୁ ଇଂରେଜ ସରକାରଙ୍କୁ ସମାଲୋଚନା କଲେ ଏବଂ ବ୍ୟକ୍ତିଗତ ଆଇନ ଅମାନ୍ୟ ଆନ୍ଦୋଳନ (୧୯୪୦) ଏବଂ ଭାରତଛାଡ଼ ଆନ୍ଦୋଳନ (୧୯୪୨) ଭଳି ଆନ୍ଦୋଳନ ଆୟୋଜନ କଲେ । ଭାରତଛାଡ଼ ଆନ୍ଦୋଳନକୁ ଦମନ କରିବା ପାଇଁ କଂଗ୍ରେସ ନେତାମାନଙ୍କୁ ଗିରଫ କରି କାରାରୁଦ୍ଧ କରାଗଲା ଓ ଜବାହରଲାଲ ଅହମ୍ମଦ ନଗର ଦୁର୍ଗରେ ବନ୍ଦୀ ହୋଇଥିଲେ ।

୧୯୩୪ ମସିହାରେ କଂଗ୍ରେସ ଦଳ ଭିତରେ ଆଚାର୍ଯ୍ୟ ନରେନ୍ଦ୍ର ଦେବ, ଜୟପ୍ରକାଶ ନାରାୟଣ ଓ ଅନ୍ୟମାନଙ୍କ ପ୍ରଚେଷ୍ଟାରେ ସମାଜବାଦୀ ଚିନ୍ତାଧାରାର ଅଭ୍ୟୁଦୟ ହେଲା । ସେମାନେ କଂଗ୍ରେସ ସମାଜବାଦୀ ଦଳ ଗଠନ କଲେ । ଜବାହରଲାଲ ଓ ସୁଭାଷ ଚନ୍ଦ୍ର ବୋଷ ବାମପନ୍ଥୀ ହେଲେ ମଧ୍ୟ ଏହି ଦଳରେ ଯୋଗ ଦେଇ ନଥିଲେ । କୃଷକ ଓ ଶ୍ରମିକମାନଙ୍କର ଆନ୍ଦୋଳନ ଓ ଦେଶୀୟ ରାଜ୍ୟମାନଙ୍କର ପ୍ରଜା ଆନ୍ଦୋଳନକୁ ସଂଗଠିତ କରି ତଥା ସମର୍ଥନ ଦେଇ କଂଗ୍ରେସ ସମାଜବାଦୀମାନେ ଜାତୀୟତାବାଦୀ ଆନ୍ଦୋଳନକୁ ଅଧିକ ବୈପ୍ଳବିକ କରିଦେଲେ । ଜବାହରଲାଲ ମଧ୍ୟ ଏହି ସବୁ ଆନ୍ଦୋଳନଗୁଡ଼ିକ ସହିତ ସଂପୃକ୍ତ ହେଲେ । ୧୯୩୯ ମସିହା ଫେବୃଆରୀ ମାସ ୧୫ ଓ ୧୬ ତାରିଖରେ ଲୁଧିୟାନାରେ ଅନୁଷ୍ଠିତ ସର୍ବଭାରତୀୟ ଦେଶୀୟ ରାଜ୍ୟମାନଙ୍କର ପ୍ରଜାସମ୍ମିଳନୀର ବାର୍ଷିକ ଅଧିବେଶନରେ ଜବାହରଲାଲ ନେହେରୁ ସଭାପତିତ୍ୱ କରିଥିଲେ । ସ୍ୱାଧୀନତା ପରେ କଂଗ୍ରେସ ସମାଜବାଦୀମାନେ କଂଗ୍ରେସରୁ ଅଲଗା ହୋଇ ସ୍ୱତନ୍ତ୍ର ଦଳ ଗଠନ କଲେ । ଏକ ସମୟରେ ବିଂଶ ଶତାବ୍ଦୀର ଷଷ୍ଠ ଦଶକରେ ଜୟପ୍ରକାଶ ନାରାୟଣ ଓ ଜେବି କୃପାଳିନୀଙ୍କ ଭଳି କିଛି ସମାଜବାଦୀମାନଙ୍କୁ ଜବାହରଲାଲ ନେହେରୁ ନିଜ ମନ୍ତ୍ରିମଣ୍ଡଳରେ ସ୍ଥାନ ଦେବା ପାଇଁ ଚେଷ୍ଟା କରି ବିଫଳ ହୋଇଥିଲେ । ଜବାହରଲାଲଙ୍କ ସମାଜବାଦୀ ଆଭିମୁଖ୍ୟ ଏବଂ ସାମ୍ୟବାଦୀ ଓ ସମାଜବାଦୀ ଗୋଷ୍ଠୀ ତଥା ବନ୍ଧୁରାଷ୍ଟ୍ର ସୋଭିଏତ୍ ରୁଷିଆର ପ୍ରଭାବ ହେତୁ କଂଗ୍ରେସ ଦଳ ସମାଜବାଦୀ ଢ଼ାଞ୍ଚାରେ ସମାଜ ଗଠନ (୧୯୫୫) ଏବଂ ଗଣତାନ୍ତ୍ରିକ ସମାଜବାଦ (୧୯୬୪)କୁ ଲକ୍ଷ୍ୟ ଭାବରେ ଗ୍ରହଣ କଲା ଏବଂ ସ୍ୱାଧୀନତା ପରବର୍ତ୍ତୀ କାଳରେ କିଛି ଦଶନ୍ଧି ଧରି ସରକାରୀ ଉଦ୍ୟୋଗ ଉପରେ ଗୁରୁତ୍ୱ ଆରୋପ କଲା । ଏହା ଇତିହାସର ଏକ ବିଡ଼ମ୍ବନା ଯେ ବହୁବର୍ଷ ଧରି ରୁଷିଆରେ ସମାଜବାଦୀ ପରୀକ୍ଷାର ବିଫଳତା ବାହାରକୁ ଜଣା ପଡୁ ନଥିଲା ଏବଂ ସମାଜବାଦକୁ ବିକାଶର ଏକ ବିକଳ୍ପ ଉପାୟ ବୋଲି ବିଚାର କରାଯାଉଥିଲା ଏବଂ ଏହା ଯୁକ୍ତରାଷ୍ଟ୍ର ଆମେରିକା ଓ ୟୁରୋପର ପୁଞ୍ଜିବାଦୀମାନଙ୍କ ପାଇଁ ଗଭୀର ଉଦ୍‌ବେଗର କାରଣ ରୂପେ ଦେଖା ଦେଇଥିଲା । ନେହେରୁ ମିଶ୍ରିତ ଅର୍ଥନୀତି ଅବଲମ୍ବନ କରିଥିଲେ । ଦେଶର ଅର୍ଥନୈତିକ ବିକାଶରେ ଘରୋଇ ପୁଞ୍ଜି ଓ ଉଦ୍ୟୋଗର ଭୂମିକାକୁ ସେ ଅସ୍ୱୀକାର କରୁ ନଥିଲେ । କିନ୍ତୁ ଆଭ୍ୟନ୍ତରୀଣ ଉଦ୍ୟୋଗକୁ ସୁରକ୍ଷା ପ୍ରଦାନ, ଆମଦାନୀ ନିୟନ୍ତ୍ରଣ, ବିଦେଶୀ ପୁଞ୍ଜି ଓ ସାହାଯ୍ୟ ଗ୍ରହଣ କରିବାରେ ଅନିଚ୍ଛା, ସରକାରୀ ଉଦ୍ୟୋଗ ସପକ୍ଷରେ ଔଦ୍ୟୋଗିକ ଅନୁମତି ପ୍ରଦାନ ନୀତି ଏବଂ ସରକାରୀ ଉଦ୍ୟୋଗରେ ଆବଶ୍ୟକତାଠାରୁ ଅଧିକ ଲୋକଙ୍କୁ ନିଯୁକ୍ତି ଦେବା ଫଳରେ ଦେଶର ଅର୍ଥନୈତିକ ପ୍ରଗତି ମନ୍ଥର ହେଲା । ଆମଦାନୀ ନିୟନ୍ତ୍ରଣ ନୀତି ହେତୁ ବିଦେଶୀ ସଂସ୍ଥାମାନେ ସେମାନଙ୍କର କାରିଗରୀ କୌଶଳକୁ ବିକ୍ରି କରିବାକୁ ଅରାଜି ହେଲେ । ସୁରକ୍ଷା ପାଇ ଆଭ୍ୟନ୍ତରୀଣ ଉଦ୍ୟୋଗମାନେ ଅପ୍ରତିଯୋଗୀ ହୋଇ ପଡ଼ିଲେ । ସରକାରୀ ଉଦ୍ୟୋଗରେ ଅଧିକ ନିଯୁକ୍ତି ଫଳରେ କାରଖାନା ପ୍ରସ୍ତୁତ ଦ୍ରବ୍ୟମାନଙ୍କର ମୂଲ୍ୟ ବୃଦ୍ଧି ପାଇଲା ।

ଅନ୍ତରୀଣ ସରକାରର ମୁଖ୍ୟ ଓ ପ୍ରଥମ ପ୍ରଧାନ ମନ୍ତ୍ରୀ ଭାବରେ ନେହେରୁ ସାମ୍ପ୍ରଦାୟିକ ସଦ୍ଭାବ ବଜାୟ ରଖିବାରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ସମ୍ପାଦନ କରିଥିଲେ । ୧୯୪୮ ମସିହାରେ ସେ ରାଜ୍ୟଗୁଡ଼ିକର ମୁଖ୍ୟମନ୍ତ୍ରୀମାନଙ୍କ ପାଖକୁ ଲେଖିଥିଲେ, ଆମ ଦେଶରେ ଏକ ସଂଖ୍ୟାଲଘୁ ମୁସଲମାନ୍ ସଂପ୍ରଦାୟ ରହିଛି, ସେମାନଙ୍କର ସଂଖ୍ୟା ଏତେ ବେଶୀ ଯେ ଇଚ୍ଛା କଲେ ମଧ୍ୟ ସେମାନେ ଅନ୍ୟଆଡ଼େ ଯାଇ ପାରିବେ ନାହିଁ । ସେମାନଙ୍କୁ ଭାରତରେ ରହିବାକୁ ପଡ଼ିବ । ଏହି ମୌଳିକ ବିଷୟରେ କୌଣସି ଯୁକ୍ତିତର୍କ ହୋଇ ପାରିବ ନାହିଁ । (୧) ନେହେରୁଙ୍କ ଅସାମ୍ପ୍ରଦାୟିକ ଓ ଧର୍ମନିରପେକ୍ଷ ନୀତିକୁ ପାକିସ୍ଥାନ ଲୋକେ ପ୍ରଶଂସା କରିଥିଲେ । କୁହାଯାଏ ଯେ ନେହେରୁଙ୍କ ମୃତ୍ୟୁରେ ପାକିସ୍ଥାନରେ ଲୋକେ କାନ୍ଦିଥିଲେ ।

ପ୍ରଧାନମନ୍ତ୍ରୀ ଭାବରେ ନୂତନ ସଂବିଧାନ ପ୍ରସ୍ତୁତିରେ ନେହେରୁ ଗୁରୁତ୍ୱପୂର୍ଣ୍ଣ ଭୂମିକା ସମ୍ପାଦନ କରିଥିଲେ । ପଟେଲଙ୍କ ବାସ୍ତବବାଦୀ ନୀତି ହେତୁ ଭାରତ ଯୁକ୍ତରାଷ୍ଟ୍ର ସହିତ ଦେଶୀୟ ରାଜ୍ୟଗୁଡ଼ିକର ମିଶ୍ରଣ ସମ୍ଭବ ହୋଇଥିଲା । କିନ୍ତୁ ନେହେରୁଙ୍କ ନେତୃତ୍ୱ ଦେଶର ଏକତା ଓ ଅଖଣ୍ଡତା ବଜାୟ ରଖିବାରେ ସହାୟକ ହୋଇଥିଲା ।

ଶିଳ୍ପ କ୍ଷେତ୍ରରେ ନେହେରୁ ମହାତ୍ମା ଗାନ୍ଧୀଙ୍କ କୁଟୀର ଶିଳ୍ପ ନୀତିରୁ ବିଚ୍ୟୁତ ହୋଇଥିଲେ । କାରଣ ସେ ଦେଶର ଅର୍ଥନୈତିକ ପ୍ରଗତି ପାଇଁ ଭାରୀ ଓ ବୃହତ୍ ଶିଳ୍ପର ବିକାଶ ଅପରିହାର୍ଯ୍ୟ ବୋଲି ଭାବୁଥିଲେ । ବିଜ୍ଞାନ ଓ କାରିଗରୀ ବିଦ୍ୟାର ପ୍ରୟୋଗ ଦ୍ୱାରା ସେ ଦେଶର ଦାରିଦ୍ର୍ୟ ଓ ଅନଗ୍ରସରତା ଦୂର କରିହେବ ବୋଲି ବିଶ୍ୱାସ କରୁଥିଲେ । ତାଙ୍କର ପ୍ରଧାନ ମନ୍ତ୍ରୀତ୍ୱ କାଳରେ ବିଦେଶୀ କମ୍ପାନୀମାନଙ୍କ ସହଯୋଗରେ ରାଉରକେଲା, ଭିଲାଇ ଓ ଦୁର୍ଗାପୁରରେ ଇସ୍ପାତ କାରଖାନାମାନ ସ୍ଥାପିତ ହୋଇଥିଲା, ଦେଶର ବିଭିନ୍ନ ସ୍ଥାନରେ ୪୫ଟି ଗବେଷଣାଗାର ସ୍ଥାପିତ ହୋଇଥିଲା ଏବଂ ବମ୍ବେ, ମାନ୍ଦ୍ରାଜ, କାନପୁର ଓ ଖଡ଼ଗପୁରରେ ସ୍ଥାପିତ ହୋଇଥିଲା । ୧୯୩୭ ମସିହାରେ ବିଜ୍ଞାନର ଉପାଦେୟତା ସମ୍ବନ୍ଧରେ ନେହେରୁ କହିଥିଲେ, କଂଗ୍ରେସ ବିଜ୍ଞାନର ପ୍ରତିନିଧିତ୍ୱ କରେ ଏବଂ ବିଜ୍ଞାନ ହେଉଛି ଏ ଯୁଗର ଆତ୍ମା ଏବଂ ଆଧୁନିକ ବିଶ୍ୱରେ ପ୍ରଭାବ ବିସ୍ତାର କରିଛି । ଯେଉଁମାନେ ବିଜ୍ଞାନର ବନ୍ଧୁ ଏବଂ ମଣିଷ ସମାଜର ପ୍ରଗତି ପାଇଁ ବିଜ୍ଞାନର ସାହାଯ୍ୟ ଲୋଡ଼ନ୍ତି କେବଳ ସେମାନେ ହିଁ ଭବିଷ୍ୟତରେ ତିଷ୍ଠିବେ । (୨) ଏହି ଭଳି ଚିନ୍ତାଧାରାରେ ଅନୁପ୍ରାଣିତ ହୋଇ ସେ ହୋମି ଭାବା ଓ ମେଘନାଦ ଶାହା ଭଳି ବୈଜ୍ଞାନିକମାନଙ୍କୁ ପଦାର୍ଥ ବିଜ୍ଞାନ ଏବଂ ଆଣବିକ ଶକ୍ତିରେ ଗବେଷଣା କରିବା ପାଇଁ ନିଯୁକ୍ତ କରିଥିଲେ ।

ଦ୍ୱିତୀୟ ବିଶ୍ୱ ଯୁଦ୍ଧ ପରେ ଶୀତଳ ଯୁଦ୍ଧ ଯୋଗୁଁ ପୃଥିବୀ ଦୁଇଟି ଶିବିରରେ ବିଭକ୍ତ ହୋଇଥିଲା । ଗୋଟିଏ ପଟେ ଯୁକ୍ତରାଷ୍ଟ୍ର ଆମେରିକାର ନେତୃତ୍ୱରେ ପୁଞ୍ଜିପତି ରାଷ୍ଟ୍ରଗୋଷ୍ଠୀ ଏବଂ ଅନ୍ୟପଟେ ସୋଭିଏତ୍ ରୁଷିଆର ନେତୃତ୍ୱରେ ସାମ୍ୟବାଦୀ ରାଷ୍ଟ୍ରଗୋଷ୍ଠୀ । ଉଭୟ ବୃହତ୍ ଶକ୍ତି ଅନ୍ୟ ରାଷ୍ଟ୍ରମାନଙ୍କୁ ନିଜ ଆଡ଼କୁ ଆକୃଷ୍ଟ କରିବା ପାଇଁ ଚେଷ୍ଟା କରୁଥିଲେ । ଏହି ଭଳି ସ୍ଥିତିରେ ନେହେରୁ ଇଜିପ୍ଟର ରାଷ୍ଟ୍ରପତି ନାସେର୍, ଯୁଗୋସ୍ଲୋଭିଆର ରାଷ୍ଟ୍ରପତି ଟିଟୋ, ଇଣ୍ଡୋନେସିଆର ରାଷ୍ଟ୍ରପତି ସୁକର୍ଣ୍ଣୋ ଏବଂ ସାଇପ୍ରସର ରାଷ୍ଟ୍ରମୁଖ୍ୟ ଆର୍କବିଶପ୍ ମେକାରିଓସ୍‌ଙ୍କ ସହିତ ହାତ ମିଳାଇ ଗୋଷ୍ଠୀ ନିରପେକ୍ଷ ଆନ୍ଦୋଳନ ଆରମ୍ଭ କରିଥିଲେ । ଏହି ଆନ୍ଦୋଳନ ଫଳରେ ଶୀତଳ ଯୁଦ୍ଧ ଜନିତ ଉତ୍ତେଜନା ହ୍ରାସ ପାଇଲା । ୧୯୫୫ ମସିହାରେ ବାନ୍ଦୁଂ ସମ୍ମିଳନୀରେ ବିଶ୍ୱରେ ଶାନ୍ତି ପ୍ରତିଷ୍ଠା ପାଇଁ ପଞ୍ଚଶୀଳ ନୀତି ବୟାନ୍ କରାଗଲା । ଗୋଷ୍ଠୀ ନିରପେକ୍ଷତା ଭାରତୀୟ ବୈଦେଶିକ ନୀତିର ମୂଳଦୁଆ ରୂପେ ଗୃହୀତ ହେବା ଫଳରେ ଭାରତ ବିଶ୍ୱ ରାଜନୀତିରେ ଏକ ସମ୍ମାନଜନକ ଭୂମିକା ସମ୍ପାଦନ କଲା । ଦ୍ୱିତୀୟ ବିଶ୍ୱ ଯୁଦ୍ଧ ପରେ ଉପନିବେଶବାଦ ଅପସରିବାରେ ଲାଗିଲା । ଏହି ପ୍ରକ୍ରିୟାରେ ନେହେରୁ ଗୁରୁତ୍ୱପୂର୍ଣ୍ଣ ଭୂମିକା ସମ୍ପାଦନ କରିଥିଲେ ।

ଭାରତ–ଚୀନ ସୀମା ବିବାଦର ମୂଳ କାରଣ ହେଲା ଔପନିବେଶିକ ଯୁଗରୁ ଗଢ଼ି ଆସୁଥିବା ଅନିର୍ଦ୍ଧାରିତ ସୀମାରେଖା । ନେହେରୁ ଚୀନର ପ୍ରାଚୀନ ସଭ୍ୟତାକୁ ଆଦର କରୁଥିଲେ । ୧୯୫୩ ମସିହାରେ ଚୀନ ଗସ୍ତ ସମୟରେ ବହୁ ଲୋକେ 'ହିନ୍ଦି–ଚିନି' ଭାଇ ଧ୍ୱନି ଉଠାଇ ତାଙ୍କୁ ସମ୍ବର୍ଦ୍ଧନା ଜଣାଇଥିଲେ । ତେଣୁ ଶାନ୍ତିପୂର୍ଣ୍ଣ ଉପାୟରେ ପଞ୍ଚଶୀଳ ନୀତି ଅନୁସାରେ ଚୀନ ସହିତ ସୀମା ସମସ୍ୟାର ସମାଧନା ହୋଇ ପାରିବ ବୋଲି ନେହେରୁ ଭାବିଥିଲେ । କିନ୍ତୁ ତାଙ୍କର ଚୀନ ନୀତି ସମ୍ପୂର୍ଣ୍ଣ ବିଫଳ ହୋଇଥିଲା । କୂଟନୈତିକ ବ୍ୟାପାରରେ ସେ ପ୍ୟାରୀସ୍‌ରେ ଶିକ୍ଷାପ୍ରାପ୍ତ ଚୀନର ପ୍ରଧାନମନ୍ତ୍ରୀ ଚାଓଏନ୍‌ଲାଇଙ୍କ ସମକକ୍ଷ ହୋଇ ପାରି ନଥିଲେ । ୧୯୬୨ ମସିହାରେ ଶରତ ଋତୁରେ ଚୀନ ସୈନ୍ୟମାନେ ଭାରତ ଆକ୍ରମଣ କଲେ । ସାମରିକ ପ୍ରସ୍ତୁତି ନଥିବାରୁ ଭାରତୀୟ ସୈନ୍ୟମାନେ ଲଢ଼ି ନପାରି ଶୋଚନୀୟ ଭାବରେ ପଛଘୁଞ୍ଚା ଦେଲେ । ଚୀନ ଆକ୍ରମଣରେ ଦାରୁଣ ଭାବରେ ଆଘାତ ପ୍ରାପ୍ତ ପ୍ରଧାମନ୍ତ୍ରୀ ନେହେରୁ ପାର୍ଲାମେଣ୍ଟରେ କହିଲେ, ମୁଁ ବାସ୍ତବତାଠାରୁ ଦୂରରେ ମାୟାର କୁହେଳିକାରେ ବୁଡ଼ି ରହିଛି । ୧୯୫୦ ମସିହାରେ ତିବତରେ ଚୀନର ସମ୍ପ୍ରସାରଣକୁ ଆଖିରେ ରଖି ସର୍ଦ୍ଦାର ପଟେଲ ନେହେରୁଙ୍କୁ ଚୀନ ବିରୋଧରେ ପ୍ରତିଷେଧମୂଳକ ବ୍ୟବସ୍ଥା ଗ୍ରହଣ କରିବାକୁ ଚେତାବନୀ ଦେଇଥିଲେ । ନେହେରୁ ଏହି ଚେତାବନୀକୁ ଗୁରୁତ୍ୱ ଦେଇ ନଥିଲେ ।

ଲର୍ଡ ମାଉଣ୍ଟବ୍ୟାଟେନ୍‌ଙ୍କ ଭୁଲ ପରାମର୍ଶରେ ପରିଚାଳିତ ହୋଇ ନେହେରୁ ଜାମ୍ମୁ ଓ କାଶ୍ମୀର ସମସ୍ୟାକୁ ଠିକଣା ବାଟରେ ସମାଧାନ କରିବାକୁ ଉଦ୍ୟମ କରି ନଥିଲେ । ସେ ପାକିସ୍ଥାନର କାଶ୍ମିର ଆକ୍ରମଣ ପ୍ରସଙ୍ଗକୁ ମିଳିତ ଜାତିସଂଘରେ ଉତ୍ଥାପନ କରିଥିଲେ । ମିଳିତ ଜାତି ସଂଘର ହସ୍ତକ୍ଷେପ ଫଳରେ ପାକିସ୍ତାନ ସୈନ୍ୟମାନେ କାଶ୍ମିରରୁ ହଟିଯିବେ ବୋଲି ସେ ଭାବିଥିଲେ । କିନ୍ତୁ ବାସ୍ତବ କ୍ଷେତ୍ରରେ ଜାମ୍ମୁ ଓ କାଶ୍ମିର ସମସ୍ୟାକୁ ମିଳିତ ଜାତିସଂଘକୁ ନେବା ଫଳରେ ଏହା ଅଧିକ ଜଟିଳ ହେଲା । ଏହା ଶୀତଳ ଯୁଦ୍ଧର ଏକ ପ୍ରସଙ୍ଗରେ ପରିଣତ ହେଲା । ଇଂଲଣ୍ଡ ଓ ଯୁକ୍ତରାଷ୍ଟ୍ର ଆମେରିକା ସେମାନଙ୍କର ଅନୁଗାମୀ ରାଷ୍ଟ୍ର ପାକିସ୍ଥାନକୁ ସମର୍ଥନ କଲେ । ଜାମ୍ମୁ ଓ କାଶ୍ମୀରର ମହାରାଜା ହରିସିଂ ଭାରତ ସରକାରଙ୍କ ସହିତ

ମିଶ୍ରଣ ରାଜିନାମା ଦସ୍ତଖତ୍ କରିଥିଲେ। ତେଣୁ ସାମରିକ ଶକ୍ତି ପ୍ରୟୋଗ କରି ଭାରତ ସରକାର ପାକିସ୍ତାନ ଆକ୍ରମଣକାରୀମାନଙ୍କୁ କାଶ୍ମିରରୁ ହଟେଇଦେବା ସମୀଚିନ ହୋଇଥାନ୍ତା। କିନ୍ତୁ ଆଦର୍ଶବାଦୀ ଦୃଷ୍ଟିଭଙ୍ଗୀ ନେଇ ନେହେରୁ ଏହି ପ୍ରସଙ୍ଗକୁ ମିଳିତ ଜାତିସଂଘକୁ ନେଲେ ଏବଂ ପରେ ଗଣଭୋଟ କରିବେ ବୋଲି ପ୍ରତିଶ୍ରୁତି ଦେଇଥିଲେ।

ନେହେରୁ ପ୍ରଥମ ପ୍ରଧାନ ମନ୍ତ୍ରୀ ହେବା ସଙ୍ଗେ ସଙ୍ଗେ ଭାରତର ପ୍ରଥମ ବୈଦେଶିକ ବ୍ୟାପାର ମନ୍ତ୍ରୀ ଥିଲେ। ବେଦେଶିକ ବ୍ୟାପାର ମନ୍ତ୍ରୀ ଭାବରେ ସେ ଭାରତୀୟ ବୈଦେଶିକ ନୀତି ଓ ବୈଦେଶିକ ସେବାର ମୂଳଦୁଆ ସ୍ଥାପନ କରିଥିଲେ।

ନେହେରୁ କୌଣସି ସଂଗଠିତ ଧର୍ମରେ ବିଶ୍ୱାସ କରୁ ନଥିଲେ। ଈଶ୍ୱରଙ୍କ ଅସ୍ତିତ୍ୱ ସମ୍ବନ୍ଧରେ ସେ ସନ୍ଦେହବାଦୀ ଥିଲେ। ଥରେ ମହାତ୍ମା ଗାନ୍ଧୀ ତାଙ୍କ ବିଷୟରେ କହିଥିଲେ ଯେ ଜବାହର ଈଶ୍ୱରଙ୍କୁ ବିଶ୍ୱାସ ନ କଲେ ମଧ୍ୟ ସେ ଯେଉଁମାନେ ଈଶ୍ୱରଙ୍କୁ ପୂଜା କରନ୍ତି ସେମାନଙ୍କ ଅପେକ୍ଷା ଈଶ୍ୱରଙ୍କର ନିକଟତର। ସେ ପାଶ୍ଚାତ୍ୟ ସଭ୍ୟତା ଦ୍ୱାରା ଗଭୀର ଭାବରେ ପ୍ରଭାବିତ ହେଲେ ମଧ୍ୟ ଭାରତୀୟ ସଂସ୍କୃତିକୁ ଖୁବ୍ ଉତ୍ତମ ଭାବରେ ଅନୁଧ୍ୟାନ କରିଥିଲେ । ଏହା ତାଙ୍କ ରଚିତ ଭାରତ ଆବିଷ୍କାର ପୁସ୍ତକରୁ ପ୍ରମାଣିତ ହୁଏ। ସବୁ ଧର୍ମ ପ୍ରଚାରକମାନଙ୍କ ମଧ୍ୟରେ ଗୌତମ ବୁଦ୍ଧ ଏବଂ ତାଙ୍କର ବାଣୀ ନେହେରୁଙ୍କୁ ସର୍ବାଧିକ ପ୍ରଭାବିତ କରିଥିଲା।

ନେହେରୁ ଜଣେ ଗଣତନ୍ତ୍ରବାଦୀ ଥିଲେ। ସେ ଇଂରେଜ ଉଦାରବାଦ, ଫରାସୀ ରାଷ୍ଟ୍ରବିପ୍ଳବ ଏବଂ ରୁଷ ବିପ୍ଳବର ଆଭିମୁଖ୍ୟରୁ ନିଜର ଗଣତାନ୍ତ୍ରିକ ଚିନ୍ତାଧାରା ଆହରଣ କରିଥିଲେ। 'ଅତ୍ୟଧିକ ଲୋକ ପ୍ରିୟତା', 'ଲକ୍ଷ୍ୟ ହାସଲ ପାଇଁ ଦୃଢ଼ ଇଚ୍ଛାଶକ୍ତି', 'ସାଂଗଠନିକ କ୍ଷମତା', 'ଅନ୍ୟମାନଙ୍କ ପ୍ରତି ଅସହିଷ୍ଣୁତା', 'ଦୁର୍ବଳ ଓ ଅନୁପଯୁକ୍ତ ଲୋକମାନଙ୍କ ପାଇଁ ଘୃଣା' ସତ୍ତ୍ୱେ ସେ ଗଣତାନ୍ତ୍ରିକ ମତବାଦରୁ ଟଳିବାକୁ ଅମଙ୍ଗ ଥିଲେ। (୩) ହିରେନ୍ ମୁଖାର୍ଜୀଙ୍କ ମତରେ ଲୋକ ଶକ୍ତିର ପ୍ରତୀକ ପାର୍ଲାମେଣ୍ଟ ପ୍ରତି ତାଙ୍କର ସ୍ୱାଭାବିକ ସମ୍ମାନବୋଧ ଥିଲା ଏବଂ ସେ ଲୋକସଭାର ଅଧ୍ୟକ୍ଷଙ୍କୁ ଗଭୀର ସମ୍ମାନ ପ୍ରଦର୍ଶନ କରୁଥିଲେ ଏବଂ ଆଲୋଚନାମାନ ଧ୍ୟାନର ସହିତ ଶ୍ରବଣ କରୁଥିଲେ। (୪) ସେ ଦେଶକୁ ଭଲ ପାଉଥିଲେ ଏବଂ ଦେଶବାସୀ ତାଙ୍କୁ ଭଲ ପାଆନ୍ତୁ ବୋଲି ଚାହୁଁଥିଲେ। ଶେଷ ଇଚ୍ଛାରେ ସେ ଲେଖିଥିଲେ, ମୋତେ ଯଦି ଲୋକେ ମନେ ପକାଇବା ପାଇଁ ଚାହାନ୍ତି ତାହା ହେଲେ ଏହିଭଳି ମନେ ପକାଇଲେ ମୁଁ ଖୁସି ହେବି –ଏହି ଭଳି ଜଣେ ବ୍ୟକ୍ତି ଥିଲେ ଯେ ଭାରତ ଓ ଭାରତୀୟମାନଙ୍କୁ ମନ ପ୍ରାଣ ଦେଇ ଭଲ ପାଉଥିଲେ ଏବଂ ସେମାନେ ମଧ୍ୟ ତାଙ୍କୁ ବରଦାସ୍ତ କରିଥିଲେ ଏବଂ ଅଜସ୍ରଭାବରେ ସ୍ନେହ ଶ୍ରଦ୍ଧା ଢାଳି ଦେଇଥିଲେ। (୫) ମୃତ୍ୟୁର କିଛି ମାସ ପୂର୍ବରୁ ଉର୍ଦ୍ଦୁକବି କବି ଇକବାଲ୍ ନେହେରୁଙ୍କୁ କହିଥିଲେ, ଜିନ୍ନା ଓ ତୁମ ଭିତରେ କ'ଣ ସାମଞ୍ଜସ୍ୟ ରହିଛି ? ସେ ଜଣେ ରାଜନୀତିଜ୍ଞ, ତୁମ ଜଣେ ଦେଶ ଭକ୍ତ। (୬)

ଉଲ୍ଲେଖ ପୁଞ୍ଜି :

୧.ଉଦ୍ଧୃତ, ପବନ କେ ବର୍ମା, "Making a Tryst with Nehru" The Times of India, ନଭେମ୍ବର ୨୦୧୪

୨. ଉଦ୍ଧୃତ, ଏସ୍ ଇରଫାନ୍ ହବିବ,"Sience as Solution", *Frontline*, 12 December 2014

୩. ଛଦ୍ମ ନାମରେ ଲିଖିତ ନେହେରୁଙ୍କ ଏକ ଲେଖାରୁ ଉଦ୍ଧୃତ, କରଣ ସିଂହ, "The world said, 'This was a man'" The Hindustan Times, 14 November 2014

୪.The Telegraph, 1988

୫. ଉପରେ ଉଲ୍ଲିଖିତ କରଣ ସିଂହଙ୍କ ଲେଖାରେ ଉଦ୍ଧୃତ

୬.ଜବାହରଲାଲ ନେହେରୁ, The Discovery of India, ଅକ୍ସଫୋର୍ଡ, ୧୯୮୧, ପୃ ୩୫୨.

ଅବସରପ୍ରାପ୍ତ ଇତିହାସ ପ୍ରାଧ୍ୟାପକ,
ଉତ୍କଳ ବିଶ୍ୱବିଦ୍ୟାଳୟ



# ଗଣତନ୍ତ୍ରର ଆହ୍ୱାନ

**ଚନ୍ଦ୍ରମଣୀ ସେଠୀ**

୧୯୫୦ ମସିହା ଜାନୁଆରୀ ୨୬ ତାରିଖରେ ଆମ ଦେଶର ସମ୍ବିଧାନ ଜାତିର ମଙ୍ଗଳ ବା ସୁରକ୍ଷା ନିମିତ୍ତ କାର୍ଯ୍ୟକାରୀ କରାଗଲା । ଏହି ଦିନଟିକୁ ସାଧାରଣତନ୍ତ୍ର ଦିବସ, ଜନରାଜ୍ୟ ଦିବସ ବା ଗଣତନ୍ତ୍ର ଦିବସ ରୂପେ ଦେଶରେ ପ୍ରତିବର୍ଷ ଜାନୁଆରୀ ମାସ ୨୬ ତାରିଖରେ ପାଳନ କରାଯାଏ । ଏହି ଦିନଟି ବାସ୍ତବରେ ଆମ ସମ୍ବିଧାନର ଜନ୍ମ ଦିନ । ଏହି ଉତ୍ସବଟି ଦେଶର ପ୍ରତ୍ୟେକ ଜନସାଧାରଣଙ୍କ ପାଇଁ ଗୌରବମୟ ଐତିହ୍ୟ । ଦେଶର ବହୁ ଅଭିଜ୍ଞ ଆଇନ୍‌ବିତ୍‌ମାନଙ୍କ ପ୍ରଚେଷ୍ଟାରେ ଆମର ଏହି ସମ୍ବିଧାନଟି ରୂପ ନେଇଛି । ଡକ୍ଟର ବି.ଆର୍. ଆମ୍ବେଦକର ହେଉଛନ୍ତି ଏହି ସମ୍ବିଧାନର ଅଧକ୍ଷ ବା ପ୍ରାଣ ପ୍ରତିଷ୍ଠାତା । ଦେଶର ପ୍ରତ୍ୟେକ ଜନସାଧାରଣଙ୍କୁ ଜାତି, ବର୍ଣ୍ଣ, ଧର୍ମ ନିର୍ବିଶେଷରେ ସମସ୍ତେ ଭାରତୀୟ ବୋଲି ବିବେଚନା କରି ଏହି ସମ୍ବିଧାନକୁ ଦେଶର ମଙ୍ଗଳ ସାଧନରେ ଉତ୍ସର୍ଗ କରାଯାଇଛି ।

ଆମ ଦେଶ ଭାରତବର୍ଷ ବିଶ୍ୱର ସର୍ବ ବୃହତ୍ ଗଣତନ୍ତ୍ର ଦେଶ । ବିଶ୍ୱର ବିଭିନ୍ନ ଦେଶରୁ ଅର୍ଥାତ୍ ସମ୍ବିଧାନରୁ ପ୍ରଚଳିତ ବିବିଧ ଶାସନ ଶୈଳୀର ଧାରାକୁ ସଂଗ୍ରହ କରାଯାଇ ଆମ ଦେଶର ସମ୍ବିଧାନଟି ଉଜ୍ଜୀବିତ ।

ଗଣ ଚେତନାରେ ଗଣତନ୍ତ୍ର ସୁଦୃଢ଼ । ଯେପର୍ଯ୍ୟନ୍ତ ଜନସାଧାରଣଙ୍କ ଚେତନା ଶକ୍ତି ଦେଶ ଗଠନରେ ସହାୟକ ନହୋଇଛି, ସେ ପର୍ଯ୍ୟନ୍ତ ଗଣତନ୍ତ୍ରର ସ୍ୱାଦ ଦେଶରେ ଉପଲବ୍ଧ ହେବ ନାହିଁ । ଇଂଲଣ୍ଡରେ ଗଣତନ୍ତ୍ର ଫଳପ୍ରଦ ହୋଇପାରିଛି କାରଣ, ଶିକ୍ଷାର ପ୍ରସାର ମାଧ୍ୟମରେ ଗଣଚେତନା ଜାଗ୍ରତ ହୋଇ ଉଠିଛି । ସମସ୍ତେ ଗଣତନ୍ତ୍ରର ସ୍ୱାଦ ଉପଲବ୍ଧି କରି ପାରିଛନ୍ତି । ଦେଶର ଜନସାଧାରଣ ଭୋଟ୍ ମାଧ୍ୟମରେ ମତଦାନ ଦେଇ ଲୋକ ପ୍ରତିନିଧି ବାଛନ୍ତି । କିନ୍ତୁ କେତେକ ନାଗରିକ ଭୋଟ୍ ପ୍ରଦାନ କ'ଣ ଜାଣନ୍ତି ନାହିଁ କିମ୍ବା ଭୋଟ୍‌ର ମୂଲ୍ୟ ଜାଣନ୍ତି ନାହିଁ । ଏହାର ମୂଳରେ ବାସ୍ତବ ଶିକ୍ଷାର ଅଭାବ, ଚେତନା ଶକ୍ତିର ଅଭାବ । ଦେଶର ପ୍ରତ୍ୟେକ ନାଗରିକ ଜାତି ଗଠନର ଉତ୍ସ । ଗଣତନ୍ତ୍ର ଶାସନକୁ ପରିଚାଳନା କରିବାକୁ ହେଲେ ଗଣ ଚେତନାର ପ୍ରସାର ଅତ୍ୟନ୍ତ ଜରୁରୀ ।

ଗଣତନ୍ତ୍ର ଦେଶରେ ପ୍ରତ୍ୟେକ ନାଗରିକ ଜାଗ୍ରତ ପ୍ରହରୀ । ସମୂହ ଚେଷ୍ଟାରେ ଜାତିର ବିକାଶ । ପ୍ରତ୍ୟେକ ନାଗରିକଙ୍କର ମୂଲ୍ୟ ଅମୂଲ୍ୟ । ସହଯୋଗର ହସ୍ତ ପ୍ରସାର ଗଣତନ୍ତ୍ରର ବିକାଶ । ଏଥିପାଇଁ ଲୋଡ଼ା ଶିକ୍ଷାର ବିକାଶ । ମଧୁସୂଦନ ଦାସଙ୍କର ବାସ୍ତବ ବ୍ୟକ୍ତିତ୍ୱକୁ ଉପଲବ୍ଧି କଲେ ଦେଶ ମାତୃକା ପ୍ରତି ପ୍ରାଣ ଜାଗରୁକ ହୋଇଉଠେ । ଜନ ଜାଗରଣେ ଜନରାଜ୍ୟ ଦିବସ ମୁଖରିତ । ସ୍ୱାର୍ଥକୁ ଜଳାଞ୍ଜଳି ଦେଇ ଜାତି ଗଠନ ସ୍ରୋତରେ ସାମିଲ୍ ହେବାକୁ ପଡ଼ିବ । ଆପଣାକୁ ମଣିବାକୁ ହେବ, ମୁଁ ହେଉଛି ଜାତିର ଏକ କ୍ଷୁଦ୍ର ଅଂଶବିଶେଷ । ତେଣୁ ମଧୁସୂଦନ ଦାସ ପୁନର୍ବାର ସୂଚାଇଛନ୍ତି–

ଜାତି ନନ୍ଦିଘୋଷ ଚଳିବ କି ଭାଇ ସ୍ୱାର୍ଥକୁ ସାରଥୀ କଲେ
ଟାଣେ କିରେ ଗାଡ଼ି ଦାନାର ତୋବଡ଼ା ଘୋଡ଼ା ମୁଖେ ବନ୍ଧା ଥିଲେ ।

ସ୍ୱାର୍ଥକୁ ସାରଥୀ କଲେ ଜାତିର ପତନ ସୁନିଶ୍ଚିତ । ରାଜକୋଷ ହେଉଛି ଏ ଦେଶର ଜନସାଧାରଣଙ୍କ ଅମାନତ । ସ୍ୱାର୍ଥକୁ ଦୃଷ୍ଟି ଆଗରେ ରଖି ରାଜକୋଷ ଲୁଟ୍ କରିବା ହେଉଛି, ମାତୃଭୂମି ପ୍ରତି ଅବମାନନା ବା ଦେଶଦ୍ରୋହର ନମୂନା । ଜାତିର ସମ୍ପତ୍ତି ଜାତି ପାଇଁ ଉଦ୍ଦିଷ୍ଟ । ଯେପର୍ଯ୍ୟନ୍ତ ଜାତିର ସମ୍ପତ୍ତିର ସ୍ୱାଦ ଜନସାଧାରଣ ଉପଲବ୍ଧ କରିନାହାନ୍ତି, ସେପର୍ଯ୍ୟନ୍ତ ଗଣତନ୍ତ୍ର ଫଳପ୍ରଦ ହୋଇନାହିଁ ବୋଲି ଧରିବାକୁ ପଡ଼ିବ ।

ଯେପର୍ଯ୍ୟନ୍ତ ଜାତି ପ୍ରେମ ବହ୍ନି ଜାତି ଉଦ୍ଦେଶ୍ୟରେ ପ୍ରତ୍ୟେକଙ୍କ ହୃଦୟରେ ପ୍ରଜ୍ଜ୍ୱଳିତ ନ ହୋଇଛି, ସେପର୍ଯ୍ୟନ୍ତ ଜାତିର ପ୍ରଗତି ଅସମ୍ଭବ । କବି ସମସ୍ତଙ୍କୁ ଆହ୍ୱାନ ଦେଇଛନ୍ତି ସ୍ୱାର୍ଥକୁ ଜଳାଞ୍ଜଳି ଦେଇ ସମସ୍ତେ ଛାତିକୁ ଛାତିରେ ମିଶାଇ ନାଚି ଉଠିବାକୁ। ଏହାହିଁ ହେଉଛି ଜାତିପ୍ରେମ ।

ଉତ୍କଳମଣି ଗୋପବନ୍ଧୁ ଦାସଙ୍କର ଦେଶପ୍ରେମ ଭାବନା ଉକ୍ତ ଉକ୍ତିରୁ ପ୍ରତିଫଳିତ ହୁଏ । ଦେଶ ବା ଜାତି ପାଇଁ ନିଜର ପ୍ରାଣକୁ ସେ ଉତ୍ସର୍ଗ କରିଛନ୍ତି । ଦେଶ ମାତୃକାର ସନ୍ତାନ ହୋଇ ମାତୃ ବେଦନାରେ ସାମିଲ୍ ହୋଇଛନ୍ତି ଗୋପବନ୍ଧୁ ଦାସ । ତାଙ୍କର ମାଂସ, ହାଡ଼ ମାତୃଭୂମିର ପ୍ରଗତି ପାଇଁ ସେ ଦାନ କରିଛନ୍ତି ।

ଜାତିର ଜନକ ମହାତ୍ମା ଗାନ୍ଧୀ, ପଣ୍ଡିତ ଜବାହରଲାଲ୍ ନେହେରୁ, ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ୍, ମଧୁସୂଦନ ଦାସ, ଉତ୍କଳମଣି ଗୋପବନ୍ଧୁ ଦାସ ଏହିପରି ଅନେକ ଜାତୀୟ ସ୍ରୋତରେ ସାମିଲ୍ ହୋଇ ଦେଶକୁ ପ୍ରଗତି ପଥରେ ଆଗେଇ ନେବାପାଇଁ ଆଗଭର ହୋଇଥିଲେ ।

ଆମ ଜାତିର ମାନ କେଉଁଠି ତାହା ଆମ୍ଭେ ଆତ୍ମସମୀକ୍ଷା କରିବାର ବେଳ । ଜାତିର ପ୍ରଗତି ଜାତିର ସମ୍ବଳରେ କେତେଦୂର ଅଗ୍ରସର ତାହା ବିଚାରାଧୀନ । ଚାରିଆଡ଼େ କେବଳ ଗଢ଼ି ଉଠିଛି ମହଲା ମହଲା ଅଟ୍ଟାଳିକା, ଯାନବାହାନର ଠୁଳ, କିନ୍ତୁ ଆମେ ଆତ୍ମସମୀକ୍ଷା କରିବା ଉଚିତ୍ ଯେ, ଜାତିର ପ୍ରଗତି ପଥରେ ଆମର ଅବଦାନ କେତେ ? କେବଳ ପ୍ରଗତି ଆପେ ଆପେ ହୋଇଯିବ, ଏକଥା ବିଚାରକୁ ନେବା ନିରର୍ଥକ ।

ଗଣତନ୍ତ୍ର ଦିବସ ଆଜି ଭାରତବର୍ଷରେ ପାଳନ କରାଯାଉଛି । ରାଜଧାନୀ ଦିଲ୍ଲୀ ସମେତ ସର୍ବତ୍ର ପୁରପଲ୍ଲୀ ଆଜି ଗଣତନ୍ତ୍ର ଦିବସ ଉପଲକ୍ଷେ ପୁଲକିତ । ଜାତୀୟ ପତାକା ଆଜି ସଂସଦ ବିଧାନସଭା ଓ ସମସ୍ତ ଶିକ୍ଷାନୁଷ୍ଠାନମାନଙ୍କରେ ଫରଫର ହୋଇ ଉଡ଼ୁଛି । ଜାତିର ମହତ ଉଦ୍ଦେଶ୍ୟରେ ଜାତୀୟ ସଂଗୀତ (ଜନଗଣ ମନ ଅଧିନାୟକ) ଗାନ କରାଯାଉଛି । ସମସ୍ତ ରାଜନେତାଙ୍କ ସମେତ ଜାତିପ୍ରେମୀମାନେ ଜାତୀୟ ପତାକାକୁ ସମ୍ମାନ ଦେଉଛନ୍ତି । ଆମ ଜାତୀୟ ସଂଗୀତର ନାମ ଭାରତ ବିଧାନ । ଅଖଣ୍ଡ ଭାରତ ପାଇଁ ମଙ୍ଗଳ ବିଧାନ ସମସ୍ତଙ୍କର କାମ୍ୟ ହେଉ .... ଆମ ସମ୍ବିଧାନର ଗଣତାନ୍ତ୍ରିକ ମାନ୍ୟତା ବିଶ୍ୱରେ ପ୍ରସାରିତ ହେଉ, ଏହା ହିଁ ଗଣତନ୍ତ୍ରର ଆହ୍ୱାନ।

ସହକାରୀ ନିର୍ଦ୍ଦେଶକ
ମୁଦ୍ରଣ, ଲିଖନ ସାମଗ୍ରୀ ଓ ପ୍ରକାଶନ ନିର୍ଦ୍ଦେଶାଳୟ,
ମଧୁପାଟଣା, କଟକ–୧୦

# ଉତ୍କଳ ପ୍ରୀତି

ସୁଚିତ୍ରା ବେହେରା

ଉତ୍କଳ ପ୍ରୀତି
ଜାଗି ଉଠେ ମନ ମଧୁବନରେ
ମଧୁମୟ ସୃଷ୍ଟିରେ ।
ବିଚିତ୍ରବର୍ଣ୍ଣା ସଂସ୍କୃତି ଉଦ୍‌ଭାସିତ
ଓଡ଼ିଶୀ ନୃତ୍ୟର ତାଳରେ
ନୂପୁରର ଝଙ୍କାର
ଛନ୍ଦା ପାଦେ ତୋଳି ଧରେ
ମଧୁରତା ଭରି
ହୃଦୟର ନିଭୃତ କୋଣରେ ।
କାଳର କରାଳ ଗର୍ଭରେ
ଦେହ ଜଳିଯାଏ
ଜଳେ ନାହିଁ ସ୍ମୃତି
ପ୍ରୟୋଜନ ନାହିଁ ପରିଚୟ ପତ୍ର
ପରିଚିତ କରେ
ଉତ୍କଳୀୟ ସଂସ୍କୃତିର ଉତ୍କର୍ଷତା ।
ଅତୀତ ଅକ୍ଷୟ ଐତିହ୍ୟ କୀର୍ତ୍ତି
ସଂସ୍କୃତିର ଅବକ୍ଷୟତାରେ
ମରେ ନାହିଁ ପ୍ରୀତି
ଏଇ ଉତ୍କଳ ପ୍ରତି ।

ପ୍ଲଟ୍ ନଂ– ୧୩୬/୮୫୦
ବ୍ରହ୍ମେଶ୍ୱର ପାଟଣା, ଭୁବନେଶ୍ୱର–୧୮

## ଜୀବନ ଯା'ର ଖୋଲା ବହି

# ଏ ମାଟିର ଗାନ୍ଧୀ ରାଜୁବାବୁଙ୍କ ସ୍ମରଣେ...

**ବିକ୍ରମ ମହାରଣା**

ସେ ଥିଲେ ଜଣେ ବିରଳ ବ୍ୟକ୍ତିତ୍ୱ, ଗୃହସ୍ଥ-ବ୍ରହ୍ମଚାରୀ । ପାରିବାରିକ ବାଧବାଧକତାରେ ଗାର୍ହ୍ୟସ୍ଥ ଧର୍ମ ନିର୍ବାହ କରିଥିଲେ ମଧ୍ୟ, ମନ ଓ ଆତ୍ମାରେ ଥିଲେ ଶୁଦ୍ଧପୂତ ଯୋଗୀ ସଦୃଶ । ଗାନ୍ଧୀଙ୍କ ଆଦର୍ଶର ସେ ଥିଲେ ପ୍ରକୃତ ଅନୁଗାମୀ । ମହାତ୍ମା ଗାନ୍ଧୀଙ୍କ ପରି କ୍ଷୁଦ୍ରକାୟ ଶରୀର, ଅଥଚ ପ୍ରଶସ୍ତ ହୃଦୟ ତାଙ୍କର । ବେଶଭୂଷା ଓ ପରିପାଟୀରେ ଗାନ୍ଧୀଙ୍କ ସହ ତାଙ୍କର ସାଦୃଶ୍ୟ ବାରି ହୋଇପଡ଼େ । ଉଚ୍ଚାରଣ ଓ ଆଚରଣରେ ସମାନତା ପ୍ରତିପାଦନ କରି, ସେ ଗାନ୍ଧୀବାଦୀ ଆଦର୍ଶକୁ ଅକ୍ଷରେ ଅକ୍ଷରେ ପାଳନ କରୁଥିଲେ । ନିଜର 'ସରଳ ଜୀବନ ଓ ଉଚ୍ଚ ଚିନ୍ତାଧାରା', ତାଙ୍କୁ ଜଣେ ଉଚ୍ଚମନା ବ୍ୟକ୍ତିରେ ପରିଣତ କରିପାରିଥିଲା ।



ସ୍ୱଳ୍ପ ଆବଶ୍ୟକତାର ଖୁସି ମଣିଷଟି ଆଉ କେହି ନୁହନ୍ତି, ସେ ଥିଲେ ରାଜକିଶୋର ନାୟକ, ରାଜୁବାବୁ-ଯାହାଙ୍କୁ ଓଡ଼ିଶାର ପାଣିପବନ 'ପାଟକୁରାର ଗାନ୍ଧୀ' ଭାବେ ଜାଣନ୍ତି । ସେଦିନ ଥିଲା ୧୯୨୫ ମସିହା ଧର୍ମମାସ କାର୍ତ୍ତିକ ପୂର୍ଣ୍ଣିମା । ପବିତ୍ର ଦିବସର ଅମୃତ ବେଳାରେ, ଧର୍ମପରାୟଣା ମାତା ସୁବାସୀ ଦେବୀ ଓ କର୍ମନିଷ୍ଠ କୃଷକ ପିତା ବାଂଛାନିଧି ନାୟକଙ୍କ ଔରସରୁ, ପାଟକୁରା ଥାନା ଅଧୀନସ୍ଥ ପବିତ୍ର ଚିତ୍ରୋତ୍ପଳା ନଦୀ ପାର୍ଶ୍ୱସ୍ଥ ବନ୍ୟା ପ୍ରପୀଡିତ କରିଲୋ ଗ୍ରାମରେ ତାଙ୍କର ଜନ୍ମ । ଯଦିଓ ଗାଁ ମଧ୍ୟରେ ତାଙ୍କ ପରିବାରଟି ଭୂସଂପତ୍ତି ଦୃଷ୍ଟିରୁ ପ୍ରାୟ ସ୍ୱଚ୍ଛଳ ଓ ଏକାନ୍ନବର୍ତ୍ତୀ ଥିଲା, ତେବେ ପିଲାଟି ଦିନରୁ ଆଖପାଖରେ ଦୁଃଖଦୁର୍ଦ୍ଦଶାର କରୁଣ କାହାଣୀ ତାଙ୍କ ଆଖିରେ ପଡ଼େ, କାନରେ ବାଜେ । ହା ହୁତାଶମୟ ଜୀବନ ଜୀଉଁଥିବା ଲୋକଙ୍କ ଆର୍ତ୍ତନାଦ ତାଙ୍କୁ ସେବା ମନୋବୃତ୍ତି ଓ ଏକ ନିରାଡ଼ମ୍ବର ଜୀବନଯାପନର ମନ୍ତ୍ରରେ ଦୀକ୍ଷିତ କରେ । ଆଜୀବନ ଖଦଡ଼ ପରିଧାନ ସହ ପାଦରେ ଚପଲ ନଥାଇ ସେ ହୁଅନ୍ତି ସଦା କର୍ମଚଞ୍ଚଳ । ଜଗତୀକରଣର ଅଖଣ୍ଡ ପ୍ରଭାବ ସତେ ଯେମିତି ତାଙ୍କ ନିକଟରେ ହାର୍ ମାନିଯାଏ ।

ପିତାମାତାଙ୍କ ସଂଯୋଗ କାଳେ- ବିହି ଯା' ଲେଖିଲେ କପାଳେ । ପିତାମାତାଙ୍କ ସୁକୃତରୁ ତାଙ୍କ ଜୀବନ ପ୍ରାରମ୍ଭରୁ ଥିଲା ପ୍ରେମ ଓ କରୁଣାସିକ୍ତ । ଗାଁ ଠାକୁରାଣୀ ଘର ବାରଣ୍ଡାରେ ରାମକୃଷ୍ଣ ରଥ ସାର୍‌ଙ୍କ ଚାହାଳୀରୁ ଆରମ୍ଭ ହୋଇଥିଲା ତାଙ୍କର ଆଦ୍ୟଶିକ୍ଷା । ମା' ପେଟରୁ ଧର୍ମକର୍ମ ଧରି ଆସିଥିବା ବାଳକ ରାଜକିଶୋର ତୃତୀୟ ଶ୍ରେଣୀରେ ବୃତ୍ତି ପରୀକ୍ଷା ନିମନ୍ତେ ମନୋନୀତ ହୋଇ କୃତୀ ସାବ୍ୟସ୍ତ ହୁଅନ୍ତି । ବିଦ୍ୟାଳୟରେ ପଢୁଥିବା ସମୟରେ ୧୪ ବର୍ଷ ବୟସରୁ ସ୍ୱାଧୀନତା ସଂଗ୍ରାମ ପାଇଁ ବାନର ସେନାରେ ଯୋଗ ଦିଅନ୍ତି । ଉଚ୍ଚଶିକ୍ଷା ପାଇଁ ରେଭେନ୍ସା କଲେଜରେ ପଢୁଥିଲା ବେଳେ କଟକସ୍ଥିତ ରାମକୃଷ୍ଣ କଟେଜ୍‌ରେ ଅବସ୍ଥାନ କରି ସେହି ସମୟଠାରୁ ଶ୍ରୀରାମକୃଷ୍ଣ ପରମହଂସ, ସ୍ୱାମୀ ବିବେକାନନ୍ଦ ଏବଂ ସ୍ୱାମୀ ଶିବାନନ୍ଦଙ୍କ ମାର୍ଗରେ ନିଜକୁ ପରିଚାଳିତ କରନ୍ତି । ଛାତ୍ର ଜୀବନରୁ ଗାନ୍ଧିଜୀଙ୍କ ଅସହଯୋଗ ଆନ୍ଦୋଳନ ଓ ଭାରତଛାଡ଼ ଆନ୍ଦୋଳନରେ ସକ୍ରିୟ ଅଂଶଗ୍ରହଣ କରନ୍ତି । ତରୁଣ ରାଜକିଶୋର ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଯଦୁମଣି ମଂଗରାଜ, ସଚ୍ଚିଦାନନ୍ଦ ମହାନ୍ତି, ବିରଜା ରାୟ, ସୁରେନ୍ଦ୍ରନାଥ ପଟ୍ଟନାୟକ, ଅନିଲ୍ ଘୋଷ, ବାମନ ଚରଣ ପରିଡ଼ାଙ୍କ ପରି ଜାତୀୟ

ଆନ୍ଦୋଳନର ଆଗଧାଡିର ନେତାଙ୍କ ସଂସ୍ପର୍ଶରେ ଆସି ମାତୃଭୂମିର ମୁକ୍ତି ଆନ୍ଦୋଳନରେ ପ୍ରେରିତ ହୁଅନ୍ତି । ରେଭେନ୍ସା କଲେଜରୁ ସ୍ନାତକ ଶିକ୍ଷା ଶେଷ ପରେ ସେ ଶିକ୍ଷକତା ବୃତ୍ତିକୁ ଜୀବନର ପରମ ଆଦର୍ଶ ରୂପେ ଗ୍ରହଣ କରି, ଖଣ୍ଡସାହି ସ୍କୁଲ୍ ଓ ପରେ ଆଶ୍ରମ ବାଲିକୁଦା ଓ କୋରୁଆ ହାଇସ୍କୁଲ୍‌ରେ ଶିକ୍ଷାଦାନ କରନ୍ତି । ଛାତ୍ରଙ୍କ ସହ ତାଙ୍କର ସଂପର୍କ ଥିଲା ଅତି ନିବିଡ । ଆଜି ସେ ସଂପର୍କକୁ ତାଙ୍କର କେତେକ ସୁନାମଧନ୍ୟ ଶିଷ୍ୟ ମୁକ୍ତ କଣ୍ଠରେ ପ୍ରଶଂସା କରିଥାନ୍ତି ଓ ତାଙ୍କ ପ୍ରିୟ ଶିକ୍ଷକଙ୍କ ସେବା କରି ଅନୁଭବରେ ଆଣିଥିବା ନିରୋଳା ଆନନ୍ଦ ସଂପର୍କରେ ଉଲ୍ଲେଖ କରନ୍ତି । ରାଜୁବାବୁ ଗତାନୁଗତିକ ଶିକ୍ଷା ସହ  ଶିକ୍ଷାରେ ସଂସ୍କାର ଆଣି ଏହାକୁ ଅଧିକ କ୍ରିୟାଶୀଳ କରିପାରିଥିଲେ । ଶିକ୍ଷକତା ତାଙ୍କ ପାଇଁ ବୃତ୍ତିଗତ ବଦଳରେ ସେବାପ୍ରଧାନ ଥିଲା । ବୃତ୍ତି ସହ ପ୍ରବୃତ୍ତିର ମେଳ ରଖି ବନ୍ୟା, ବାତ୍ୟା ଆଦି କରାଳ ପ୍ରାକୃତିକ ବିପର୍ଯ୍ୟୟ ସମୟରେ ସେ ଦୁର୍ଗତଙ୍କ ନିକଟରେ ପହଂଚି ସେମାନଙ୍କୁ ଯଥାସାଧ୍ୟ ସହାୟତା ଯୋଗାଇ ଦେଉଥିଲେ । ଓଡ଼ିଶାରେ ଭୂଦାନ ଆନ୍ଦୋଳନର ଅନ୍ୟତମ ପୁରୋଧା ଥିଲେ ରାଜୁବାବୁ । ସୁଗନ୍ଧିତ ପୁଷ୍ପର ସୌରଭ ଚତୁର୍ଦ୍ଦିଗକୁ ଚହଟି ଗଲାପରି, ତାଙ୍କର ମହନୀୟ କାର୍ଯ୍ୟ ସମ୍ପର୍କରେ ଓଡିଶାର ଗୁଣଗ୍ରାହୀ ରାଜନୀତିଜ୍ଞ ବିଜୁବାବୁ ଅବଗତ ହୋଇଥିଲେ । ରାଜନୀତିରେ ଯୋଗଦାନ ପୂର୍ବକ ଦେଶଜନତାର ସେବା ପାଇଁ ସ୍ୱତନ୍ତ୍ର ଭାବେ ତାଙ୍କୁ ବିଜୁବାବୁଙ୍କର ଡାକରା ଆସିଥିଲା । ଫଳତଃ, ୧୯୬୬ ମସିହା ଅକ୍ଟୋବର ୧ ତାରିଖରୁ ସେ ସରକାରୀ ଶିକ୍ଷକ ପଦବୀରୁ ଇସ୍ତଫା ଦେଇ ନିଜକୁ ଦେଶମାତୃକାର ସେବାରେ ଉତ୍ସର୍ଗୀକୃତ କରିଥିଲେ ।

ଏଣେ ନିଜର ଦାନ ମନୋବୃତ୍ତି ଓ ପରେ ଚାକିରିରୁ ଇସ୍ତଫା ଦେବା ଯୋଗୁଁ ପରିବାରରେ ଘୋଟିଥିଲା ଦାରୁଣ ଆର୍ଥିକ ସ୍ଥିତି । ଏଣୁ, ବିବାହର ୧୨ ବର୍ଷ ପରେ, ତାଙ୍କର ଧର୍ମପତ୍ନୀ ଘରୋଇ ଭାବେ ପଢି ସେସମୟର ମାଟ୍ରିକ୍ ପାଶ୍ କରିବା ସହ, ଶିକ୍ଷୟିତ୍ରୀ ବୃତ୍ତି ଆପଣେଇ ଥିଲେ । ପରିବାରର ଆର୍ଥିକ ଦୁଃସ୍ଥିତି ତାଙ୍କ ସେବା ମନୋବୃତ୍ତିକୁ ପ୍ରତିହତ କରିପାରି ନଥିଲା । ଦଳୀୟ ରାଜନୀତିର ଉପରକୁ ଉଠି ରାଜୁବାବୁ ବିଭିନ୍ନ ବ୍ୟକ୍ତିବିଶେଷଙ୍କୁ ସାହାଯ୍ୟ ସହଯୋଗ କରିଛନ୍ତି । ରାଜନୈତିକ ଜୀବନ କାଳରେ, ୧୯୭୦ ମସିହାରେ ସେ ଗରଦପୁର ବ୍ଲକ୍ ଚେୟାର୍‌ମ୍ୟାନ୍ ଓ ୧୯୭୧ରେ ପାଟକୁରା ବିଧାନସଭା ଆସନରୁ ବିଧାୟକ ଭାବେ ନିର୍ବାଚିତ ହୋଇଥିଲେ । ୧୯୭୪ରେ କ୍ରମାଗତଭାବେ ଦ୍ୱିତୀୟ ଥର ପାଇଁ ପାଟକୁରାରୁ ବିଧାୟକ ଥିଲେ । ୧୯୭୭ରେ ମର୍ଯ୍ୟାଦାଜନକ ଓଡିଶା ଖଦି ଓ ଗ୍ରାମୋଦ୍ୟୋଗ ବୋର୍ଡର ସଭାପତି ହେବା ସହ ୧୯୯୨ରେ କେନ୍ଦ୍ରୀୟ ଖଦି କମିଶନଙ୍କ ଖଦି ପ୍ରମାଣନ କମିଟିର ପୂର୍ବାଞ୍ଚଳ ଅଧ୍ୟକ୍ଷ ରୂପେ କାର୍ଯ୍ୟ କରିଥିଲେ । ନିଜର ଅଭିଜ୍ଞତା ବଳରେ, ୧୯୯୩ରେ ଦ୍ୱିତୀୟ ଥର ନିମନ୍ତେ ଓଡିଶା ଖଦି ବୋର୍ଡର ସଭାପତି ମଧ୍ୟ ହୋଇପାରିଥିଲେ । ସ୍ୱଚ୍ଛତାର ନିଚ୍ଛକ ଉଦାହରଣ ରଖୁଥିବା ଏହି ଅସାଧାରଣ ବ୍ୟକ୍ତିତ୍ୱ ରାଜନୀତିରେ ମାରପେଂଚର ଧାର ଧରନ୍ତି ନାହିଁ । ଆଦର୍ଶ ନିର୍ବାଚନ ଆଚରଣ ବିଧି ତାଙ୍କଠାରୁ ପ୍ରକୃତରେ ଶିଖି ହେବ । ଅତ୍ୟନ୍ତ ସରଳ, ଅମାୟିକ ବ୍ୟକ୍ତିତ୍ୱର ଅଧିକାରୀ ରାଜୁବାବୁ ନିଜର ରାଜନୈତିକ ଜୀବନରେ ପ୍ରତାରଣାର ଶୀକାର ହୋଇଥିଲେ ମଧ୍ୟ ସେମାନଙ୍କ ପ୍ରତି ବିଦ୍ୱେଷ ନରଖି ବରଂ ସାହାଯ୍ୟ କରୁଥିଲେ । ନିଜ ନିର୍ବାଚନ ମଣ୍ଡଳୀରେ ଶିକ୍ଷା, ସ୍ୱାସ୍ଥ୍ୟ, ରୋଜଗାର ସୃଷ୍ଟି, ଯାତାୟାତ ପ୍ରଭୃତି କ୍ଷେତ୍ରର ଉନ୍ନତି ତାଙ୍କ ପାଇଁ ଗୁରୁତ୍ୱପୂର୍ଣ୍ଣ ଥିଲା ।

ମହାତ୍ମା ଗାନ୍ଧୀଙ୍କ ଅଖିଳ ଭାରତ ଖଦି ଆନ୍ଦୋଳନ ଥିଲା ସ୍ୱଦେଶୀ ନିର୍ଭରଶୀଳତାର ମହାନ୍ ବାର୍ତ୍ତା । ପିଲାଟି ଦିନରୁ ଗାନ୍ଧୀଙ୍କ ଆଦର୍ଶରେ ଅନୁପ୍ରାଣିତ ରାଜୁବାବୁ ସଂଯୋଗକ୍ରମେ ଓଡିଶା ରାଜ୍ୟ ଖଦି ବୋର୍ଡର ଅଧ୍ୟକ୍ଷ ହେବା ପରେ ଓଡିଶାରେ ଖଦି ଓ କୁଟୀର ଶିଳ୍ପର ପ୍ରସାର ପାଇଁ, ଗାଁଗଣ୍ଡା ବୁଲି, ଏହାର ତାତ୍ପର୍ଯ୍ୟ ସଂପର୍କରେ ଲୋକମାନଙ୍କୁ ବୁଝାଉଥିଲେ । ଏଥିଯୋଗୁଁ କେନ୍ଦ୍ରାପଡା ଅଞ୍ଚଳରେ ଖଦଡ ଲୁଗାର ବ୍ୟବହାର, ଚରଖାର ପ୍ରଚଳନ, ସୂତାକଟା ଓ ଲୁଗାବୁଣା ପ୍ରତି ଅପୂର୍ବ ଆଗ୍ରହ ପ୍ରକାଶ ପାଇଥିଲା । ଏହା ଆନ୍ଦୋଳନରେ ପରିଣତ ହେବାରୁ, ବ୍ୟବସାୟିକ ମନୋବୃତ୍ତି ଗୌଣ ହୋଇପଡିଥିଲା । ବିଭିନ୍ନ ଜିଲ୍ଲା ଗସ୍ତ କରି ସାରା ଓଡିଶା ରାଜ୍ୟରେ ଖଦିର ଆବଶ୍ୟକତା ଓ ଉପକାରିତା ବିଷୟରେ ସେ ପ୍ରଚାର କରିଥିଲେ । ଆଚରଣରେ ଏହାକୁ ପ୍ରତିପାଦିତ କରି, ସାରା ଜୀବନ ନିଜ ଦେହ ଢାଙ୍କିବାକୁ ଗୋଟିଏ ଖଦି ଲୁଗା ଓ ଖଦି ଚଦର ବ୍ୟବହାର କରୁଥିଲେ । ଖଦି ଆନ୍ଦୋଳନ ମାଧ୍ୟମରେ ସେ ଗ୍ରାମୀଣ ଲୋକଙ୍କୁ ସ୍ୱାବଲମ୍ବୀ ଓ ସ୍ୱାଭିମାନୀ କରିବାରେ ସଫଳ ହୋଇପାରିଥିଲେ ।

ପକ୍ୱ କେଶ, ଶ୍ମଶ୍ରୁଧାରୀ ଓ ଜ୍ୟୋତି ପରିସ୍ଫୁଟ ମୁଖମଣ୍ଡଳର ଏହି ଦରଦୀ ବ୍ୟକ୍ତିତ୍ୱ ସର୍ବଭୂତରେ ଦୟାଶୀଳ ଥିଲେ । ପଶୁପକ୍ଷୀଙ୍କ ପ୍ରତି ତାଙ୍କର ଭଲ ପାଇବା ଓ ସେବା ମନୋଭାବ 'ଜୀବେଦୟା'ର ମହନୀୟ ବାଣୀକୁ ପରିପୁଷ୍ଟ ତଥା ପୋଷଣ କରୁଥିଲା । ରାଜନୀତିରୁ ସନ୍ନ୍ୟାସ ନେବାପରେ, ପତ୍ନୀ ନିର୍ମଳପ୍ରଭାଙ୍କ କକା ଅସୁରେଶ୍ୱରରେ ଆରମ୍ଭ କରିଥିବା ଗୋରକ୍ଷଣୀ ସଂସ୍ଥାକୁ ରାଜୁବାବୁ ତୀର୍ଥଭୂମିରେ ପରିଣତ କରିପାରିଥିଲେ । ଏହି ମହତ୍ତର ଅନୁଷ୍ଠାନ,

ମାଲିକଙ୍କ ଦ୍ୱାରା ହତାଦର ହୋଇଥିବା ବୁଢାହଡା ଅକର୍ମଣ୍ୟ ଗୋରୁଗାଈଙ୍କୁ କଂସେଇଖାନାରେ ବିକ୍ରୀ ହେବାରୁ ରକ୍ଷା କରି, ସେମାନଙ୍କ ଯତ୍ନ ନେଉଥିଲା । ଏହି ମହନୀୟ କାର୍ଯ୍ୟ ପାଇଁ ମହାନୁଭବଙ୍କ ନିକଟରେ ହାତପତେଇବାରେ ରାଜୁବାବୁଙ୍କର କୌଣସି ଲଜ୍ଜା ନଥିଲା ।

ଗାନ୍ଧୀବାଦର ନିଦର୍ଶନ ସ୍ୱରୂପ ସେ ଜାତି, ଜାତକ ଓ ଯୌତୁକର ପ୍ରଚଣ୍ଡ ବିରୋଧୀ ଥିଲେ । ନିଜେ ଆଦର୍ଶ ବିବାହ କରିବା ସହ ନିଜ ପିଲାଙ୍କୁ ସେ ଏଥିରେ ଉଦ୍‌ବୁଦ୍ଧ କରି ସେମାନଙ୍କୁ ଉକ୍ତ ମାର୍ଗରେ ଅନୁଗାମୀ କରିପାରିଥିଲେ । ଆଜିକାଲି ପରି ବ୍ୟୟବହୁଳ ବିବାହ ଆୟୋଜନକୁ ସେ ଅଯଥା ଅର୍ଥଶ୍ରାଦ୍ଧ ମନେକରୁଥିଲେ । ତେବେ ଗରିବମାନଙ୍କୁ ଘରୁ ଲୁଚାଇ ଟଙ୍କାପଇସା, ଧାନଚାଉଳ ଇତ୍ୟାଦି ଦେଇଦେଉଥିଲେ । କାହାଠାରୁ କିଛି ପ୍ରତ୍ୟାଶା ନରଖି ସେ ଦେବାରେ ଆନନ୍ଦ ଅନୁଭବ କରୁଥିଲେ । ପାଦରେ ମାଇଲ୍ ମାଇଲ୍ ଚାଲି, ଗାଁ ଗାଁ, ଘର ଘର ବୁଲି, ଲୋକଙ୍କ ସୁବିଧା ଅସୁବିଧାରେ ନିଜକୁ ଜଡିତ କରୁଥିଲେ । ବୟସାଧିକ୍ୟ ସତ୍ତ୍ୱେ କେତେଗୁଡିଏ ନିର୍ଦ୍ଦିଷ୍ଟ କାର୍ଯ୍ୟକ୍ରମରେ ଯୋଗଦେବା କ୍ଷେତ୍ରରେ ସେ ଥିଲେ ବଚନବଦ୍ଧ । ଏହି ଗୁଣଟି ଆଜିର ପିଢିଙ୍କ ନିମନ୍ତେ ଅବଶ୍ୟ ଶିକ୍ଷଣୀୟ ଓ କରଣୀୟ । ଦୁରାରୋଗ୍ୟ ବ୍ୟାଧିରେ ଚିକିତ୍ସିତ ହୋଇ ମଧ୍ୟ ଦୀର୍ଘ ବର୍ଷ ବଂଚିରହିବା ତାଙ୍କ ଜୀବନୀ ଶକ୍ତିର ପରାକାଷ୍ଠା ମାତ୍ର । ସେ ୨୦୧୦ ମସିହା ଜାନୁଆରୀ ୪ ତାରିଖରେ ଇହଲୀଳା ସମ୍ବରଣ କରିଥିଲେ ମଧ୍ୟ ତାଙ୍କ ଦ୍ୱାରା ପ୍ରଜ୍ଜ୍ୱଳିତ ଆଦର୍ଶ ଓ ବିଚାରଧାରାର ଆଲୋକ ଚିରକାଳକୁ ପ୍ରତିଭାତ ହୋଇରହିଛି । ମାନବୋଚିତ ଗୁଣାବଳୀ ପ୍ରତି ତାଙ୍କର ଅଙ୍ଗୀକାରବଦ୍ଧତା ସ୍ୱରୂପ ରାଜ୍ୟ ଓ ଜାତୀୟସ୍ତରୀୟ ଅନେକ ପୁରସ୍କାରରେ ତାଙ୍କୁ ସମ୍ମାନିତ କରାଯାଇଛି । ଆଜି, ତାଙ୍କର ଶ୍ରାଦ୍ଧବାର୍ଷିକୀରେ, ସତ୍ୟସନ୍ଧ ଏହି ଋଷିପ୍ରତିମଙ୍କୁ, ଆମର ଭକ୍ତିପୂତ ଶ୍ରଦ୍ଧାଞ୍ଜଳି ଜଣାଉଛୁ । ଆଗାମୀ ପିଢି ତାଙ୍କ ଜୀବନାଦର୍ଶରେ ଅନୁପ୍ରାଣିତ ହେଲେ, ସମାଜରେ ବ୍ୟାପିଥିବା ଭୌତିକ ଅଭାବ, ଅଶାନ୍ତି ଓ ହୀନମନ୍ୟତା ଅବଶ୍ୟ ଦୂରହୋଇ ପାରିବ, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । ଏହି ନିଷ୍କାମ କର୍ମଯୋଗୀଙ୍କ ସ୍ମରଣାର୍ଥେ ଗଠିତ 'ରାଜକିଶୋର ନାୟକ ଜାତୀୟ ପ୍ରତିଷ୍ଠାନ', ଗାନ୍ଧିବାଦୀ ସାମାଜିକ-ଅର୍ଥନୈତିକ ଦର୍ଶନର ପ୍ରସାର ସହ, ସାମାଜିକ ଅବ୍ୟବସ୍ଥା ଦୂର କରିବା, ମାନବୀୟ ପ୍ରଗତି ନିମନ୍ତେ ଦୁଃସ୍ଥ ତଥା ଗରିବଙ୍କୁ ସାହାଯ୍ୟ ଯୋଗାଇବା, ପରିବେଶର ସୁରକ୍ଷା ଓ ବୃକ୍ଷରୋପଣ କରିବା, ଶିକ୍ଷା କ୍ଷେତ୍ରରେ ସହାୟତା ଯୋଗାଇବା, ଦାରିଦ୍ର୍ୟ ଦୂରୀକରଣ, ସ୍ୱାସ୍ଥ୍ୟ ସମସ୍ୟାର ନିରାକରଣ, ପାଠାଗାର ପ୍ରତିଷ୍ଠା ଓ ଜୀବେ ଦୟା ପରି ଅନେକ କାର୍ଯ୍ୟକ୍ରମରେ ଜଡିତ ଅଛି ।

ସୂଚନା ଓ ଲୋକ ସମ୍ପର୍କ ବିଭାଗ
ଭୁବନେଶ୍ୱର



# ସଂଗ୍ରାମୀ ପ୍ରାଣନାଥ ପଟ୍ଟନାୟକ

ଜୟଶ୍ରୀ ପଟ୍ଟନାୟକ

ଈଶ୍ୱରଙ୍କ ସୃଷ୍ଟିରେ ପ୍ରତ୍ୟେକ ମଣିଷ ଜଣେ ଜଣେ ସଂଗ୍ରାମୀ। ଯେହେତୁ ସେ ସଂଗ୍ରାମ କରି ନିଜକୁ ଆଲୋକିତ କରିଛି ତଥା ଦେଶ ଓ ଜାତିକୁ ମଧ୍ୟ ଉଜ୍ଜ୍ୱଳମୟ କରିପାରିଛି। ତେଣୁ ମଣିଷକୁ ଗୋଟିଏ ଶ୍ରେଷ୍ଠ ଜୀବ ବୋଲି ଯୁଗ ଯୁଗ ଧରି ଏ ସୃଷ୍ଟି ପ୍ରତିପାଦନ କରି ଆସୁଛି। ଯେହେତୁ ମଣିଷ ପାଖରେ ଅନେକ ଅନ୍ତର୍ନିହିତ ଗୁଣ ଅଛି ତା' ଭିତରେ ସଂଗ୍ରାମ କରି ସଂଗ୍ରାମୀ ହେବାର ମୋହ ମଧ୍ୟ ବେଳେବେଳେ ତାକୁ ଅସ୍ତବ୍ୟସ୍ତ କରିଦିଏ। ମଣିଷ ଜନ୍ମଠାରୁ ମୃତ୍ୟୁ ଯାଏଁ ଭିନ୍ନ ଭିନ୍ନ ପ୍ରକାର ସଂଗ୍ରାମର ସମ୍ମୁଖୀନ ହୋଇଥାଏ ଏବଂ ତା'ର ଅବସ୍ଥା ଓ ଶକ୍ତି ଅନୁସାରେ ପ୍ରତ୍ୟେକ ସ୍ତରରେ ଉପୁଜୁଥିବା ବିରୋଧାତ୍ମକ ପରିସ୍ଥିତିକୁ ମୁକାବିଲା କରିବାରେ ସକ୍ଷମ ହୋଇପାରେ ଯାହା ନିଜର ଓ ଜାତିର କଲ୍ୟାଣରେ ସାଧିତ ହୋଇଥାଏ।

ସଂଗ୍ରାମର ଅର୍ଥ ହେଉଛି ଯୁଦ୍ଧ । ଦେଶ ଦେଶ ଭିତରେ ପରାଧୀନତାର ମୁକ୍ତି ଲାଭ ନିମନ୍ତେ ଅନେକ ସଂଗ୍ରାମୀ ନିଜ ଜୀବନକୁ ଝାସ ଦେଇଛନ୍ତି ମାଟି ମାଆର ଟେକ ରଖିଛନ୍ତି ସେମାନଙ୍କୁ ଆକ୍ଷରିକ ଅର୍ଥରେ ସଂଗ୍ରାମୀ କୁହାଯାଏ। ଏହି ପରିପ୍ରେକ୍ଷୀରେ ଓଡିଶାର ସ୍ୱାଧୀନତା କ୍ଷେତ୍ରରେ ପ୍ରାଣନାଥ ପଟ୍ଟନାୟକ ଏକାଧାରରେ ଥିଲେ ଜଣେ ସ୍ୱାଧୀନତା ସଂଗ୍ରାମୀ, ଦେଶପ୍ରେମୀ ଏବଂ ବିପ୍ଳବୀ ଜନନାୟକ। ସେ ଥିଲେ ସାମ୍ୟବାଦୀ ଚିନ୍ତାଧାରାର ଅଗ୍ରଦୂତ, ଖଟିଖିଆ ମଣିଷ ଜୀବନର ସାଥୀ, ସମାଜ ସଙ୍ଗଠକ ଏବଂ ଏକ ଶୋଷଣହୀନ ସମାଜର ଦୃଢ଼ ପକ୍ଷପାତୀ ଓ ଜଣେ ଦରଦୀ ମଣିଷ।

ପୁରୀ ଜିଲ୍ଲାର କଣାସ ନିକଟବର୍ତ୍ତୀ ଡିମିରି ଗ୍ରାମରେ ୧୯୦୫ ମସିହା ନଭେମ୍ବର ୧୬ ତାରିଖରେ ସେ ଜନ୍ମ ଗ୍ରହଣ କରିଥିଲେ। ତାଙ୍କ ପିତାଙ୍କ ନାମ ମଦନ ମୋହନ ପଟ୍ଟନାୟକ ଓ ମାତାଙ୍କ ନାମ ଚିତ୍ରାଦେବୀ । ପିଲାବେଳୁ ପୁରୀ ଜିଲ୍ଲା ସ୍କୁଲରେ ଗୋପବନ୍ଧୁଙ୍କ ସହ ତାଙ୍କର ସାକ୍ଷାତ ହୋଇଥିଲା। ନର ନାରାୟଣ ସେବା ହିଁ ଭଗବତ୍ ସେବା, ଏହି ମୂଳମନ୍ତ୍ରର ପ୍ରେରଣା ସେ ପାଇଥିଲେ ଗୋପବନ୍ଧୁଙ୍କଠାରୁ । ପରେ ସେ ସତ୍ୟବାଦୀରେ ପାଠ ପଢ଼ିଲେ।

୧୯୨୦ ମସିହାରେ ନାଗପୁର ଅଧିବେଶନରେ ଅସହଯୋଗ ଆନ୍ଦୋଳନ ଗାନ୍ଧୀଙ୍କ ନେତୃତ୍ୱରେ ନିଆଗଲା। ଏଥିରେ ନିଷ୍ପତ୍ତି ନିଆଗଲା ସ୍କୁଲ, କଲେଜ ବର୍ଜନ କରିବା ପାଇଁ। ଏହି ସମୟରେ ସେ ସ୍କୁଲ ଛାଡି ଆନ୍ଦୋଳନରେ ଯୋଗ ଦେଲେ।

୧୯୨୮ ସାଇମନ କମିଶନକୁ ଭାରତର ଜାତୀୟ କଂଗ୍ରେସ ବାସନ୍ଦ କଲା । ସାରା ଭାରତବାସୀ କଳାପତାକା ଦେଖାଇ ବିକ୍ଷୋଭ କଲେ ସାଇମନ ସ୍ୱଦେଶ ଫେରିଯାଅ ବୋଲି। ସେତେବେଳେ ରେଭେନ୍ସା କଲେଜରେ ଛାତ୍ର ଧର୍ମଘଟର ନେତୃତ୍ୱ ନେଇଥିଲେ ପ୍ରାଣନାଥ ପଟ୍ଟନାୟକ।

୧୯୩୦ କଂଗ୍ରେସର କାର୍ଯ୍ୟକାରୀ କମିଟି ସମଗ୍ର ଦେଶରେ ଜାନୁୟାରୀ ୨୬ ତାରିଖକୁ ପୂର୍ଣ୍ଣ ସ୍ୱରାଜ ଦିବସ ପାଳନ ପାଇଁ ଡାକରା ଦେଲା। ଏହି ପରିପ୍ରେକ୍ଷୀରେ ଏକ ପ୍ରତିଜ୍ଞାପତ୍ର ସ୍ୱାକ୍ଷର କରାଯିବାର ନେତୃତ୍ୱ ନେଇଥିଲେ ପ୍ରାଣନାଥ ପଟ୍ଟନାୟକ। ୧୯୩୦ ଲବଣ ସତ୍ୟାଗ୍ରହରେ ଯୋଗଦେଇ ଗିରଫ ହେଲେ ଓ ପୁରୀ ଜେଲରେ ରହିଲେ। ସତ୍ୟାଗ୍ରହୀମାନେ ତାଙ୍କ ନେତୃତ୍ୱରେ ବିଦେଶୀ ଦ୍ରବ୍ୟ ଓ ବସ୍ତ୍ର ବର୍ଜନରେ ଲାଗି ପଡିଲେ।

୧୯୩୨ ମସିହାରେ ବିଲାତରେ ଗୋଲଟେବୁଲ ବୈଠକ ବସିଲା। ଗାନ୍ଧିଜୀ ନିରାଶ ହୋଇ ବୈଠକରୁ ଫେରିଲେ। ସେତେବେଳେ ପୁନର୍ବାର ଦେଶ ପାଇଁ ଆନ୍ଦୋଳନ ମୁଣ୍ଡ ଟେକିଲା।

ପ୍ରାଣନାଥ ବନାରସ କାଶୀ ବିଦ୍ୟାପୀଠ ଛାଡି ଆନ୍ଦୋଳନ କରିବାକୁ ଓଡିଶା ପଳାଇ ଆସିଲେ। ସେ ସେଠାରୁ ଆସି ଜଟଣୀରେ ବିଦେଶୀ ଦ୍ରବ୍ୟ ବର୍ଜନ କରି ବିଦେଶୀ ବସ୍ତ୍ର ପୋଡି ମାମଲାରେ ଗିରଫ ହେଲେ ଏବଂ ଛଅ ମାସ କାଳ ଜେଲ ଦଣ୍ଡ ଭୋଗିଲେ।

୧୯୩୪ ମସିହା ଜୁନ୍ ୫ ତାରିଖରେ କଂଗ୍ରେସର ଭାବଧାରା ସହିତ ମତାନ୍ତର ହେବାରୁ ସେ କଂଗ୍ରେସ ସୋସିଆଲିଷ୍ଟ ପାର୍ଟି ଗଠନ କଲେ । ଏଥିରେ ସର୍ବଶ୍ରୀ ନବକୃଷ୍ଣ ଚୌଧୁରୀ, ମାଳତୀ ଚୌଧୁରୀ, ସୁରେନ୍ଦ୍ରନାଥ ଦ୍ୱିବେଦୀ, ଗୋକୁଳ ମୋହନ ରାୟ ଚୂଡାମଣି, ମୋହନ ଦାସ ପ୍ରମୁଖ ଯୋଗଦେଲେ। ସେତେବେଳେ ଭଗବତୀ ଚରଣ ପାଣିଗ୍ରାହୀଙ୍କ ସମ୍ପାଦନାରେ ସାରଥୀ, ଆଧୁନିକ ଓ କୃଷକ ସଙ୍ଗଠନକୁ ମଜବୁତ୍ କରିବା ପାଇଁ କୃଷକ ନାମରେ ଏକ ସାପ୍ତାହିକ ପତ୍ରିକା ମଧ୍ୟ ପ୍ରକାଶ ପାଇଲା।

୧୯୩୫ ମସିହାରେ ଚଣାହାଟର କୃଷ୍ଣ ମୋହନ ପଟ୍ଟନାୟକଙ୍କ କନ୍ୟା ସହ ତାଙ୍କର ବିବାହ କାର୍ଯ୍ୟ ସମ୍ପନ୍ନ ହୋଇଥିଲା। ୧୯୩୬ ମସିହା ସେପ୍ଟେମ୍ବର୧୫ ତାରିଖରେ ଏକ ବିରାଟ କୃଷକ ସମାବେଶ ଖୋର୍ଦ୍ଧାରେ ଅନୁଷ୍ଠିତ ହେଲା। ଏଥିରେ ଜମିଦାରୀ ପ୍ରଥା ବିରୁଦ୍ଧରେ ଲଢ଼ିବାର ଶପଥ ନେଇଥିଲେ ପ୍ରାଣନାଥ ପଟ୍ଟନାୟକ।

୧୯୩୯ ମସିହା ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ କଂଗ୍ରେସ ମନ୍ତ୍ରିମଣ୍ଡଳ ଇସ୍ତଫା ଦେବାରୁ ବ୍ରିଟିଶ ସରକାର ବିରୁଦ୍ଧରେ ଆନ୍ଦୋଳନ ତୀବ୍ର ହେଲା। ପ୍ରାଣନାଥ ବାବୁ ଖୋର୍ଦ୍ଧାରୁ ଗିରଫ ହୋଇ ଦେଢ଼ ବର୍ଷ ଜେଲରେ ରହିଥିଲେ। ଜେଲରେ ଅଟକ ଥିବା ସମୟରେ ୪୦ ଦିନ ଧରି ସେ ଅନଶନ କରିଥିଲେ।

୧୯୪୨ ମସିହା ଅଗଷ୍ଟ ବିପ୍ଳବ ପୂର୍ବରୁ ଗାନ୍ଧିଜୀ ସମଗ୍ର ଦେଶକୁ ଅହିଂସା ଆନ୍ଦୋଳନ ପାଇଁ ପ୍ରସ୍ତୁତ କରୁଥିଲେ। ପ୍ରାଣନାଥ ବାବୁ ଓଡିଶାରୁ ସତ୍ୟାଗ୍ରହୀ ଭାବେ ଗାନ୍ଧିଜୀଙ୍କ ଦ୍ୱାରା ବଛା ଯାଇଥିଲେ।

ସେତେବେଳେ କନିକା ରାଜାଙ୍କର ଜମିଦାରୀ ଥିଲା । ପଟିଆ ଅଂଚଳ କୁଆଖାଇ ବନ୍ୟାରେ ହଜାର ହଜାର ଏକର ବାଲିଚର ହେଉଥିଲା। ପଟିଆକୁ ଏଥିରୁ ରକ୍ଷା କରିବା ପାଇଁ ବନ୍ଧ ନିର୍ମାଣର ଶୁଭ ଦିଆଗଲା। ପ୍ରାଣନାଥଙ୍କ ନେତୃତ୍ୱରେ ୫ ମାଇଲ ଲମ୍ବର ବନ୍ଧ ପକାଗଲା । ନିଜେ ପ୍ରାଣନାଥ ବାବୁ ବୋଝରେ ମାଟି ବୋହିଥିଲେ।

ଗଡଜାତ ପ୍ରଜା ଆନ୍ଦୋଳନ, ଢ଼େଙ୍କାନାଳ, ନୀଳଗିରି, ରଣପୁର ଆଦି ସ୍ଥାନରେ ହୋଇଥିଲା । ସେଥିରେ ପ୍ରାଣନାଥ ବାବୁ ସକ୍ରିୟ ସହଯୋଗ ଦେଇଥିଲେ।

୧୯୫୫ ମସିହାରେ କଟକରେ ଦଳେଇଘାଇ ଭାଙ୍ଗିଲା। ବନ୍ୟାରେ ଲକ୍ଷ ଲକ୍ଷ ଲୋକ ଭାସିଗଲେ। ସେ ଖୋର୍ଦ୍ଧା ଓ ଜଟଣୀରୁ ରିଲିଫ ସାମଗ୍ରୀ ସଂଗ୍ରହ କରି ବିପନ୍ନମାନଙ୍କୁ ବାଂଟିଲେ।

ରାଜନୀତିରେ ପ୍ରବେଶ କରି ସେ ଏମ୍.ଏଲ.ଏ ହୋଇଥିଲେ। ପ୍ରାଣନାଥ ବାବୁ ତାଙ୍କର ସମସ୍ତ ଶକ୍ତି ଖଟାଇ ୧୯୪୫ ମସିହାରେ ଜଟଣୀଠାରେ ହାଇସ୍କୁଲ ପ୍ରତିଷ୍ଠା କରିଥିଲେ, ଯାହା ଅଧୁନା ପ୍ରାଣନାଥ ବିଦ୍ୟାଳୟ ନାମରେ ନାମିତ ହୋଇ ଛାତ୍ରମାନଙ୍କୁ ଉନ୍ନତ ମାନର ଶିକ୍ଷା ଯୋଗାଇବାରେ ସମର୍ଥ ହୋଇପାରୁଛି। ଓଡିଆ ଶିକ୍ଷିତ ଯୁବକ ସୃଷ୍ଟି କରିବା ଲକ୍ଷ୍ୟରେ ସେ ମଧ୍ୟ ଖୋର୍ଦ୍ଧା ମୁକୁନ୍ଦପ୍ରସାଦଠାରେ ୧୯୫୯ରେ ପ୍ରାଣନାଥ ମହାବିଦ୍ୟାଳୟ ପ୍ରତିଷ୍ଠା କରିଥିଲେ। ଯେଉଁଥିରେ ଜଟଣୀ, ଖୋର୍ଦ୍ଧା, ଭୁବନେଶ୍ୱର ଏବଂ ଆଖପାଖ ଅଂଚଳର ଅନେକ ଛାତ୍ରଛାତ୍ରୀ ପାଠ ପଢ଼ିବାରେ ଉପକୃତ ହୋଇଛନ୍ତି ଏବଂ ହେଉଛନ୍ତି ମଧ୍ୟ । ଡକ୍ଟର ହରେକୃଷ୍ଣ ମହତାବ ଜୁଲାଇ ୧୯ ତାରିଖରେ ଏହି ମହାବିଦ୍ୟାଳୟକୁ ଉଦ୍‌ଘାଟନ କରିଥିଲେ।

ସେ ସର୍ବଦା କମ୍ୟୁନିଷ୍ଟ ମତବାଦରେ ବିଶ୍ୱାସ କରୁଥିଲେ ତଥାପି ୧୯୬୨ ରେ ଚୀନର ଭାରତ ଆକ୍ରମଣକୁ ସେ ନିନ୍ଦା କରୁଥିଲେ। ସେ ଥିଲେ ଆଜୀବନ ସଂଗ୍ରାମୀ। ତାଙ୍କ ରକ୍ତରେ ସଂଗ୍ରାମର ଶୋଣିତ ବୋହୁଥିଲା। ହୃଦୟରେ ଦେଶପାଇଁ ଅଶେଷ ପ୍ରେମ ଥିଲା। ସେ ଥିଲେ ଜନତା ଜନାର୍ଦ୍ଦନ ପାଇଁ ଏକ ବଳିଷ୍ଠ ପ୍ରେରଣା। ସେ ଥିଲେ ଏକାଧାରରେ ସଂଗ୍ରାମୀ,ସାହିତ୍ୟିକ ଓ ଜନସେବକ। ସେ ଥିଲେ ଅଲିଭା ଦୀପଶିଖା। ସେ ଥିଲେ ଦରିଦ୍ର ଜନତାର ବନ୍ଧୁ ଆଶା ଓ ଆଶ୍ୱାସନା। ନିଜ ଜୀବନର ସମସ୍ତ ସୁଖ, ସୌହାର୍ଦ୍ଦ୍ୟକୁ ଜଳାଞ୍ଜଳି ଦେଇ କାରାବରଣ କରିଥିଲେ।

୧୯୭୦ ମସିହା ଅକ୍ଟୋବର ୫ ତାରିଖରେ କଲିକତାଠାରେ ଏହି ମହାନ ଆତ୍ମାର ଅବସାନ ଘଟିଲା। ମୃତ୍ୟୁ ତାଙ୍କର ନଶ୍ୱର ଶରୀରକୁ ଛୁଇଁ ପାରି ନ ଥିଲା। ସେ ଥିଲେ ଦେଶର ଗୌରବ ଏବଂ ଏକ ସୁଯୋଗ୍ୟ ସନ୍ତାନ।

ପ୍ରାଣନାଥ ପଟ୍ଟନାୟକଙ୍କୁ ଜଣେ ଆଦର୍ଶ ପୁରୁଷ ଭାବରେ ଯଥାର୍ଥରେ ଡଃ ହରେକୃଷ୍ଣ ମହତାବ କହିଛନ୍ତି– ତାଙ୍କ ପାଇଁ କେବଳ ଖୋରଧା ନୁହେଁ, କମ୍ୟୁନିଷ୍ଟ ପାର୍ଟି ନୁହେଁ ସମଗ୍ର ଓଡିଶା ଝୁରୁଛି।

◆ ◆ ◆

ଡଃ ରାଧାନାଥ ରଥ କହିଛନ୍ତି– ପ୍ରାଣନାଥ ବାବୁଙ୍କ ଉଦ୍ୟମରେ ଖୋରଧାଠାରେ ଯେଉଁ ବିଶାଳ ଶିକ୍ଷାୟତନ ମୁଣ୍ଡ ଟେକିଛି ସେଥିପାଇଁ ତାଙ୍କର ତ୍ୟାଗ, ଶିକ୍ଷା ପ୍ରତି ଅସୀମ ଆଗ୍ରହ, ବନ୍ଧୁ ବତ୍ସଳତା ପାଇଁ ସେ ଚିର ସ୍ମରଣୀୟ ହୋଇ ରହିବେ।

ଡଃ ଶ୍ରୀରାମ ଚନ୍ଦ୍ର ଦାଶ କହିଛନ୍ତି– ସ୍ୱାଧୀନତା ସଂଗ୍ରାମ, କୃଷକ ଆନ୍ଦୋଳନ, ଗଡଜାତ ପ୍ରଜା ଆନ୍ଦୋଳନ ଓ ସାମ୍ୟବାଦୀ ଆନ୍ଦୋଳନର ସେ ଥିଲେ କର୍ଣ୍ଣଧାର। ବହୁ ପଣ୍ଡିତ, କବି, ଅଧ୍ୟାପକ, ପ୍ରଶାସକ, ପ୍ରାଣନାଥ ପଟ୍ଟନାୟକଙ୍କର କାର୍ଯ୍ୟଧାରା ପ୍ରତି ଅନ୍ତରର ସମବେଦନା ଜଣାଇଛନ୍ତି। ସେ ଥିଲେ ଯଥାର୍ଥରେ ଜଣେ ଅଜାତଶତ୍ରୁ । ତାଙ୍କର ସ୍ମୃତି ଖୋରଧା ମାଟିରେ ଚିରସ୍ମରଣୀୟ ହୋଇ ଆବାଳ–ବୃଦ୍ଧ–ବନିତାଙ୍କର ହୃଦୟରେ ରହିଛି ଓ ରହିଥିବ ମଧ୍ୟ।

ମଧୁସୂଦନ ନଗର
ଜଟଣୀ, ଖୋର୍ଦ୍ଧା

---

# ଆମ ସମ୍ବିଧାନ

ଦିଲ୍ଲୀପ କୁମାର ବେହୁରା

ଆମ ସମ୍ବିଧାନ ଅଟଇ ନିଆରା
ନିଆରା ବି ଆମ ଜାତି
ଆମରି ସଂସ୍କୃତି ନିଆରା ବି ପୁଣି
ରହିଅଛି ଭଲ ନୀତି ।
କେତେ ଯେ ଦେଶର ସମ୍ବିଧାନ ନୀତି
ଭଲରେ ତର୍ଜମା କରି
ଆମ ସମ୍ବିଧାନେ ରଖିଦେଲେ ତାହା
କେତେ ଯେ ନିୟମ ଭରି ।
ଆମ୍ବେଦକର ଦେଶ ପାଇଁ ହେଲେ
ସମ୍ବିଧାନର ପ୍ରଣେତା
ସହଯୋଗୀମାନେ ମିଶି ଲେଖିଗଲେ
ଲମ୍ବା ଚଉଡ଼ା ଚିଠା ।
ସମଗ୍ର ବିଶ୍ୱରେ ବଡ଼ ସମ୍ବିଧାନ
ଗଢ଼ି ତୋଳିଦେଲେ ବସି
ଦେଶ ଚଳାଉଛେ ନୀତିମାନ ଧରି
ଆମେରେ ଭାରତବାସୀ ।
ମହାତ୍ମା ଗାନ୍ଧୀ ଜାତି ପିତା ହୋଇ
ଦେଶକୁ ସ୍ୱାଧୀନ କଲେ ।
ନେହେରୁ ଆମର ଦେଶର ପ୍ରଥମ
ପ୍ରଧାନମନ୍ତ୍ରୀ ହେଲେ ।
ପଞ୍ଚଶୀଳ ନୀତି ଯା'ର ଅଟେ ବଡ଼
ବିଶ୍ୱର ଏକତା ପାଇଁ
ଶାନ୍ତି ମୈତ୍ରୀ ଭାବ ରଖି ଚାଲିବାକୁ
ସଭିଏଁ ଆସିଲେ ଧାଇଁ ।
ଧର୍ମ ନିରପେକ୍ଷ ରାଷ୍ଟ୍ର ଭାବରେ
ହୋଇଲା ଭାରତ ଗଣା
ଛୋଟଠାରୁ ବଡ଼ ସବୁରି ହିତରେ
ନିୟମ ହୋଇଲା ଟଣା
କି ଗରିବ ଧନୀ ଅବା ନରନାରୀ
ସବୁରେ ଏକତା ଭରି
ଜାତି ଅଜାତିର ଫରକ ଯେଉଁଠି
ହୁଏ ନାହିଁ ଟିକେ ବାରି
ଆମେ ହିଁ ଦେଖିଲେ ଆମରି ଆଖିରେ
ଆମ ଦେଶ ଭବିଷ୍ୟତ
ତ୍ରିରଙ୍ଗା ପତାକା ଉଡ଼ାଇଲେ ଆମେ
ଗାଇଲେ ଜାତିର ଗୀତ
ଆମ ଏ ଦେଶରେ ସଭିଏଁ ସମାନ
ଆମେରେ ଭାରତବାସୀ
ଦେଶ ହିତ ପାଇଁ କରିଯିବା କାମ
ଆମେ ସବୁ ମିଳିମିଶି ।

ଗ୍ରା: ପୋଖରିଆ, ପୋଅ: ମହୁଲିଆ
ରାଜନଗର, କେନ୍ଦ୍ରାପଡ଼ା

# ବିଶିଷ୍ଟ ଗାନ୍ଧିବାଦୀ ଓ ସଂଗ୍ରାମୀ ପ୍ରାଣକୃଷ୍ଣ ପଢ଼ିହାରୀ

**କୃଷ୍ଣଚନ୍ଦ୍ର ସୁଆର**

ପୁଣ୍ୟଭୂମି ଭାରତବର୍ଷକୁ ବ୍ରିଟିଶ ଶାସନାଧୀନ ପରାଧୀନ ଶୃଙ୍ଖଳରୁ ମୁକ୍ତ କରିବା ପାଇଁ ସ୍ୱାଧୀନତା ଆନ୍ଦୋଳନରେ ଝାସ ଦେଇଥିବା ସଂଗ୍ରାମୀମାନଙ୍କ ମଧ୍ୟରେ ପଣ୍ଡିତ ପ୍ରାଣକୃଷ୍ଣ ପଢ଼ିହାରୀ ଥିଲେ ଅନ୍ୟତମ ।

ଲବଣ ସତ୍ୟାଗ୍ରହ, ଭାରତଛାଡ ଆନ୍ଦୋଳନ, ଭୂଦାନ ଆନ୍ଦୋଳନ, ଅସ୍ପୃଶ୍ୟତା ନିବାରଣ, ବିଦେଶୀ ବସ୍ତ୍ର ବର୍ଜନ ଓ ନିଶାଦ୍ରବ୍ୟ ବର୍ଜନ ପ୍ରଭୃତିରେ ସକ୍ରିୟ ଅଂଶ ଗ୍ରହଣ କରି ଦେଶମାତୃକା ପାଇଁ ସେ ବହୁବାର ଜେଲ୍ ଯାଇ ମାଡ ମଧ୍ୟ ଖାଇଥିଲେ । ଗାନ୍ଧିଜୀଙ୍କ ନୀତି ଓ ଆଦର୍ଶରେ କେବଳ ଅନୁପ୍ରାଣିତ ହୋଇ ନଥିଲେ ତାହା ଆଚରଣ ଓ ଉଚ୍ଚାରଣରେ ଶେଷ ନିଃଶ୍ୱାସ ପର୍ଯ୍ୟନ୍ତ ସେ ପାଳିଥିଲେ । ବହୁ ସାଧା ସିଧା ଓ ନିରାଡମ୍ବର ଜୀବନ ଯାପନ କରୁଥିଲେ । ଆଣ୍ଠୁ ନ ଲୁଚିବା ଭଳି ମୋଟା ଖଦଡ ଲୁଗା ସାତହାତି ପରିଧାନ କରିବା ସହ ଦେହରେ ଖଣ୍ଡିଏ ଖଦଡ ଚାଦର ପକାଉ ଥିଲେ ।

ସେ ଥିଲେ ଏକାଧାରରେ ଜଣେ ଆଦର୍ଶ ଶିକ୍ଷକ, ଧର୍ମପରାୟଣ, ସମାଜସେବୀ, ସ୍ୱାଧୀନତା ସଂଗ୍ରାମୀ, ସଂଗଠକ, ବହୁମୁଖୀ ପ୍ରତିଭାର ଅଧିକାରୀ ତଥା ଶାନ୍ତ, ମିଷ୍ଟଭାଷୀ ମଣିଷ ଭାବରେ ସବୁରି ପ୍ରିୟ ଓ ପରିଚିତ ।

ଏହି ପ୍ରତିଭାସଂପନ୍ନ ବ୍ୟକ୍ତିଙ୍କର ଆବିର୍ଭାବ ହୁଏ ଜଗତସିଂହପୁର ଜିଲ୍ଲାର ଜୟବଡ ଗାଁରେ । ୧୮୮୩ ମସିହା ଜାନୁଆରୀ ମାସ ୨୧ ତାରିଖରେ ଏକ ସେବକ ବ୍ରାହ୍ମଣ ପରିବାରରେ । ତାଙ୍କ ପିଲା ଦିନର ଡାକ ନାଁ ଥିଲା ପାଣୁ । ତାଙ୍କ ପିତାଙ୍କ ନାମ କାଳନ୍ଦୀ ଚରଣ ପଢ଼ିହାରୀ ଓ ମାତାଙ୍କ ନାମ ପଟ ଦେବୀ । ତାଙ୍କ ପିତା ଗ୍ରାମର ଇଷ୍ଟଦେବ ଶ୍ରୀଜଗନ୍ନାଥ ଜୀଉଙ୍କ ସେବକ ଥିଲେ । ସେତେବେଳେ ବ୍ରାହ୍ମଣ ଘରେ ବାଲ୍ୟ ବିବାହ ପ୍ରଥା ପ୍ରଚଳିତ ଥିବାରୁ ସେ ମାତ୍ର ୧୦ ବର୍ଷ ବୟସରେ ସେ ବିବାହ କରିଥିଲେ । ସେ ବହୁତ ବୁଦ୍ଧିମାନ ଓ ନିର୍ଭୀକ ଥିଲେ । ବହୁ ଆର୍ଥିକ ଅସ୍ୱଚ୍ଛଳତା ମଧ୍ୟରେ ତାଙ୍କର ଜୀବନ କୁସୁମ ବିକଶିତ ହୋଇଥିଲା । ଗ୍ରାମ ସ୍କୁଲରେ ସେ ମାଇନର ପାସ୍ କଲାପରେ କଟକ ଏଲିମେଣ୍ଟାରି ଟ୍ରେନିଂ ସ୍କୁଲରେ ନାମ ଲେଖାଇଥିଲେ । ତତ୍କାଳୀନ ସମୟରେ ଉତ୍କଳଗୌରବ ମଧୁସୂଦନ ଦାସ ସେହି ସ୍କୁଲରେ ପ୍ରଧାନ ଶିକ୍ଷକ ଥିଲେ । ତାଙ୍କର ନମ୍ର ଓ ଭଦ୍ର ବ୍ୟବହାରରେ ଶିକ୍ଷକମାନେ ମୁଗ୍ଧ ହୋଇ ତାଙ୍କୁ ଭଲ ପାଉଥିଲେ । ମଧୁବାବୁ ତାଙ୍କ ପାଠପଢ଼ାରେ ଖୁସି ହୋଇ ତାଙ୍କୁ ମେଧାବୃତ୍ତି ପ୍ରଦାନ କରିଥିଲେ । ସେତିକିବେଳେ ପ୍ରାଣକୃଷ୍ଣ ମଧୁବାବୁ ଓ କବିବର ରାଧାନାଥ ରାୟଙ୍କ ସଂସ୍ପର୍ଶରେ ଆସି ସାହିତ୍ୟ ପ୍ରତି ଆଗ୍ରହୀ ହୋଇ ପଡିଥିଲେ ଓ ଛାତ୍ର ଜୀବନରେ ସେସମୟରେ ପ୍ରକାଶ ପାଉଥିବା ପତ୍ର ପତ୍ରିକାମାନଙ୍କରେ ଲେଖା ପ୍ରକାଶ କରୁଥିଲେ । କଟକ ଏଲିମେଣ୍ଟାରୀ ଟ୍ରେନିଂ ସ୍କୁଲରୁ ପାସ୍ କଲାପରେ ସେ ପ୍ରଥମେ ଖଣ୍ଡପଡା ମାଇନର ସ୍କୁଲରେ ହେଡପଣ୍ଡିତ ଓ କବିରପୁର, ଦଶରଥପୁର, ଜଗତ୍‌ସିଂହପୁରରେ ପ୍ରଧାନଶିକ୍ଷକ ଭାବେ କାର୍ଯ୍ୟ କରିଥିଲେ ।

୧୯୨୧ ମସିହା ଗାନ୍ଧିଜୀଙ୍କ ଅସହଯୋଗ ଆନ୍ଦୋଳନ ବେଳେ ବହୁ ଦେଶପ୍ରେମୀ ଛାତ୍ର, ଯୁବକ, ସ୍ୱେଚ୍ଛାସେବୀ, ସରକାରୀ କର୍ମଚାରୀ, ଉଚ୍ଚପଦସ୍ଥ ଚାକିରି ଛାଡି ମା'ମାଟିର ସୁରକ୍ଷା ଓ ବ୍ରିଟିଶ୍‌ରାଜ ବିରୁଦ୍ଧରେ ଏଥିରେ ଯୋଗ ଦେଇଥିଲେ । ସେତିକିବେଳେ ପ୍ରାଣକୃଷ୍ଣ ଦଶରଥପୁର ଏଲିମେଣ୍ଟାରୀ ସ୍କୁଲରୁ ବଦଳି ହୋଇ ଜଗତ୍‌ସିଂହପୁର ଆସିଥାନ୍ତି । ସ୍ଥାନୀୟ ନେତୃବର୍ଗଙ୍କ ମଧ୍ୟରେ ସଂଗ୍ରାମୀ ଭାଗୀରଥି ମହାପାତ୍ର, ବୀରକିଶୋର ଦାସ, ଗୋପବନ୍ଧୁ ଚୌଧୁରୀ, ନବକୃଷ୍ଣ ଚୌଧୁରୀଙ୍କ ସହିତ ମିଶି କଂଗ୍ରେସ ସଭା ସମିତିରେ ଯୋଗ ଦେଉଥିଲେ । ଏସବୁ କଥା ସରକାରଙ୍କ

ଦୃଷ୍ଟିକୁ ଆସିବାରୁ ଶିକ୍ଷା ବିଭାଗ ତାଙ୍କୁ ଯାଜପୁରକୁ ବଦଳି ନିର୍ଦ୍ଦେଶ ଦେଲେ କିନ୍ତୁ ସେ ଯାଜପୁର ନଯାଇ ଚାକିରି ଛାଡି ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇଥିଲେ । ସେଦିନ ଥିଲା ୧୯୨୧ ମସିହା ଜୁଲାଇ ୧୭ ତାରିଖ । ସରକାରୀ ଚାକିରି ଛାଡିବା ପାଇଁ ତାଙ୍କୁ ବହୁ ବନ୍ଧୁ ଓ ହିତାକାଂକ୍ଷୀ ମନା କରିବା ସତ୍ତ୍ୱେ ତାଙ୍କ ସହଧର୍ମିଣୀ କିନ୍ତୁ ଦେଶ କାମରେ ଲାଗିବାକୁ ପ୍ରବର୍ତ୍ତାଇଥିଲେ ଏବଂ ସମସ୍ତ ଘର କାମ ସେ ଅନାୟାସରେ କରିପାରିବେ ବୋଲି କହିଥିଲେ । ଏତଦ୍‌ବ୍ୟତୀତ ସେ ଗୋଲାମଗିରିକୁ ନାପସନ୍ଦ କରୁଥିଲେ । ଉପଯୁକ୍ତ ପତିଙ୍କର ଉପଯୁକ୍ତ ପତ୍ନୀ ହିସାବରେ ଗୁଣିମଣୀ ଦେବୀ ଥିଲେ ଜଣେ ପରମ ମହିୟସୀ ଓ ସାର୍ଥକନାମା । ନିଜ ନାମ ଗୁଣମଣୀ ସାଙ୍ଗକୁ ଭଲ ବୁଦ୍ଧି ଓ ଗୁଣରେ ସ୍ୱାମୀଙ୍କୁ ପ୍ରୋତ୍ସାହିତ କରିବା ଖୁବ୍ କମ୍ ଭାଗ୍ୟବାନଙ୍କ କପାଳରେ ସତରେ ଯୁଟେ ।

ପ୍ରାଣକୃଷ୍ଣ ସ୍ୱାଧୀନତା ସଂଗ୍ରାମରେ ଯୋଗଦେବା ପରଠାରୁ କଂଗ୍ରେସ ସଭ୍ୟ ସଂଗ୍ରହ ଓ ସ୍ୱାଧୀନତା ଆନ୍ଦୋଳନର ମୁଖ୍ୟ ହୋଇ ଉଠିଲେ । ତାଙ୍କ ଘରେ ବହୁ ମାନ୍ୟଗଣ୍ୟ ସଂଗ୍ରାମୀମାନେ ଆସି ବିଭିନ୍ନ ଆଲୋଚନା ଓ କାର୍ଯ୍ୟପନ୍ଥା ନିର୍ଦ୍ଧାରଣ କରୁଥିଲେ । ତନ୍ମଧ୍ୟରେ ଥିଲେ ଭାଗୀରଥି ମହାପାତ୍ର, ଗୋପବନ୍ଧୁ ଚୌଧୁରୀ, ରମାଦେବୀ, ହରେକୃଷ୍ଣ ମହତାବ, ବିଜୁବାବୁ, ନୀଳମଣି ପ୍ରଧାନ ଆଦି ପ୍ରଧାନ । ତାଙ୍କ ନାଁରେ ମିଥ୍ୟା ମୋକଦ୍ଦମା ଓ ପୋଲିସ ତରଫରୁ ଖାନତଲାସ ହୋଇଥିଲେ ହେଁ ଶେଷ ନିଃଶ୍ୱାସ ପର୍ଯ୍ୟନ୍ତ ସେ ନିଜ ଆଦର୍ଶ ପଥରୁ କେବେବି ବିଚ୍ୟୁତ ହୋଇ ନଥିଲେ । ସେଥିରେ ସେ ଥିଲେ ଦୃଢ଼ ଓ ନିଶ୍ଚିତମନା । ଗୋପାଳନ, ମହୁଚାଷ, ଅରଟରେ ସୂତାକଟା, ତନ୍ତରେ ଲୁଗାବୁଣା, ହିନ୍ଦୀଶିକ୍ଷା, ଅସ୍ପୃଶ୍ୟତା ନିବାରଣ ଇତ୍ୟାଦି କାମ ସବୁକୁ ଗ୍ରାମାଞ୍ଚଳରେ ପରିପ୍ରସାର ଓ ସ୍ୱାବଲମ୍ବୀ ହେବା ଲକ୍ଷ୍ୟ ନେଇ ସେ କେତେକ ସଂଗ୍ରାମୀ ସାଥୀମାନଙ୍କ ସହାୟତାରେ ଜଗତ୍‌ସିଂହପୁର ଅଳକା ନଇ କୂଳ ପାଖ ଆମ୍ବତୋଟାରେ ଗୋଟିଏ ଆଶ୍ରମ ନିର୍ମାଣ କରିଥିଲେ । ଏହା 'ଅଳକା ଆଶ୍ରମ' ନାମରେ ଇତିହାସ ପ୍ରସିଦ୍ଧ । ଏଠାରେ ବହୁ ସ୍ୱେଚ୍ଛାସେବୀ ସ୍ୱତଃ ଆଗ୍ରହ ନେଇ ଯୋଗ ଦେଇଥିଲେ । ରମାଦେବୀ, ନବକୃଷ୍ଣ ଚୌଧୁରୀ, ସରଳା ଦେବୀ ପ୍ରଭୃତି ଅଳକା ଆଶ୍ରମରେ ରହି କର୍ମୀମାନଙ୍କୁ ତାଲିମ ଦେଉଥିଲେ । ଏହି ଆଶ୍ରମ ପାଇଁ ଚାଟ୍ରା ଗ୍ରାମର ଭାଗୀରଥି ମହାପାତ୍ରଙ୍କ ପିତା ଓ ନିମାଇଁ ପଟ୍ଟନାୟକଙ୍କ ପିତା ଜମି ଯୋଗାଇ ଦେଇଥିଲେ ।

ସ୍ୱାଧୀନତା ନିମନ୍ତେ ପାଣ୍ଠି ସଂଗ୍ରହ ପାଇଁ କାଠଯୋଡି ନଇବାଲିରେ ୧୯୨୧ ମସିହାରେ ଗାନ୍ଧିଜୀ ସଭା କରୁଥିବାବେଳେ ସେ ସର୍ବପ୍ରଥମେ ଗାନ୍ଧିଜୀଙ୍କୁ ନିକଟରୁ ଦେଖିବାର ସୌଭାଗ୍ୟ ଲାଭ କରିଥିଲେ ଏବଂ ପାଖକୁ ଯାଇ ଆପଣ ମୋତେ ଆମ ଅଞ୍ଚଳରୁ ପାଣ୍ଠି ସଂଗ୍ରହ ନିମନ୍ତେ ଅନୁମତି ଦେଲେ ମୁଁ ସଂଗ୍ରହ କରିପାରିବି କହିଥିଲେ । ପ୍ରାଣକୃଷ୍ଣଙ୍କ ଏପରି ବ୍ୟବହାରରେ ଗାନ୍ଧିଜୀ ଖୁସି ହୋଇଥିଲେ । ତତ୍‌ପରେ ସେ ନିଜ ପତ୍ନୀଙ୍କର ଚାରି ଭରିର ହାର ଦାନ କରିବା ସମେତ ଜଗତ୍‌ସିଂହପୁର ସାରା ଅଂଚଳ ପାଦରେ ଚାଲି ଚାଲି ସ୍ୱାଧୀନତା ପାଇଁ ପାଣ୍ଠି ସଂଗ୍ରହ କରି ପଠାଇ ଥିଲେ । ସେ ୧୯୨୮ ମସିହାରେ ରମାଦେବୀଙ୍କ ସହ କଲିକତା କଂଗ୍ରେସ ଅଧିବେଶନରେ ଯୋଗ ଦେବାକୁ ଯାଇ ସୁଭାଷ ବୋଷଙ୍କ ସଂପର୍କରେ ଆସିଥିଲେ । ୧୯୩୦ମସିହା ଲବଣ ସତ୍ୟାଗ୍ରହ ବେଳେ ସେ ବାଲେଶ୍ୱରର ଇଂଚୁଡିଠାରୁ କୁଜଙ୍ଗ ବୋରିକିନା ପର୍ଯ୍ୟନ୍ତ ସବୁଆଡେ ଲୋକଙ୍କୁ ବ୍ରିଟିଶ ବିରୁଦ୍ଧରେ ସଂଗଠିତ କରି ଲବଣ ଆନ୍ଦୋଳନକୁ ସଫଳ କରିବା ପାଇଁ ନିଜକୁ ଉତ୍ସର୍ଗ କରି ଦେଇଥିଲେ । ବ୍ରିଟିଶ୍ ତରଫରୁ ହୁକୁମ ଜାରି ହୋଇଥିବାରୁ ସେତେବେଳେ ଲୋକମାନେ ଭୟଭୀତ ହୋଇ କେତେକ ସାଧାରଣ କାର୍ଯ୍ୟରେ ଆଦୌ ସହାୟତା କରୁ ନଥିଲେ । ଉଦାହରଣତଃ– ଘାଟିଆ ଡଙ୍ଗା ପାରି ନକରିବା, ବସ୍ ବାଲା ବସ୍‌ରେ ନନେବା, ଗ୍ରାମ ଗ୍ରାମ ବୁଲିବା ସମୟରେ ସଂଗ୍ରାମୀମାନଙ୍କୁ ଘରେ ଦିନେ ଅଧେ ଟିକେ ରହିବା ପାଇଁ ଆଶ୍ରୟ ନଦେବା, ନଈ କୂଳରେ ଓଦା ଲୁଗା ଶୁଖାଇବାକୁ ଦାରୋଗା ମନା କରିବା ପ୍ରଭୃତି ବଡ କଟକଣାମାନ ଅନ୍ତର୍ଭୁକ୍ତ ଥିଲା ।

୧୯୩୦ ମସିହା ନଭେମ୍ବର ମାସ ୧୧ ତାରିଖରେ କଟକ ସ୍ୱରାଜ ଆଶ୍ରମଠାରେ ସଭା କରୁଥିବା ସମୟରେ ପୋଲିସ ସଂଗ୍ରାମୀ ରମାଦେବୀଙ୍କ ସହ ତାଙ୍କୁ ଗିରଫ କରି ଜେଲ୍‌କୁ ପଠାଇଥିଲା । ଚତୁର ବ୍ରିଟିଶ୍ ସରକାର ସେତେବେଳେ ସଂଗ୍ରାମୀମାନଙ୍କୁ ପୃଥକ କରି ବିଭିନ୍ନ ଜେଲ୍‌ରେ ରଖୁଥିଲେ । ଗାନ୍ଧୀ ଓ ଇରଉଇନ୍‌ଙ୍କ ଚୁକ୍ତି ଫଳରେ ଜେଲରୁ ସେ ଖଲାସ ହୋଇଥିଲେ । ତତ୍‌ପରେ ପରେ ଆଳି କନିକା ପ୍ରଜା ଆନ୍ଦୋଳନରେ ସକ୍ରିୟ ଅଂଶ ଗ୍ରହଣ କରି ସେ ଛଅମାସ କାରାବରଣ କରିଥିଲେ । କରାଚୀଠାରେ ହେଉଥିବା କଂଗ୍ରେସ ଅଧିବେଶନରେ ଯୋଗ ଦେବାପାଇଁ ଯାଇଥିବା ବେଳେ ସେଠାରେ ସେ ସୀମାନ୍ତ ଗାନ୍ଧୀ ଖାଁ ଅବଦୁଲ ଗଫୁର ଖାଁ ଓ ରାଜେନ୍ଦ୍ର ପ୍ରସାଦଙ୍କ ସହ ସାକ୍ଷାତ କରିଥିଲେ । ୧୯୩୪ ମସିହାରେ ଗାନ୍ଧିଜୀ ପଦଯାତ୍ରାରେ ଓଡିଶା ଆସିଥିଲାବେଳେ ସେ ତାଙ୍କ ପାଖେ ପାଖେ ରହି ଛୁଆଁ ଅଛୁଆଁ ଭେଦଭାବ, ଚାହାଳି ଓ ସ୍କୁଲରେ ସବର୍ଣ୍ଣ ଓ ହରିଜନ ଏକାଠି ବସି ପଢ଼ିବା, ବସ୍ତି ସଫା କରିବା ପ୍ରଭୃତି

ଲୋକମାନଙ୍କୁ ବୁଝାଉଥିଲେ । ୧୯୩୫ ମସିହାରେ ସାଲେପୁରଠାରେ ସାଧାରଣ ସଭାରେ ଭାଷଣ ଦେଉଥିବା ସମୟରେ ତାଙ୍କୁ ଗିରଫ କରାଯାଇଥିଲା । ଅଢ଼େଇ ବର୍ଷ ଜେଲ୍‌ଦଣ୍ଡ ଭୋଗ କରିବା ପରେ ୧୯୩୬ ମସିହାରେ ଓଡିଶା ସ୍ୱତନ୍ତ୍ର ପ୍ରଦେଶ ହେବା ପରେ ତତ୍‌କାଳୀନ ମୁଖ୍ୟମନ୍ତ୍ରୀ ବିଶ୍ୱନାଥ ଦାସଙ୍କ ଦାବି ଫଳରେ ଜେଲ୍‌ରୁ ସେ ମୁକ୍ତ ହୋଇଥିଲେ । ୧୯୩୯ ମସିହାରେ ଗାନ୍ଧିଜୀଙ୍କ ବ୍ୟକ୍ତିଗତ ସତ୍ୟାଗ୍ରହ ଫଳରେ ସେ ଗାଁ ଗାଁ ବୁଲି ଲୋକମାନଙ୍କ ମଧ୍ୟରେ ଜନ ସଚେତନତା ସୃଷ୍ଟି କରିଥିଲେ । ୧୯୪୨ ମସିହା ଭାରତଛାଡ ଆନ୍ଦୋଳନ ବେଳେ ବହୁ ସଂଗ୍ରାମୀମାନଙ୍କ ସହ ଜଗତ୍‌ସିଂହପୁରରୁ ସେ ଗିରଫ ହୋଇଥିଲେ । ପରେ ତାଙ୍କର ପୁତ୍ର ଦେବବ୍ରତ ଓ ସତ୍ୟବ୍ରତ ମଧ୍ୟ ଭାରତଛାଡ ଆନ୍ଦୋଳନରେ ଭାଗ ନେଇଥିଲେ । ସ୍ୱାଧୀନତା ପ୍ରାପ୍ତି ପରେ ସେ କୌଣସି ପଦପଦବୀ ପଛରେ ନଗୋଡାଇ ସମାଜସେବାରେ ବ୍ରତୀ ରହିଥିଲେ । ୧୯୫୨ମସିହାରେ ସେ ଗୋପବନ୍ଧୁ ଚୌଧୁରୀ ଓ ୧୯୫୫ ମସିହାରେ ବିନୋବାଜୀଙ୍କ ସହିତ ଭୂଦାନ ପଦଯାତ୍ରା କରି ଲୋକଙ୍କୁ ଭୂଦାନ କରିବା ପାଇଁ ବୁଝାସୁଝା କରିଥିଲେ ।

୧୯୨୭ ମସିହା ପ୍ରଳୟଙ୍କରୀ ବନ୍ୟା, ୧୯୫୧ ମସିହାରେ କୋରାପୁଟରେ ଦୁର୍ଭିକ୍ଷ ଓ ୧୯୫୫ ମସିହାରେ ଐତିହାସିକ ଦଳେଇଘାଇ ଭାଙ୍ଗି ହଜାର ହଜାର ଲୋକ ଗୃହଶୂନ୍ୟ ହେବାରେ ସେ ଅଣ୍ଟାଭିଡି ବାହାରିଥିବା ନଜିର ଅଛି । ସେ ତାଙ୍କ ସଂଗ୍ରାମୀ କର୍ମୀମାନଙ୍କ ସହାୟତାରେ ଜଗତ୍‌ସିଂହପୁରର ବନ୍ୟାଞ୍ଚଳ ବୁଲି ବୁଲି ନିଜେ ଅଖିଆ ଅପିଆ ଅନିଦ୍ରା ରହି ବନ୍ୟାବିପନ୍ନ ଲୋକଙ୍କୁ ରିଲିଫ୍ ଦେଇଥିଲେ । ସରକାରଙ୍କ ତରଫରୁ ବନ୍ୟାଞ୍ଚଳକୁ ସହାୟତା ଦେବାପାଇଁ ପରିଦର୍ଶନରେ ଆସିଥିବା ରେଭରେଣ୍ଡଏଣ୍ଡଜ୍ ସଂଗ୍ରାମୀମାନଙ୍କ ତ୍ୟାଗ ଓ କର୍ତ୍ତବ୍ୟନିଷ୍ଠାରେ ଅତିଶୟ ବିସ୍ମିତ ହୋଇଥିଲେ ।

ସେ କଂଗ୍ରେସର ପ୍ରଥମ ସଭାପତି, ପ୍ରାଦେଶିକ ନିଖିଳ ଭାରତ କଂଗ୍ରେସର ଆଜୀବନ ସଭ୍ୟ ଓ କୃଷକ ସମାଜର ମଧ୍ୟ ସଭାପତି ଥିଲେ । ସେ ଶିକ୍ଷାର ପ୍ରସାର ପାଇଁ ତାଙ୍କ ଗାଁ ମୁଣ୍ଡରେ ଥିବା ନିଜ ଜମିରେ ଏକ ବିଦ୍ୟାଳୟ ଜୟବଡ ପ୍ରାଥମିକ ବିଦ୍ୟାଳୟ ସ୍ଥାପନା କରିଥିଲେ । ଏହା ଥିଲା ତାଙ୍କର ମାନସପୁତ୍ର । ଏଥି ନିମନ୍ତେ ସେ ନିଜେ ମାଟି ମୁଣ୍ଡେଇ ଆଣି ପକାଇଥିଲେ । ସଂପ୍ରତି ଏହା ସରକାରୀ ସ୍ୱୀକୃତି ପାଇ ତାଙ୍କ ସ୍ମୃତିକୁ ଅକ୍ଷୁଣ୍ଣ ରଖିବା ସଙ୍ଗେ ସଙ୍ଗେ ସୁନାମ ଅର୍ଜନ କରି ଚାଲିଛି । ଜଗତ୍‌ସିଂହପୁରରେ କଲେଜ ନିର୍ମାଣ, ଅନୁକୂଳ ଚନ୍ଦ୍ରଙ୍କ ଆଶ୍ରମ ପ୍ରତିଷ୍ଠା, ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ର ଓ ଥାନା ସାମନାରେ ଏକ ଗାନ୍ଧୀ ମୂର୍ତ୍ତି ସ୍ଥାପନ ପାଇଁ ମଧ୍ୟ ସେ ବହୁ ଚେଷ୍ଟା ସହ ଯତ୍ନ କରିଥିଲେ । ସ୍ୱାସ୍ଥ୍ୟକେନ୍ଦ୍ରର ପରିଚାଳନା ସଂପାଦକ ଭାବେ ସେ ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ରହିଥିଲେ । ଏତଦ୍‌ବ୍ୟତୀତ ସେ ସେବାମୂଳକ ଓ ଧର୍ମମୂଳକ ଅନେକ କାର୍ଯ୍ୟ କରି ଯାଇଛନ୍ତି । ପରିଣତ ବୟସରେ ମଧ୍ୟ ସେ ସୁସ୍ଥ ସବଳ ଓ କର୍ମଠ ଥିଲେ । ତାଙ୍କ ସ୍ମୃତିର ସର୍ବଶ୍ରେଷ୍ଠ ସନ୍ତକ ହେଉଛି – ଗୌରୀଶଙ୍କର ପାର୍କ (କଟକ) ଠାରେ ଥିବା ପଢ଼ିହାରୀ ପାଠାଗାର ।ଏଥିରୁ ପ୍ରାଣକୃଷ୍ଣଙ୍କ ଅମର ଗାଥା ସୂଚିତ ହୁଏ । ବହୁ ମାନ୍ୟଗଣ୍ୟ ରାଜନୈତିକ କର୍ମୀ ବିଭିନ୍ନ କାର୍ଯ୍ୟରେ ଆସି ସୁଚିନ୍ତିତ ମତାମତ ତାଙ୍କଠାରୁ ନେଉଥିଲେ ।

୧୯୫୮ ମସିହା ଅଗଷ୍ଟ ୮ ତାରିଖରେ ଏକ ଘଟଣାଚକ୍ରରେ ସେ ଇହଲୀଳା ସମ୍ବରଣ କରିଥିଲେ । ସେ ଆଜି ନାହାନ୍ତି ସତ, ହେଲେ ରଖିଦେଇ ଯାଇଛନ୍ତି ଚିରନ୍ତନ ସ୍ମୃତି । ଅନ୍ତରଙ୍ଗ ଆବେଗ ଓ ଅନନ୍ୟ ସାଧୁତାର ସେ ଥିଲେ ଏକ ବିରଳ ଉଦାହରଣ । ଜଗତ୍‌ସିଂହପୁର ଅଂଚଳର ପଣ୍ଡିତ କହିଲେ ଲୋକେ ଆଜି ବି ପ୍ରାଣକୃଷ୍ଣ ପଢ଼ିହାରୀଙ୍କୁ ବୁଝନ୍ତି । ଜନ୍ମମାଟି ଓ ସହବାସୀ ଦୁଃଖୀ ଦୁର୍ଗତଙ୍କ ପାଇଁ ତାଙ୍କ ପ୍ରାଣ ସବୁବେଳେ ବ୍ୟାକୁଳ ଥିଲା । ଆଜି ଜୀବନର ମୂଲ୍ୟବୋଧର ଅବକ୍ଷୟ ଘଟି ଚାଲିଥିଲାବେଳେ ଏହିଭଳି ଏକ ନିରଳସ, ସରଳ ଓ ତ୍ୟାଗପୂତ ମହାନ ଜୀବନ ଆମ ଯୁବପିଢ଼ିଙ୍କ ପାଇଁ ଆଦର୍ଶ ହୋଇ ରହିବ ।

ଏମ୍.ଆଇ.ଜି.-୧, ୪୨/୧
ଚନ୍ଦ୍ରଶେଖରପୁର ହାଉସିଂବୋର୍ଡ କଲୋନୀ
ଭୁବନେଶ୍ୱର-୧୬







# ସଂଗ୍ରାମୀ ବୀରା ବାଙ୍ଗରା ଦେବୀ

ଡକ୍ଟର କୃତ୍ତିବାସ ନାୟକ

ଇତିହାସରୁ ଜଣାଯାଏ ଯେ, ପୂର୍ବ କାଳରେ ମାଲକାନଗିରି କୋରୁକୋଣ୍ଡା ନିକଟରେ ଥିବା ସୁବଳୟାଠାରେ ଗୋଟିଏ ରାଜ୍ୟର ରାଜଧାନୀ ଥିଲା । ଏହି ରାଜ୍ୟର ରାଜାମାନେ ସ୍ୱାଧୀନ ପ୍ରିୟ ଥିଲେ । କାହାର ଅଧୀନତାକୁ ସ୍ୱୀକାର କରୁ ନଥିଲେ । ସେ ରାଜ୍ୟର ରାଜା ଥିଲେ ଅର୍ଜୁନ ମଲ୍ଲିକ । ସେ ଜୟପୁର ରାଜାଙ୍କର ଅଧୀନତା ନକରିବାରୁ ତାଙ୍କୁ ହତ୍ୟା କରାଗଲା । ନୂଆ ରାଜାଙ୍କ ନାମ ହେଲା, ମଲ୍ଲିକ ମର୍ଦ୍ଦନ କୃଷ୍ଣ । ସେ ମଲ୍ଲିକ ମର୍ଦ୍ଦନ ଗିରି ନାମକ ଉଆସ ତିଆରି କରି ଦେବଡଙ୍ଗରରେ ରହିଲେ । ଶୁଣାଯାଏ– ସେହି ଉଆସ ନାମରେ ରାଜ୍ୟର ନାମ ମାଲକାନଗିରି ହୋଇଗଲା । ଏହି ରାଜ୍ୟକୁ ଚାରିଟି ମୁଠାରେ ବିଭକ୍ତ କରାଯାଇଥିଲା । ଏହି ବିଂଶର ଶେଷ ରାଜା ପରମାନନ୍ଦ ପାତ୍ରଙ୍କ ମୃତ୍ୟୁ ପରେ ତାଙ୍କର ଝିଅ ରାଜକୁମାରୀ ବାଙ୍ଗରା ଦେବୀ ରାଜ୍ୟର ପରୋକ୍ଷ ଶାସନ ଦାୟିତ୍ୱରେ ଥିବା ସମୟରେ ୧୮୪୮ ମସିହାରେ ଇଂରେଜମାନେ ଜୟପୁର ରାଜ୍ୟର ପ୍ରତ୍ୟକ୍ଷ ଶାସନ ଭାର ଗ୍ରହଣ କଲେ । ଜଣେ ଇଂରେଜ ଏଜେଣ୍ଟ ସ୍ମୋଲେଟ୍ ସାହେବ ଜୟପୁରରେ ରହିଲେ । ତାଙ୍କ ପରେ ରୀଡ ସାହେବ ଏଜେଣ୍ଟ ଥିବା ସମୟରେ ପ୍ରଜା ଓ ଜମିଦାରମାନେ ଅସନ୍ତୋଷ ପ୍ରକାଶ କଲେ । ସେମାନେ ଇଂରେଜମାନଙ୍କ ବିରୁଦ୍ଧରେ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବରେ ଯୁଦ୍ଧ ଘୋଷଣା କରିଥିଲେ ।

ରାଜକୁମାରୀ ବାଙ୍ଗରା ଦେବୀଙ୍କ ମନ୍ତ୍ରୀ ଏରମା ରାଜୁଙ୍କ ସାହାଯ୍ୟରେ ଷଡଯନ୍ତ୍ର ଆରମ୍ଭ ହେଲା। ୧୮୫୫ ମସିହାରେ ମେରିଆ ଏଜେଣ୍ଟ କ୍ୟାପ୍‌ଟେନ୍ ମେକ୍‌ନେଲ୍ ଦଳବଳ ଧରି ବାଙ୍ଗରା ଦେବୀଙ୍କ ଉଆସରେ ପହଞ୍ଚିଲେ । ବାଙ୍ଗରା ଦେବୀଙ୍କର ଅଳ୍ପ ସଂଖ୍ୟକ ସୈନ୍ୟ ବନ୍ଧୁକଧାରୀ ଇଂରେଜ ସୈନ୍ୟଙ୍କୁ ଦେଖି ଲୁଚିଲେ । ବଳି ପ୍ରଥାକୁ ବନ୍ଦ କରିବା ପାଇଁ ନିର୍ଦ୍ଦେଶ ଦେଇ କ୍ୟାପ୍‌ଟେନ୍ ଫେରି ଆସିବା ପରେ ବାଙ୍ଗରା ଦେବୀ ବିଭିନ୍ନ ଅଞ୍ଚଳର ପ୍ରଜା ଓ ବିଦ୍ରୋହୀଙ୍କ ସହିତ ମିଶି ବିଦ୍ରୋହ ଆରମ୍ଭ କଲେ । ଚିନ୍ତାପାଲିଠାରେ ଇଂରେଜ ବାହିନୀ ସହିତ ତାଙ୍କର ସଂଗ୍ରାମ ଚାଲିଲା । ବାଙ୍ଗରା ଦେବୀ ଏଥିରେ ପରାସ୍ତ ହୋଇ ଭବିଷ୍ୟତରେ ଆଉ ବିଦ୍ରୋହ କରିବେ ନାହିଁ ବୋଲି ଚୁକ୍ତିବଦ୍ଧ ହେଲେ । ଏହି ପରାଜୟ ଓ ସନ୍ଧି ଫଳରେ ମାଲକାନଗିରି ଇଂରେଜମାନଙ୍କ ଅଧୀନକୁ ଆସିଗଲା ।

ତଥାପି କେତେଜଣ ବିଦ୍ରୋହୀ ଜଙ୍ଗଲରେ ଲୁଚିରହି ଇଂରେଜମାନଙ୍କ ବିରୋଧରେ ସଂଗ୍ରାମ ଚଳାଇଥିଲେ । ବାଙ୍ଗରା ଦେବୀଙ୍କର ପ୍ରମୁଖ ସହଯୋଗୀ ତାମା ଦୋରା ପୁଣି ସଙ୍ଗଠନକୁ ସୁଦୃଢ କରି ସଂଗ୍ରାମୀମାନଙ୍କୁ ଏକତ୍ର କରିଥିଲେ । ଏହି ସମୟରେ ଅନ୍ଧ ବିଶ୍ୱାସର ବଶବର୍ତ୍ତୀ କୋୟା ସମାଜ ଇଂରେଜମାନଙ୍କ କୋପଦୃଷ୍ଟିରୁ ରକ୍ଷା ପାଇବା ଉଦ୍ଦେଶ୍ୟରେ ଜଣେ ତେରବର୍ଷର ଯୁବତୀକୁ ବଳି ଦେଇଦେଲେ । ଏଣେ ଅନ୍ଧବିଶ୍ୱାସ ଗୁଣିଆ ବୋଲି ଭାବି ଚାରିଜଣ ଉଆସବାସୀଙ୍କୁ ମଧ୍ୟ ସତୀ ନଦୀରେ ବୁଡାଇ ଦେଲେ । ଇଂରେଜମାନଙ୍କ ନିକଟରେ ଏହି ଖବର ପହଞ୍ଚିବାରୁ ପୁଣି ରୀଡ ସାହେବ ମାଲକାନଗିରିରେ ପହଞ୍ଚି ବାଙ୍ଗରା ଦେବୀଙ୍କୁ କ୍ଷମତାଚ୍ୟୁତ କରିଦେଲେ ।

ବାଙ୍ଗରା ଦେବୀଙ୍କୁ ପୁଣି ଥରେ ଶାସନ ଗାଦିରେ ବସାଇବା ଉଦ୍ଦେଶ୍ୟରେ ତାମା ଦୋରା ବିଦ୍ରୋହ ଆରମ୍ଭ କରିଦେଲେ । ଥାନାରେ ଥିବା ପୁଲିସଙ୍କୁ ହତ୍ୟା କଲେ ।

୧୮୭୯ ମସିହାରେ ଇଂରେଜ ଏଜେଣ୍ଟ ବିଦ୍ରୋହ ଦମନ ଆରମ୍ଭ କରିଦେଲେ । ମୋଟୁ ଦିଗରୁ ଆସିଥିବା ପୁଲିସ ଫଉଜ ବିଦ୍ରୋହୀମାନଙ୍କ ଆକ୍ରମଣକୁ ସମ୍ମୁଖୀନ ହୋଇନପାରି ଫେରି ଯାଇଥିଲେ । ତାମାଦୋରା ଓ ବାଙ୍ଗରା ଦେବୀ କୋୟା ବିଦ୍ରୋହୀମାନଙ୍କ ସହଯୋଗରେ ରାଜଗାଦିରେ ଅଭିଷିକ୍ତ ହେଲେ ।

୧୮୮୦ ମସିହା ଜୁଲାଇ ମାସରେ ପୁଣି ଥରେ ଇଂରେଜ ସୈନ୍ୟ ଓ ବିଦ୍ରୋହୀମାନଙ୍କ ମଧ୍ୟରେ ଭୟଙ୍କର ସଂଗ୍ରାମ ହେଲା । ଡାମାଦୋରା ପରାସ୍ତ ହୋଇ ଜଙ୍ଗଲରେ ଲୁଚିଲେ । ଇଂରେଜମାନଙ୍କ ବିରୋଧରେ ଚାଲୁଥିବା ସଂଗ୍ରାମ ଧୀରେ ଧୀରେ ନିସ୍ତେଜ ହୋଇ ପଡିଲା । ବୀର ଡାମା ଦୋରା ନିହତ ହେଲେ ।

ରାଣୀ ବାଙ୍ଗରା ଦେବୀ ଅସହାୟ ଅବସ୍ଥାରେ ଦୁଶ୍ଚିନ୍ତା ଓ ବୃଦ୍ଧାବସ୍ଥା କାରଣରୁ ଦେହତ୍ୟାଗ କଲେ । କୋୟା ଜାତିର ଏହି ବୀରା ରମଣୀ ସ୍ୱାଧୀନତା ପାଇଁ ଯେଉଁ ସାହସ ଓ ଶକ୍ତି ପ୍ରଦର୍ଶନ କରି ମହାଶକ୍ତିଶାଳୀ ଇଂରେଜ ବାହିନୀ ସହିତ ଲଢିଥିଲେ, ତାହା ଯୁଗଯୁଗ ପାଇଁ ଇତିହାସରେ ଲିପିବଦ୍ଧ ହୋଇ ରହିଥିବ ।

କେନ୍ଦ୍ର ନିର୍ଦ୍ଦେଶକ, ଆକାଶବାଣୀ
ଜୟପୁର, କୋରାପୁଟ–୭୬୪୦୦୫

# ବୀର ସୁରେନ୍ଦ୍ର ସାଏ

**ବିନ୍ଦୁସାଗର ଓଝା**

ହେ ବୀର !
ତୁମେ ମନେ ପଡ ଆଜି
ଲୋମ ଟାଙ୍କୁରି ଉଠେ
ମନେ ପଡିଲେ ତୁମ ଲୋହିତ ସ୍ମୃତି ।
ଶୁଣିଥିଲ ତୁମେ
ଭାରତମାତାର ଆର୍ତ୍ତରୋଦନ
ଦେଖିଥିଲ ଦେହରେ ତା'ର
ଗୋରା ଦାନବର ତୀକ୍ଷ୍ଣ ନଖ ଆଘାତର
ରକ୍ତାକ୍ତ ବିଦୀର୍ଣ୍ଣର କ୍ଷତ ।
ଜୀବନକୁ ପଣ କରି
ଜାଳିଥିଲ ବିପ୍ଳବର ବହ୍ନି
କଣ୍ଟାକୁ କଣ୍ଟାରେ କାଢିବାକୁ
ନେଇଥିଲ ବଜ୍ର ଶପଥ
ଦେଇଥିଲ ଶାଣ କରବାଳକୁ
କରିବାକୁ ରଣ
ଦୁର୍ଗମ ଘଞ୍ଚ ଅରଣ୍ୟକୁ
ମଣିଥିଲ ଫୁଲ ବଗିଚା
ଥରାଇ ଦେଇଥିଲ ଗୋରାଙ୍କ ଛାତି
ଗଣାଇ ଦେଇଥିଲ ପ୍ରମାଦ
ସାଜିଥିଲ ମସ୍ତବଡ ଅନ୍ତରାୟ ।
ହେଲେ ନିଷ୍ଠୁର ସାଜିଲା ନିୟତି
ବିଶ୍ୱାସଘାତକତାର ଶିକୁଳି
ଛନ୍ଦିଦେଲା ତୁମ ହସ୍ତ, ପଦ
ତଥାପି ନତ ନଥିଲା ମଥା ଅଛି ଆଗେ
ସଢିଲ ଅନ୍ଧାରୀ କାରାରେ ହସି ହସି
ଆଖିରେ ଥିଲା ମାତୃମୁକ୍ତିର ସ୍ୱପ୍ନ
ସେଇ ସ୍ୱପ୍ନ ଦେଖୁଁ ଦେଖୁଁ
ଚିର ମୁଦିତ ହେଇଗଲା
ତୁମ ଆଖିର ପଲକ
ନିଷ୍ପ୍ରଭ ହେଇଗଲା ଜୀବନର ଦୀପ ।
ହେ ବୀର !
ଆଜି ତୁମ ଉତ୍ସର୍ଗତା ଆଗେ
ମଥା ଆପେ ଆପେ
ନତ ହୋଇଯାଏ
ଧନ୍ୟ ଏ ମାଟି
ଧନ୍ୟ ଏ ଜାତି
ଧନ୍ୟ ତୁମେ
ବୀର ସୁରେନ୍ଦ୍ର ସାଏ ।

ମକୁନ୍ଦପୁର, ଅଚ୍ୟୁତପୁର
ରାଜକନିକା, କେନ୍ଦ୍ରାପଡା
ପିନ୍– ୭୫୪୨୨୦

❖ ❖ ❖



# ତ୍ୟାଗ ଓ ପ୍ରେମର ମନ୍ଦିରଃ ଜାନକୀନାଥ ଭବନ

ଡକ୍ଟର ଭାଗ୍ୟଲିପି ମଲ୍ଲ

ଭାରତରେ ନେତୃତ୍ୱର ଅଭାବ ନାହିଁ । ମାତ୍ର କେବଳ ଜଣଙ୍କୁ ହିଁ ସମଗ୍ର ଭାରତବାସୀ ଶ୍ରଦ୍ଧା ଓ ସମ୍ମାନର ସହ ନେତାଜୀ ବୋଲି ସମ୍ବୋଧନ କରିଥାନ୍ତି । ଯେଉଁ ଫଟୋଚିତ୍ରଟି ସାରା ବିଶ୍ୱରେ ସବୁଠୁ ଅଧିକ ପରିଚିତ, ତାହା ଘୋଡ଼ାପିଠିରେ ବସିଥିବା ଜଣେ ପ୍ରଜ୍ଞାଦୀପ୍ତ ଓ ସାହସୀ ସୈନିକ । ଦେଖିଲେ ଲାଗେ-ଜଣେ ସ୍ୱପ୍ନପ୍ରବଣ ବିପ୍ଳବୀ । ଜଣେ ବିପ୍ଳବୀ ହିଁ ସ୍ୱପ୍ନ ଦେଖିପାରେ ଏବଂ ସ୍ୱପ୍ନ ଦେଖୁଥିବା ମଣିଷ ଜଣେ ଯେ ବିପ୍ଳବୀ ହୋଇପାରେ, ଭାରତବର୍ଷରେ ଏହି ଭାବାଦର୍ଶର ଦୁଇଜଣ ଶକ୍ତିଶାଳୀ ବ୍ୟକ୍ତିତ୍ୱ ବାପୁଜୀ ଓ ନେତାଜୀ । ଜଣଙ୍କର ଅସ୍ତ୍ର ଅହିଂସ–ବିପ୍ଳବର ଏକ ଅଭାବିତ ଅସ୍ତ୍ର । ଅନ୍ୟ ଜଣଙ୍କର ଅସ୍ତ୍ର ବି ସେହି ଅହିଂସ– ମାତ୍ର ଅସ୍ତ୍ରର ଏକ ମିଶ୍ରରୂପ । ଏହି ମିଶ୍ରରୂପର ବ୍ୟକ୍ତିତ୍ୱ ଜଣକ ହେଉଛନ୍ତି ସ୍ୱପ୍ନଦ୍ରଷ୍ଟା ସୁଭାଷ ।

ନିଜର ସ୍ୱପ୍ନପ୍ରୀତିର କଥା ସେ ନିଜେ ଏହିପରି କହିଛନ୍ତି– ଅନିତ୍ୟ ବିଶ୍ୱରେ ସମସ୍ତ ଧ୍ୱଂସ ପାଏ, ଧ୍ୱସ୍ତ ହୁଏ, କିନ୍ତୁ ଧ୍ୱଂସ ପାଏ ନାହିଁ– ଭାବଧାରା, ଆଦର୍ଶ ଓ ସ୍ୱପ୍ନ । ଜଣକୁ ହୁଏତ ଗୋଟିଏ ଭାବଧାରା ପାଇଁ ମୃତ୍ୟୁବରଣ କରିବାକୁ ପଡ଼ିପାରେ କିନ୍ତୁ ତାହାର ମୃତ୍ୟୁ ପରେ ହଜାର ହଜାର ମନୁଷ୍ୟ ହୃଦୟରେ ସେହି ଭାବଧାରାର ପୁନର୍ଜନ୍ମ ଘଟେ । ଏହି ଭାବରେ ଆବର୍ତ୍ତିତ ହୁଏ କ୍ରମବିକାଶର ଚକ୍ର, ସାକାର ହୁଏ ସ୍ୱପ୍ନ । ଏହି ସ୍ୱପ୍ନଦ୍ରଷ୍ଟା ସଂଗ୍ରାମୀଙ୍କର ସବୁଠାରୁ ଶକ୍ତିଶାଳୀ ଶବ୍ଦ କେତୋଟି ହେଉଛି– ମୋତେ ତୁମେ ରକ୍ତ ଦିଅ, ମୁଁ ତୁମକୁ ସ୍ୱାଧୀନତା ଦେବି । ଯିଏ ସ୍ୱାଧୀନତା ଦେବାକୁ କହୁଥିଲେ, ସ୍ୱାଧୀନତାର ମୂଲ୍ୟବୋଧ କ'ଣ ସେ ଜାଣିଥିଲେ । ଯିଏ ରକ୍ତ ମାଗୁଥିଲେ, ସେ ରକ୍ତ ଦେଇ ଜାଣିଥିଲେ । ଅର୍ଥାତ୍ ଉଭୟ ଜୀବନୀଶକ୍ତିର ପ୍ରତୀକ । ସୁଭାଷ ଏହି ପ୍ରତୀକର ମାନବାୟନ ।

ପ୍ରଶ୍ନ ଉଠେ, ସୁଭାଷଙ୍କ ଭିତରେ ବୀରତ୍ୱର ସ୍ୱପ୍ନ କେଉଁଠି ଓ କିଏ ସଂଚାର କରିଥିଲା ? ଏ ପ୍ରଶ୍ନର ଉତ୍ତର ପାଇବାକୁ ହେଲେ ଆମେ ତାଙ୍କ ଶୈଶବକୁ ମନେ ପକାଇ ଥାଉ । ଜନ୍ମ (୧୮୯୭ ମସିହା ଜାନୁଆରୀ ୨୩ ତାରିଖ) ଓଡ଼ିଶା ମାଟିରେ କଟକ ସହରର ଓଡ଼ିଆ ବଜାରରେ । ବାପା ଜାନକୀନାଥ ବୋଷ, ମାଆ ପ୍ରଭାବତୀ ବୋଷ । ଘରର ନାଁ ବି ବାପାଙ୍କ ନାଁ ଅନୁସାରେ– 'ଜାନକୀନାଥ ଭବନ' । ପଢ଼ା ରେଭେନ୍ସା କଲିଜିଏଟ୍ ସ୍କୁଲ୍ । ସେଠୁ କଲିକତା । ଆଇସିଏସ୍ ପରୀକ୍ଷାରେ ସ୍ୱତନ୍ତ୍ର ସ୍ଥାନ ହାସଲ (୧୯୨୦) ଏବଂ ବୃତ୍ତିକୁ ପ୍ରତ୍ୟାଖ୍ୟାନ (୧୯୨୧) । ପ୍ରଶ୍ନ ଉଠେ, ଯେଉଁ ଚାକିରି ପାଇଁ ମଣିଷ ଭିତରେ କେତେ ସ୍ୱପ୍ନ, ସେ ସ୍ୱପ୍ନକୁ ହାତମୁଠାରେ ପାଇଲା ପରେ ଜଣେ ତାକୁ ପ୍ରତ୍ୟାଖ୍ୟାନ କରିପାରେ କିପରି ? ଏହି ପ୍ରସଙ୍ଗରେ ସୁଭାଷଙ୍କ ବକ୍ତବ୍ୟ ଏକ ଚିଠିରେ ସୁସ୍ପଷ୍ଟ– ବିପ୍ଳବର ସଂଜ୍ଞା ମୁଁ ମୋର ପ୍ରଧାନଶିକ୍ଷକ ବାବୁ ବେଣୀମାଧବ ଦାସଙ୍କଠାରୁ ଜାଣିଲି । ରେଭେନ୍ସା କଲିଜିଏଟ୍ ସ୍କୁଲରେ ମୁଁ ଅଧ୍ୟୟନ କରିନଥିଲେ ଦେଶର ସ୍ୱାଧୀନତା କଥା ହୁଏତ ଆଦୌ ଚିନ୍ତା କରିପାରି ନଥାନ୍ତି । ଅର୍ଥାତ୍ ଶିକ୍ଷକ ହିଁ ବିପ୍ଳବୀ ତିଆରି କରେ । ସେହି ସୁଭାଷ ତାଙ୍କ ବାଲ୍ୟ ଶିକ୍ଷକଙ୍କଠାରୁ ଏଇ ଓଡ଼ିଶା ମାଟିରୁ ସେବା ଓ ତ୍ୟାଗର ମନ୍ତ୍ର ଶୁଣିଥିଲେ । ସମାଜ ପରିବର୍ତ୍ତନର ସ୍ୱପ୍ନ ଦେଖିଥିଲେ ।

ଏହି ସ୍ୱପ୍ନ ପରବର୍ତ୍ତୀ କାଳରେ ପଲ୍ଲବିତ ହୋଇଛି । ଗାନ୍ଧିଜୀଙ୍କର ଭାରତର ସ୍ୱାଧୀନତା ଆନ୍ଦୋଳନରେ ସଂପୃକ୍ତି ଓ ରାଜନୈତିକ ବିଚାରଧାରା ଏହି ପଲ୍ଲବନର କାରଣ । ଉପନିବେଶବାଦର ଔଦ୍ଧତ୍ୟକୁ ସେ ବୁଝିଛନ୍ତି, ଅହିଂସା ମନ୍ତ୍ରର ଶକ୍ତି ବି ତାଙ୍କୁ ଆନ୍ଦୋଳିତ କରିଛି । ଦେଶବନ୍ଧୁ ଚିତ୍ତରଂଜନ ଦାସଙ୍କ ପ୍ରେରଣାରେ ୧୯୨୧ ମସିହାରେ ଭାରତୀୟ ମୁକ୍ତିସଂଗ୍ରାମ ଆନ୍ଦୋଳନରେ ସାମିଲ ହୋଇ ଜେଲ୍ ଯାଇଛନ୍ତି । ଜୀବନର ବହୁ ସମୟ ତାଙ୍କର ଜେଲ୍ ଭିତରେ ହିଁ କଟିଛି । ସବୁଠାରୁ ଗୁରୁତ୍ୱପୂର୍ଣ୍ଣ

ପ୍ରସଙ୍ଗ ୧୯୨୪ ମସିହାରେ ବ୍ରିଟିଶ ସରକାର ତାଙ୍କ ମୁଣ୍ଡରେ ସନ୍ତ୍ରାସବାଦୀର ମକୁଟ ପିନ୍ଧାଇଛି । ସେ କାଳର ବର୍ମା ଓ ଆଜିର ମିଆଁମାରର ମଣ୍ଡାଲ୍ୟ ଜେଲ୍‌ରେ ୧୯୨୭ ମସିହା ପର୍ଯ୍ୟନ୍ତ ବଞ୍ଚିବାକୁ ପଡ଼ିଛି । ସଂଗ୍ରାମୀ ସୁଭାଷ ବିଭିନ୍ନ ସମୟରେ ଭାରତୀୟ ଜାତୀୟ କଂଗ୍ରେସର ପ୍ରାଦେଶିକ ଓ ଜାତୀୟ ସ୍ତରରେ ନେତୃତ୍ୱ ନେଇଛନ୍ତି । ଅସହଯୋଗ ଆନ୍ଦୋଳନ, ପୂର୍ଣ୍ଣ ସ୍ୱରାଜ ପ୍ରାପ୍ତି ପାଇଁ ଆହ୍ୱାନ– ଏ' ସକଳ କ୍ଷେତ୍ରରେ ତାଙ୍କର କ୍ରାନ୍ତିକାରୀ ମାନସିକତା ପ୍ରତିଫଳିତ ହୋଇଛି । ୧୯୩୨ ମସିହାରେ ପ୍ରତିଷ୍ଠିତ ଭାରତୀୟ ଜାତୀୟ କଂଗ୍ରେସ କାର୍ଯ୍ୟକାରୀ କମିଟିର ସଭାପତି ପଦ ୧୯୩୯ରେ ମଣ୍ଡନ କରିଛନ୍ତି ସୁଭାଷ ଏବଂ ଶେଷରେ ନିଜେ 'ଫରୱାର୍ଡ ବ୍ଲକ୍' ନାମକ ଏକ ରାଜନୈତିକ ସଂଗଠନ ଆରମ୍ଭ କରିଛନ୍ତି । ସଂଗ୍ରାମୀମାନଙ୍କର ଏହି ଗୋଷ୍ଠୀର ନାଁ ରଖିଛନ୍ତି– ଆଜାଦ୍ ହିନ୍ଦ୍ ଫୌଜ । ଉଦ୍ଦେଶ୍ୟ, ଖଣ୍ଡାର ଜବାବ୍ ଖଣ୍ଡାରେ ଦେବାକୁ ପଡ଼ିବ ଏବଂ ଏହି ସ୍ୱପ୍ନକୁ ଚରିତାର୍ଥ କରିବା ପାଇଁ ସେ ଏସିଆ ଓ ୟୁରୋପର ନାନା ଦେଶ ଘୂରି ବୁଲିଛନ୍ତି । ଛଦ୍ମବେଶ ଧାରଣ କରିଛନ୍ତି । ପୁଣି ଆତ୍ମପ୍ରକାଶ ବି କରିଛନ୍ତି । ଏକ ବିଚିତ୍ର ଜୀବନ । ୧୪ ଏପ୍ରିଲ ୧୯୪୪ ମସିହାରେ ମଣିପୁରର ମୋଇରଙ୍ଗରେ ଭାରତୀୟତାର ପ୍ରତୀକ ତ୍ରିରଙ୍ଗା ପତାକାକୁ ଉଡ଼ାଇଛନ୍ତି ଏବଂ ଶେଷକୁ ତାଙ୍କ ଉଦ୍ଦାମ ବ୍ୟକ୍ତିତ୍ୱ ରହସ୍ୟଜନକ ଭାବେ ନିଖୋଜ ହୋଇଯାଇଛି ।

କେଉଁଆଡ଼େ ଗଲେ ସୁଭାଷ ? ବିମାନ ଦୁର୍ଘଟଣାରେ ସବୁଦିନ ପାଇଁ ହଜିଗଲେ, ନା ବଞ୍ଚିରହି ମଧ୍ୟ ନିଜକୁ ଅପରିଚିତ ରଖିଲେ ! ତାହା ଆଜି ବି ଏକ ପ୍ରଶ୍ନବାଚୀ । ସୁଭାଷଙ୍କ ବର୍ତ୍ତମାନକୁ ଆମେ ଯେଉଁ କେତୋଟି ଜାଗାରେ ଖୋଜୁ, ବିଶ୍ୱର ସେହି ସ୍ଥାନଗୁଡ଼ିକ ମଧ୍ୟରେ କଟକ ସହର ଅନ୍ୟତମ । ଏଇଠି ସୁଭାଷଙ୍କ ଜନ୍ମ, ଶୈଶବ ଓ କୈଶୋର । ଏଇଠୁ ସେ ସ୍ୱପ୍ନ ଦେଖିବା ଆରମ୍ଭ କରିଥିଲେ, ଏଇଠୁ ପ୍ରତିଧ୍ୱନିତ ହୋଇଥିଲା ଜାତିପ୍ରେମର ମନ୍ତ୍ର, ଏଇଠୁ ତାଙ୍କ ଭିତରେ ସୃଷ୍ଟି ହୋଇଥିଲା ବିପ୍ଳବର ବହ୍ନି । ଜାନକୀନାଥ ଭବନ, ରେଭେନ୍ସା କଲିଜିଏଟ୍ ସ୍କୁଲ୍ ଏସବୁର ସ୍ମୃତି ଓ ପ୍ରମାଣ । ଜାତୀୟ ସ୍ତରରେ ସେ ଅବଶ୍ୟ ନେତୃତ୍ୱ ନେଇଛନ୍ତି, ମାତ୍ର ଓଡ଼ିଶାକୁ ଭୁଲିପାରି ନାହାନ୍ତି । ଭୁଲିପାରି ନାହାନ୍ତି ଆଠ ଭାଇଭଉଣୀଙ୍କ ସହ ବାଲ୍ୟସ୍ମୃତି, ମାଆଙ୍କ ହାତରନ୍ଧା ଖାଦ୍ୟର ମହକ । ଭୁଲିପାରି ନାହାନ୍ତି ଜାନକୀନାଥ ଭବନର ଧୂଳିମାଟି– ଯେଉଁଠୁ ସାଉଁଣ୍ଟୁ ଥିଲେ ସେ ତାଙ୍କ ଶୈଶବକୁ । ବିଭିନ୍ନ ସମୟରେ ଓଡ଼ିଶାକୁ ଆସିଛନ୍ତି । ଓଡ଼ିଆମାନଙ୍କ ସରଳତା ଓ ବୀରତ୍ୱ ଉଭୟକୁ ସ୍ୱୀକାର କରିଛନ୍ତି । ବହୁ ଜାତୀୟତାବାଦୀ ଓଡ଼ିଆଙ୍କ ମଧ୍ୟରେ ସୁଭାଷଙ୍କ ଚେତନାର ଅନ୍ୟତମ ସହଯାତ୍ରୀ ଥିଲେ ଉତ୍କଳମଣି ଗୋପବନ୍ଧୁ ଦାସ । ଗୋପବନ୍ଧୁଙ୍କଠାରୁ ଶିଖିଛନ୍ତି– ସେବାର ମନ୍ତ୍ର । ଗୁରୁତ୍ୱପୂର୍ଣ୍ଣ କଥା ହେଲା, ସେ ଯେତେଥର ଓଡ଼ିଶା ଆସିଛନ୍ତି, ନିଜର ପ୍ରିୟ ବିଦ୍ୟାଳୟକୁ ଯାଇଛନ୍ତି । ଓଡ଼ିଶା ସହିତ ତାଙ୍କ ଶୈଶବର ମଧୁର ସ୍ମୃତିଚାରଣରେ ବିଭୋର ହୋଇଛନ୍ତି । ସଂଗ୍ରାମୀ ସୁଭାଷ ଜନ୍ମମାଟି ଓଡ଼ିଶା ଓ ଓଡ଼ିଶାର ଲୋକମାନଙ୍କ ସମସ୍ୟାଠାରୁ ନିଜକୁ ଦୂରେଇ ଦେଇପାରି ନାହାନ୍ତି । ୧୯୨୮ ମସିହା ମେ' ମାସରେ ଅନୁଷ୍ଠିତ ଭାରତୀୟ ସର୍ବଦଳୀୟ କମିଟିର ସଭ୍ୟ ଭାବେ ଓଡ଼ିଶା ଭାଷାଭାଷୀ ଅଞ୍ଚଳକୁ ଏକତ୍ର କରି ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନ ଆନ୍ଦୋଳନକୁ ସ୍ୱୀକାର କରିଛନ୍ତି ଏବଂ ୧୯୪୦ ମସିହାରେ ଫରୱାର୍ଡ ବ୍ଲକ୍‌ର ଆଭିମୁଖ୍ୟ ସଂପର୍କରେ ଓଡ଼ିଆମାନଙ୍କୁ ଜଣାଇବାକୁ କଟକ ମ୍ୟୁନିସିପାଲିଟି ପଡ଼ିଆର ସମବେତ ପ୍ରାୟ ୫୦ହଜାର ଜନତାଙ୍କୁ ଉଦ୍‌ବୋଧନ ଦେଇଛନ୍ତି । ଏଇ ଓଡ଼ିଶାର ମାଟି ଯେ ତାଙ୍କୁ ଉଦ୍‌ବୋଧିତ କରିଛି ତାହା ସେ ସ୍ୱୀକାର କରିଛନ୍ତି ।

ସୁଭାଷ ଯେ 'ବର୍ତ୍ତମାନ', ତାହା କଟକର ଓଡ଼ିଆ ବଜାରର ଜାନକୀନାଥ ଭବନରେ ପହଞ୍ଚିଗଲେ ସ୍ପଷ୍ଟ ଅନୁଭବ କରିହୁଏ । ଏବେ ତାହା ନେତାଜୀ ଜନ୍ମସ୍ଥାନ ସଂଗ୍ରହାଳୟ ଭାବେ ପରିଚିତ । ଲାଗେ, ସେ ଏଇଠି କେଉଁଠି ଅଛନ୍ତି କି ! ତାଙ୍କ ଜନ୍ମଠାରୁ କୈଶୋର ଓ ସଂଗ୍ରାମୀ ଜୀବନର ବହୁ ସନ୍ତକ ଏଇଠି ସାଇତା ହୋଇ ରହିଛି । ପତ୍ନୀ, ଜର୍ମାନୀର ଝିଅ ଏମିଲି ସେଙ୍କଲେ ଓ କନ୍ୟା ଅନୀତାଙ୍କ ଫଟୋଚିତ୍ର ମଧ୍ୟ ଅଛି ଏବଂ ପତ୍ନୀଙ୍କୁ ୧୯୩୬ ମସିହାରେ ଅଷ୍ଟ୍ରିଆରୁ ସୁଭାଷ ଲେଖିଥିବା ଚିଠି 'ମୋ ଦେଶ ପୁନର୍ବାର ଡାକରା ଦେଇଛି– ମୋ କର୍ତ୍ତବ୍ୟ ମୋତେ ଆହ୍ୱାନ ଦେଇଛି– ମୁଁ ତୁମକୁ ତ୍ୟାଗ କରି ମୋର ପ୍ରଥମ ପ୍ରେମ ମୋ ଦେଶ ନିକଟକୁ ଫେରିଯିବି–' ସଂଗ୍ରହାଳୟରେ ପ୍ରଦର୍ଶିତ ଏହି ହୃଦୟସ୍ପର୍ଶୀ ଚିଠିର ସ୍ମୃତି ଏବେ ବି ଦର୍ଶକଙ୍କୁ ଭାବବିହ୍ୱଳ କରିଦିଏ ।

ସଂଗ୍ରାମୀ ଜଣେ ସନ୍ନ୍ୟାସୀ ନୁହେଁ, ସଂସାରୀ । ସଂଗ୍ରାମ ସହିତ ସମତାଳରେ ସଂସାର ବି ଚାଲୁଥାଏ– ହାତ ଧରାଧରି ହୋଇ ଏବଂ ସଂଗ୍ରାମର ମନ୍ତ୍ର ଯେ ଶୈଶବରେ ଅଙ୍କୁରିତ ହୋଇଥାଏ– ଏ ସଂଗ୍ରହାଳୟରେ ପାଦ ଦେଲେ ସେମିତି ଲାଗେ । ସତ୍ୟନିଷ୍ଠ, ସ୍ୱାଧୀନଚେତା, ବିପ୍ଳବୀ ବୀର ସୁଭାଷଙ୍କର ସମସ୍ତ ଚିହ୍ନକୁ ସାଇତି ରଖି ଏ ସଂଗ୍ରହାଳୟ ପ୍ରତ୍ୟେକ ଓଡ଼ିଶାବାସୀଙ୍କୁ ସୁଭାଷଙ୍କର ତ୍ୟାଗପୂତ ଦେଶପ୍ରେମର କଥା ଓ ବୀରତ୍ୱର ଗାଥା ମନେପକାଇ ଦିଏ । ଲାଗେ, ସୁଭାଷଙ୍କର ଏ ଜନ୍ମମାଟି ନୁହେଁ ତ ! ତ୍ୟାଗ ଓ ପ୍ରେମର ଏକ ପବିତ୍ର ମନ୍ଦିର ।

ବିଶ୍ୱାସ, ଓଡ଼ିଶାର ପିଲାମାନେ ଏ ପବିତ୍ର ଭୂମିକୁ ଆସିବେ । ଏ ମାଟିକୁ ଛୁଇଁବେ । ସେବା, ସଂଗ୍ରାମ ଓ ତ୍ୟାଗ ଯେ ମଣିଷକୁ ଅମର କରେ ଏହି ମହାମନ୍ତ୍ରକୁ ଅନୁଭବ କରିବେ । ଉପଭୋକ୍ତାବାଦର ଖୋଳପାକୁ ହକାଳି ଦେବେ । ସୁଭାଷଙ୍କ ଆଦର୍ଶର ସ୍ପନ୍ଦନରେ ସ୍ପନ୍ଦିତ ହେବେ । ବିଦ୍ୟାରେ ପ୍ରାଣବନ୍ତ ସେମାନଙ୍କ ବ୍ୟକ୍ତିତ୍ୱ ଭାରି ତୋଫା ଦିଶିବ । ଲାଗିବ ସେମାନେ ସତେଯେପରି ଜଣେ ଜଣେ ଦେଶମାତୃକା ପାଇଁ ସମର୍ପିତ ବ୍ୟକ୍ତିତ୍ୱ । ଅନେକ ସଂଗ୍ରାମର ଦେଶ ଭାରତ ଭୂଇଁରେ ଏବେ ସେମାନେ ସମସ୍ତେ ଜଣେ ଜଣେ ସଂଗ୍ରାମୀ । ଭାରତବାସୀଙ୍କ ଉଦ୍ଦେଶ୍ୟରେ ନେତାଜୀଙ୍କ ହୃଦୟସ୍ପର୍ଶୀ ଭାଷଣ ଏହିପରି ଥିଲା– ହେ ମୋ ଦେଶର ଭାଇଭଉଣୀ, ମୁଁ କାହିଁକି ଜନ୍ମଭୂମି ପରିତ୍ୟାଗ କରି ବିପଦସଂକୁଳ ଏ ଦୁର୍ଗମ ପଥରେ ପାଦ ଦେଲି ସେ କଥା ଆପଣମାନଙ୍କୁ କହିବାକୁ ଚାହେଁ । ଆଜି ଆପଣମାନେ ମୋତେ ଯେପରି ଆନ୍ତରିକତା ଓ ଆନନ୍ଦର ସହିତ ଅଭିନନ୍ଦିତ କରିଛନ୍ତି, ସେଥିପାଇଁ ଆପଣମାନଙ୍କୁ ଧନ୍ୟବାଦ ଜଣାଉଛି । ମୋର ଯେଉଁସବୁ ଭାରତୀୟମାନେ ତାଙ୍କର ଅନ୍ତରର ଅଗ୍ନିମୟ ଦେଶପ୍ରେମ ପ୍ରେରଣାରେ ଏତେ ଅଧିକ ସଂଖ୍ୟାରେ ଆଗେଇ ଆସିଛନ୍ତି, ମୁଁ ସେମାନଙ୍କ ନିକଟରେ ବିଶେଷ ଭାବରେ କୃତଜ୍ଞ । ଆଜି ମୁଁ ଯାହା ଦେଖୁଛି, ସେଥିରେ ମୋର ମନରେ ଏହି ବିଶ୍ୱାସ ଜନ୍ମିଛି ଯେ, ଆସନ୍ତା ସଂଗ୍ରାମରେ ସୋନାନ୍ ଏବଂ ମାଳୟସ୍ଥିତ ମୋର ଦେଶବାସୀମାନେ ଅଗ୍ରଣୀର ସ୍ଥାନ ଦଖଲ କରିବେ । ଦିନେ ଯେଉଁ ସ୍ଥାନ ବ୍ରିଟିଶ ସାମ୍ରାଜ୍ୟର ପ୍ରାକାର ସ୍ୱରୂପ ଥିଲା, ସେହି ସ୍ଥାନ ଆଜି ଭାରତୀୟ ଜାତୀୟତାବାଦର ଦୁର୍ଗରେ ପରିଣତ ହୋଇଛି ।

ସଂଗ୍ରାମ ମରେ ନାହିଁ । ଗୋଟିଏ ସଂଗ୍ରାମ ଆଉ ଗୋଟିଏ ସଂଗ୍ରାମକୁ ଜନ୍ମ ଦିଏ । ସ୍ୱାଧୀନତା ପ୍ରାପ୍ତି ପରେ ମଧ୍ୟ ଭାରତ ଆଜି ବି ଜାତି, ଧର୍ମ, ବର୍ଣ୍ଣ ଓ ଭାଷାକୁ କେନ୍ଦ୍ରକରି ଅନେକ ସଂଗ୍ରାମର ଅପେକ୍ଷା ରଖିଛି । ନେତାଜୀଙ୍କ ଜୟନ୍ତୀ ପାଳନ ଅବସରରେ ସେହିଭଳି ଏକ ଅହଂମୁକ୍ତ ଅନୁଭବ ପାଇଁ ଏ ଜାତି ଅପେକ୍ଷା ରଖିଛି– ଅପେକ୍ଷା ରଖିଛି ଜାନକୀନାଥ ଭବନ ।

ଅଧୀକ୍ଷକ, ରାଜ୍ୟ ଅଭିଲେଖାଗାର
ଭୁବନେଶ୍ୱର

# ଉତ୍କଳ ଗୀତିକା

**ସୁଦାମ ଚରଣ ଜେନା**

ମହୋଦଧି ତଟେ କଳିଙ୍ଗ ନାମରେ
ପବିତ୍ର ଉତ୍କଳ ଭୂଇଁ
ପୁଣ୍ୟତୋୟା ପ୍ରାଚୀ କଳକଳ ନାଦେ
ଧୀରେ ଯାଉଥିଲା ବହି
ପୂତ ପବିତ୍ରରେ ଖ୍ୟାତ ଏହି ଖଣ୍ଡ
ଜଗନ୍ନାଥ ବିଜେ ଯହିଁ
ମଙ୍ଗଳା–ଶାରଳା ବିରଜା–କମଳା
ତନ୍ତ୍ରପୀଠ ଭାବେ ରହି
କବି ଜୟଦେବ ତୁଳସୀ ଶ୍ରୀଧର
ପ୍ରେମର ଠାକୁର ସେହି
ଜୈନ ବୁଦ୍ଧ ଶାକ୍ତ ପଞ୍ଚସଖାଗଣ
ଯେତେ ମୁନି ଋଷି ଥାଇ
ଇତିହାସ ଦେଖ ଝରିବ ରକତ
ସ୍ୱତନ୍ତ୍ର ଓଡ଼ିଶା ଗାଥା

କର୍ମବୀର ଆଉ ସୁତ୍ୱଳଙ୍କ ଦର୍ପ
ଓଡ଼ିଆ ଜାତିର କଥା
ସୁଭାଷ ଚନ୍ଦର ଓଡ଼ିଆ ଜାତିର
ସୁଯୋଗ୍ୟ ସନ୍ତାନ ଥିଲେ
ଚନ୍ଦ୍ରଶେଖରଙ୍କ ଦେଶ ପାଇଁ ଦାନ
କାଳକୁ ଯଶ ରଖିଲେ
ଉତ୍କଳଗୌରବ ଉତ୍କଳର ମଣି
ଜାତି ସମ୍ମିଳନ କଲେ
ଜାତୀୟ ଚେତନା ସମୃଦ୍ଧି କାମନା
ଜାତି ପ୍ରାଣେ ଭରିଦେଲେ
ବାରବାଟୀ ଦୁର୍ଗ କହୁଅଛି କଥା
ସ୍ୱାର୍ଥକୁ ଦେବାରେ ବଳି
ଚମକାଇ ଦେବା ଏ ଧରା ଧାମରେ
ଜାତି ଗୌରବ ସ୍ମରି ।

ଉତ୍ତାରଣ, କସର୍ଦ୍ଦା, କଟକ

# ଓଡ଼ିଆ ଚଳଚ୍ଚିତ୍ରରେ ବୈପ୍ଳବିକ ପରିବର୍ତ୍ତନ 'ଭଉଁରି'

**ଶୁଭ୍ରାଂଶୁ ନାୟକ**

ସମାଜର ଚାଲି ଚଳଣି, ସଂସ୍କୃତି, ପରମ୍ପରା ସାମାଜିକ ମୂଲ୍ୟବୋଧ ଚଳଚ୍ଚିତ୍ର ମାଧ୍ୟମରେ ପ୍ରତିଫଳିତ ହୋଇଥାଏ । ଏଇ ଚଳଚ୍ଚିତ୍ର ମାଧ୍ୟମରେ ନିର୍ମାତା ସମାଜର ଗତି, ପ୍ରଗତି ଉପରେ ଦୃଷ୍ଟି ଦେଇ ବୁଝାଇବାକୁ ଚେଷ୍ଟା କରିଥାନ୍ତି । ଅନେକ ସମୟରେ ଚଳଚ୍ଚିତ୍ରରେ ସାମାଜିକ ପରିବର୍ତ୍ତନ ପାଇଁ ଆହ୍ୱାନ ଦିଆଯାଇ ଥାଏ ନିର୍ମାତା । ତଥାପି ଏହା କୌଣସି ନିର୍ମାତାଙ୍କର ବ୍ୟକ୍ତିଗତ ଚିନ୍ତାଧାରା ହୋଇପାରେ ବା ଏକ ସାମାଜିକ ଦୃଷ୍ଟାନ୍ତକୁ ଆଖି ଆଗରେ ରଖି ସମାଜ, ସରକାର ଓ ବ୍ୟକ୍ତିବିଶେଷଙ୍କୁ ପରିବର୍ତ୍ତନ ଆବଶ୍ୟକତା ଅଛି କି ନାହିଁ ଭାବିବାକୁ ଛାଡ଼ି ଦେଇଥାନ୍ତି ।

୨୦୧୫ ବୋଧହୁଏ ଓଡ଼ିଆ ଚଳଚ୍ଚିତ୍ର ଜଗତ ପାଇଁ ଏକ ସୁବର୍ଣ୍ଣ ଯୁଗ ହେବ ବୋଲି ଆଶା କରାଯାଇପାରେ । କାରଣ ବର୍ଷ ଆରମ୍ଭରୁ ହିଁ ଓଡ଼ିଶାବାସୀଙ୍କ ପାଇଁ 'ଭଉଁରି' ଚଳଚ୍ଚିତ୍ରର ନିର୍ମାତା ଏଭଳି ଏକ ଚଳଚ୍ଚିତ୍ର ଭେଟି ଦେଇଛନ୍ତି, ଯାହାକୁ ହୁଏତ ଓଡ଼ିଆ ଚଳଚ୍ଚିତ୍ର ଶିଳ୍ପ ସବୁଦିନ ପାଇଁ ମନେ ରଖିବ । ଓଡ଼ିଆ ଚଳଚ୍ଚିତ୍ର ପ୍ରତି ବିମୁଖ ହୋଇଥିବା ଦର୍ଶକମାନେ କିନ୍ତୁ ଏଇ ଚଳଚ୍ଚିତ୍ରରେ ସେମାନେ ଖୋଜୁଥିବା ସମସ୍ତ ପ୍ରକାର ଉପାଦେୟତାକୁ ଦେଖିବାକୁ ପାଇପାରିବେ ।

ଆଜି ଓଡ଼ିଆ ଚଳଚ୍ଚିତ୍ର ଶିଳ୍ପ ସାମାନ୍ୟ ମନ୍ଥର ହୋଇଯାଇଥିବା ଜଣାପଡ଼େ । କାରଣ ଦର୍ଶକମାନେ ସେହିଭଳି ଆଉ ଓଡ଼ିଆ ସିନେମା ପ୍ରେକ୍ଷାଳୟକୁ ଦେଖିବାକୁ ଯାଉନାହାନ୍ତି କିନ୍ତୁ ଜାତୀୟ ଭାଷାର ଚଳଚ୍ଚିତ୍ରଟିଏ ଦେଖିବା ପାଇଁ ଏଠି ଲମ୍ବା ଲାଇନ୍ ଦେଖିବାକୁ ମିଳିଥାଏ । ବୋଧହୁଏ ଏହାର କାରଣ ଅନେକ ଥାଇପାରେ । ଏଥିପ୍ରତି ଚଳଚ୍ଚିତ୍ର ନିଗମ, ସେନ୍‌ସର ବୋର୍ଡଠାରୁ ଆରମ୍ଭ କରି ଚଳଚ୍ଚିତ୍ରର ନିର୍ମାତା, ନିର୍ଦ୍ଦେଶକ ଓ କାହାଣୀକାରମାନଙ୍କୁ ଧ୍ୟାନ ଦେବାକୁ ପଡିବ । ବୋଧହୁଏ ଏହାର ମୂଳଦୁଆ ଏହି 'ଭଉଁରି' ଚଳଚ୍ଚିତ୍ରରୁ ନିର୍ମାତା, ନିର୍ଦ୍ଦେଶକ ଓ କାହାଣୀକାର ଆରମ୍ଭ କରିଦେଇଛନ୍ତି । ଏହା ଏକ ମୌଳିକ କଥାବସ୍ତୁ ଉପରେ ଆଧାରିତ । କୋରାପୁଟ ଅଞ୍ଚଳର ପାଣି, ପବନ, ଭାଷା, ପରିବେଶ ଓ ସେଠି ରହୁଥିବା ଲୋକଙ୍କର ଚରିତ୍ର, ମନୋଭାବ ଓ ସେମାନଙ୍କ ଉପରେ ପଡୁଥିବା ବାହ୍ୟ ପ୍ରଭାବକୁ କାହାଣୀକାର ଓ ନିର୍ମାତା ଖୁବ୍ ସୁନ୍ଦର ଭାବରେ ଚିତ୍ରଣ କରିଛନ୍ତି ଏହି ଚଳଚ୍ଚିତ୍ରରେ ।

କିଏ କହିଲା ସିନେମାରେ ଦେଖେଇଲା ଭଳି ପରିବେଶ ଓଡ଼ିଶାରେ ନାହିଁ । ପ୍ରାକୃତିକ ପରିବେଶ ଯେ ଓଡ଼ିଶାରେ ଭରପୂର ଅଛି ଓ ତାହା ସିନେମାରେ ଦେଖାଯାଇ ପାରିବ, ତାହା ଏ ଚଳଚ୍ଚିତ୍ରକୁ ଦୃଶ୍ୟାୟନ କରିଥିବା କ୍ୟାମେରାମ୍ୟାନ୍ ହିଁ ସ୍ପଷ୍ଟ କରିଛନ୍ତି । ଚଳଚ୍ଚିତ୍ରର ପ୍ରତ୍ୟେକଟି ଦୃଶ୍ୟକୁ ପ୍ରକୃତି ସହ ଜଡ଼ିତ କରି ଦୃଶ୍ୟାୟନ କରିବା ଯେ କେତେ କଷ୍ଟ, ତାହା ଚଳଚ୍ଚିତ୍ରଟିକୁ ଦେଖିଲେ ଜଣାପଡ଼େ । ସମାଜକୁ ଅନେକ ଦିଗ୍‌ଦର୍ଶନ ଦେଉଥିବା ଏ ଚଳଚ୍ଚିତ୍ରଟିରେ ଏକ ସରଳ ନିଷ୍କପଟ ଆଦିବାସୀ ପିଲାକୁ ତଥାକଥିତ ସମ୍ଭ୍ରାନ୍ତ ବା ପାଠଶାଠ ପଢ଼ି ନିୟମ କାନୁନ୍ ଜାଣିଥିବା କିଛି ଖଳଚରିତ୍ରମାନେ କିଭଳି ତା' ଉପରେ ଅତ୍ୟାଚାର କରି ତାକୁ ତା'ର ଗାଁ, ତା'ର ଚାରିପଟରେ ଥିବା ପରିବେଶରୁ ତାକୁ ଦୂରେଇ ଦେବାକୁ ଚେଷ୍ଟା କରୁଛନ୍ତି ଓ ଯାହା ଫଳରେ ବିଚଳିତ ହୋଇ ଶେଷରେ ସେ ମାଓବାଦୀର ମୁଖା ପିନ୍ଧି କିଭଳି ପ୍ରତିଶୋଧ ନେବାକୁ ଚାହେଁ, ତାହା ଏଥିରେ ଅତି ସୁନ୍ଦର ଭାବରେ ଚିତ୍ରଣ କରାଯାଇଛି । ଶେଷରେ ଏଇ ଲଢ଼େଇରେ ସେ ତା'ର ସର୍ବସ୍ୱ ହରେଇଛି । ପରିଶେଷରେ ସେ ଅନୁତାପ କରୁଛି ଯେ ଏ ଲଢ଼େଇରେ ତ କେବଳ ସେ ହରେଇଛି । ଯେଉଁ ଆଶା ନେଇ ସେ ମାଓବାଦୀରେ ମିଶିଥିଲା, ତା'ର ଆଶା ପୂରଣ ହେଲାନି କି ସେ ଦଳ ତାକୁ ଆଉ ସୁରକ୍ଷା ଦେଇପାରିଲା ନାହିଁ । ତେଣୁ ସେ ପୁଣିଥରେ ସମାଜର

ମୁଖ୍ୟସ୍ରୋତରେ ସାମିଲ୍ ହେବାକୁ ଫେରିଆସିଲା । ହୋଇପାରେ ଏ ଚଳଚ୍ଚିତ୍ରଟି ସତ୍ୟ ଘଟଣା ଉପରେ ଆଧାରିତ ବା କପୋଳକଳ୍ପିତ କିନ୍ତୁ ନିର୍ମାତାଙ୍କର ଚେଷ୍ଟା ଯେ ବିଫଳ ହୋଇନାହିଁ ଏଥିରୁ ଏହା ସ୍ପଷ୍ଟ ବାରି ହୋଇପଡ଼େ । ଏଥିରେ ପ୍ରାୟ ସମସ୍ତ କଳାକାର ଜୀବନ୍ତ ଅଭିନୟ କରିଛନ୍ତି। ଜଣେ ଅଣଓଡ଼ିଆ ଅଭିନେତ୍ରୀଙ୍କର ବଳିଷ୍ଠ ଅଭିନୟ ଏ ଚଳଚ୍ଚିତ୍ରକୁ ଆହୁରି ପ୍ରାଣବନ୍ତ ତଥା ବଳିଷ୍ଠ କରିପାରିଛି । ତେବେ ଏହି ଚିତ୍ରଟିରେ ଜଣେ ଓଡ଼ିଆ ଝିଅ ମଧ ଅଭିନୟ କରିପାରିଥାନ୍ତେ । କାହିଁକି ଯେ ନିର୍ମାତା ଅଣଓଡ଼ିଆ ଝିଅଙ୍କୁ ପସନ୍ଦ କଲେ ତାହା ସେ କହିପାରିବେ । ତଥାପି ଯଦି କେବେ ଏଭଳି ଚଳଚ୍ଚିତ୍ରରେ ଅଭିନୟ ପାଇଁ କାହାକୁ ଆମନ୍ତ୍ରଣ କରାଯାଏ । ଏଥିପାଇଁ ନିର୍ମାତା କଥାବସ୍ତୁ ଓ ଚରିତ୍ର ଉପରେ ଯଦି ଆଲୋଚନା ଓ ପର୍ଯ୍ୟାଲୋଚନା କରନ୍ତି ତେବେ ନିଶ୍ଚୟ ସୁଫଳ ମିଳିପାରିବ ବୋଲି ଆଶା କରାଯାଇପାରେ । ଚଳଚ୍ଚିତ୍ରର ମୁଖ୍ୟ ଅଙ୍ଗ ସଙ୍ଗୀତ । ଏଥିରେ ମଧ ସଙ୍ଗୀତ ଅତ୍ୟନ୍ତ ସୁମଧୁର କହିଲେ ଠିକ୍ ହେବ । କାରଣ ଆଦିବାସୀଙ୍କ ସଂସ୍କୃତିକୁ ଆଖି ଆଗରେ ରଖି ଏଥିରେ ସଙ୍ଗୀତ ଉପରେ ପ୍ରାଧାନ୍ୟ ଦିଆଯାଇଛି । କଥାବସ୍ତୁ ସହ ଭାଷା, ସଂଳାପ ଓ ସଙ୍ଗୀତର ସମନ୍ୱୟ ପ୍ରକୃତରେ ଚଳଚ୍ଚିତ୍ରଟିକୁ ବଳିଷ୍ଠ କରି ଗଢ଼ି ତୋଳିଛି ଏଥିରେ ଦ୍ୱିମତ ହେବାର କାରଣ ନାହିଁ । ଏହି ଚଳଚ୍ଚିତ୍ରର ନିର୍ମାତା ଅତିଶ୍ କୁମାର ରାଉତ, ସଂଳାପକାର ଦିଲ୍ଲୀପ ଚୌଧୁରୀ, ନିର୍ଦ୍ଦେଶକ ସୁଧାଂଶୁ ମୋହନ ସାହୁ ଓ ଫଟୋଗ୍ରାଫି ଡାଇରେକ୍ଟର ସଂଜୀବ୍ ମହାପାତ୍ରଙ୍କୁ ଧନ୍ୟବାଦ ଯେ ସେ ଓଡ଼ିଆ ଦର୍ଶକଙ୍କୁ ଏଭଳି ଏକ ସୁନ୍ଦର ଚଳଚ୍ଚିତ୍ରଟିଏ ଭେଟି ଦେଇ ପାରିଛନ୍ତି ।

ଆଗାମୀ ଦିନରେ ଯଦି ଚଳଚ୍ଚିତ୍ର ନିର୍ମାତାମାନେ କଷ୍ଟ କରି କିଛି ନୂଆ ଚିନ୍ତାଧାରାରେ ଚଳଚ୍ଚିତ୍ର ନିର୍ମାଣ କରନ୍ତି ନିଶ୍ଚିତ ରୂପେ ଚଳଚ୍ଚିତ୍ର ଶିଳ୍ପ ତା'ର ପୂର୍ବ ଗରିମା ଫେରିପାଇବା ସଙ୍ଗେ ସଙ୍ଗେ ଦର୍ଶକଙ୍କୁ ପ୍ରେକ୍ଷାଳୟକୁ ଟାଣି ଆଣିବାରେ ସଫଳ ହୋଇପାରିବ । ସରକାର ମଧ ଯଦି ଓଡ଼ିଶାରେ ଥିବା ପ୍ରାକୃତିକ ପରିବେଶର ସୁରକ୍ଷା କରି ତାକୁ ଚଳଚ୍ଚିତ୍ର ଶିଳ୍ପ ସହ ଯୋଡ଼ିପାରନ୍ତି, ତେବେ ବ୍ୟବସାୟିକ ଦୃଷ୍ଟିକୋଣରୁ ମଧ ନିର୍ମାତା, ନିର୍ଦ୍ଦେଶକ ଓ ସରକାର ସଫଳ ହୋଇପାରନ୍ତେ । ତତ୍‌ସହିତ ଯଦି ଓଡ଼ିଶା ସରକାରଙ୍କର ସଂସ୍କୃତି ବିଭାଗ ଓ ଓଡ଼ିଶା ଚଳଚ୍ଚିତ୍ର ନିଗମ ଏଭଳି ଚଳଚ୍ଚିତ୍ର ନିର୍ମାଣ କରିବାକୁ ଚାହୁଁଥିବା ନିର୍ମାତାମାନଙ୍କୁ ପ୍ରୋତ୍ସାହନ ଦିଅନ୍ତି, ତେବେ ଚଳଚ୍ଚିତ୍ରରେ ଓଡ଼ିଶାର କଳା, ସଂସ୍କୃତି, ଚଳଣି ଓ ପ୍ରକୃତି ସବୁଦିନ ପାଇଁ ଜୀବନ୍ତ ରହିପାରିବ, ଏଥିରେ ସନ୍ଦେହ ନାହିଁ ।

ସିନେ କଳାକାର
ପ୍ଲଟ୍ ନଂ- ଏ-୧,୧/୬, ହାଇଟେକ୍ ପ୍ଲାଜା
ସୁନ୍ଦରପଦା, ଭୁବନେଶ୍ୱର

# ଉତ୍ତରାୟଣ ପାର୍ବଣ

**ଦେବେନ୍ଦ୍ରନାଥ ମହାନ୍ତି**

ଉତ୍ତରାୟଣ ଦର୍ଶନ ସୂର୍ଯ୍ୟନାରାୟଣ
ଉତ୍ତରମେରୁ ମକରେ ବାସ ଶୁଭପ୍ରବଣ ।
ପରମ ପୁଣ୍ୟମୟ ଏହି ଦିବ୍ୟ ସଂଯୋଗ
ମକର ମିଳନ ପ୍ରୀତି ବାନ୍ଧବ ପ୍ରସଙ୍ଗ ।
ସିନ୍ଧୁଜଳେ, ନଦୀ ସଂଗମେ ଅବଗାହନ
ପରିକ୍ରମା ପୂର୍ବକ ନାରାୟଣ ପୂଜନ ।
ଉତ୍ତରାୟଣ ପ୍ରାରମ୍ଭେ ବିଷ୍ଣୁଙ୍କ ଦର୍ଶନ
ଦେହ ବନ୍ଧନରୁ ମୁକ୍ତ ମାନବ ଜୀବନ ।
ଦାନ, ତପ, ହୋମ, ସ୍ୱାଧ୍ୟାୟ ପିତୃ ତର୍ପଣ
ସର୍ବକାର୍ଯ୍ୟ ଅକ୍ଷୟ ବିଭୁଙ୍କର ଭିଆଣ ।
ଆଦିତ୍ୟ ରାଶ୍ୟନ୍ତର ଉତ୍ତରାୟଣ ପର୍ବ
ସକଳ ମାନବ ଧର୍ମ-କର୍ମରୁ ଉଦ୍ଭବ ।
ଚତୁର୍ଦ୍ଦଶପଦୀସ୍ଥିତ ପାର୍ବଣ ମର୍ଯ୍ୟାଦା
ମମ ପ୍ରୟାସ ମାତ୍ର ଭାବେ ବିହ୍ୱଳ ସଦା ।

ପ୍ଲଟ୍ ନଂ- ୬୧୪/୩, ପ୍ରଫୁଲ୍ଲ ନିବାସ
ଲେନ୍ ନଂ- ୮, ଶ୍ରୀବିହାର
ପଟିଆ, ଭୁବନେଶ୍ୱର- ୭୫୧୦୨୪

# ଭାରତୀୟ ସାଧାରଣତନ୍ତ୍ର ଦିବସର ଅନୁଚିନ୍ତା

ଅଧ୍ୟାପକ ଉଦୟନାଥ ତ୍ରିପାଠୀ

ଭାରତର ଭାଗ୍ୟାକାଶରେ ସ୍ୱତନ୍ତ୍ରତାର ନୀଳ ଜ୍ୟୋସ୍ନା ଉଦ୍‌ଭାସିତ ହୋଇଥିଲା ରାତ୍ରର ଘନ କାଳିମାକୁ ଅପସାରିତ କରି ବର୍ଷାଝରା ମେଘମେଦୂରିତ ଆକାଶରେ ଅଗଷ୍ଟ ମାସ ପନ୍ଦର ତାରିଖ ୧୯୪୭ ମସିହାର ମଧ୍ୟ ରାତ୍ରରେ । ଆମ ନବ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ରୂପେ ଶପଥ ନେଲେ ପଣ୍ଡିତ ଜବାହରଲାଲ ନେହେରୁ ତତ୍କାଳୀନ ଇଂରେଜ ବଡ଼ଲାଟ ଲର୍ଡ ମାଉଣ୍ଟ ବାଟେନଙ୍କ ସମ୍ମୁଖରେ ଓ ସଦୟ ଉପସ୍ଥିତିରେ । ଏହାର ତିନିବର୍ଷ ପରେ ଜାନୁଆରୀ ମାସ ୨୬ ତାରିଖ ଦିନ ଆମର ସମ୍ବିଧାନ ପ୍ରଣେତାମାନେ ସ୍ୱାଧୀନ ଭାରତର ଶାସନତାନ୍ତ୍ରିକ ସୁପରିଚାଳନା ଓ ସୁବ୍ୟବସ୍ଥା ନିମନ୍ତେ ଲାଗୁ କଲେ ତାଙ୍କ ପ୍ରଣୀତ ନବ ସମ୍ବିଧାନକୁ ଓ ବିଶ୍ୱ ଦରବାରରେ ଏହି ଦିନଠାରୁ ଭାରତ ଏକ ସାର୍ବଭୌମ, ଲୋକତାନ୍ତ୍ରିକ ଗଣତନ୍ତ୍ର ରାଷ୍ଟ୍ର ରୂପେ ପରିଚିତ ହେବାକୁ ଲାଗିଲା । ସେହି ପବିତ୍ର ଦିନ ଠାରୁ ଆଜି ପର୍ଯ୍ୟନ୍ତ ପ୍ରତିବର୍ଷ ଜାନୁଆରୀ ୨୬କୁ ଗଣତନ୍ତ୍ର ଦିବସ ରୂପେ ସମଗ୍ର ଦେଶବାସୀ, ରାଜନେତା ଓ ନେତୃସ୍ଥାନୀୟ ବ୍ୟକ୍ତିମାନେ ମହା ଆଡମ୍ବରରେ ଭାରତୀୟ ତ୍ରିରଙ୍ଗା ପତାକାକୁ ବିଭିନ୍ନ ସ୍ଥାନରେ ଉଡ୍ଡୀୟମାନ କରି ହର୍ଷୋଲ୍ଲାସରେ ପାଳନ କରି ଆସୁଛନ୍ତି । ଏହି ଶୁଭ ଅବସରକୁ ସରସ, ସୁନ୍ଦର, ବର୍ଣ୍ଣିଳ ଓ ଅତୀତ ଆକର୍ଷଣୀୟ କରିବା ପାଇଁ ଗତ କେତେମାସ ପୂର୍ବେ ଆମର ଲୋକପ୍ରିୟ ପ୍ରଧାନମନ୍ତ୍ରୀ ଶ୍ରୀଯୁକ୍ତ ନରେନ୍ଦ୍ର ମୋଦି ତାଙ୍କର ଆମେରିକା ଗସ୍ତ କାଳରେ ଚତୁରତାର ସହିତ ସେଦେଶର ରାଷ୍ଟ୍ରପତି ଓବାମାଙ୍କୁ ଏହି ପବିତ୍ର ଦିବସରେ ଗଣତନ୍ତ୍ର ଉତ୍ସବ ପାଳନ ପାଇଁ ମୁଖ୍ୟଅତିଥି ରୂପେ ହାର୍ଦ୍ଦିକ ଆମନ୍ତ୍ରଣ କରିଛନ୍ତି ଓ ଓବାମା ତାଙ୍କର ଆମନ୍ତ୍ରଣକୁ ସାଦରେ ଗ୍ରହଣ କରିଛନ୍ତି । ଆମେରିକା ଭଳି ପ୍ରଗତିଶୀଳ ରାଷ୍ଟ୍ରର ମୁଖ୍ୟ ନାୟକ ଭାରତ ଭୂମିରେ ପଦାର୍ପଣ କରିବାର ସ୍ୱୀକୃତି ବାସ୍ତବରେ ଭାରତୀୟମାନଙ୍କ ପାଇଁ ଅତ୍ୟନ୍ତ ଗର୍ବ ଓ ଗୌରବର ଅଧ୍ୟାୟ । ନିକଟ ଅତୀତରେ ପାକିସ୍ତାନୀ–ଇ–ତାଲିବାନୀଙ୍କ ଜଘନ୍ୟ ଓ ବର୍ବରୋଚିତ ଆକ୍ରମଣରେ ୧୭୦ରୁ ଅଧିକ ପାକିସ୍ତାନୀ ସୈନିକ ବିଦ୍ୟାଳୟର ଛାତ୍ରଛାତ୍ରୀମାନେ ମୃତ୍ୟୁବରଣ ସମଗ୍ର ବିଶ୍ୱବାସୀଙ୍କୁ ସ୍ତବ୍ଧ କରିବା ସହିତ ଭାରତ ସରକାରଙ୍କୁ ଦେଶର ନିରାପତ୍ତା ଓ ଅଖଣ୍ଡତା ରକ୍ଷା ପାଇଁ ସଜାଗ ଦୃଷ୍ଟି ରଖିବା ପାଇଁ ଚେତାଇ ଦେଇଛି ।

ଭାରତ ହେଉଛି ଏକ ସଂଘାତ୍ମକ ପ୍ରଜାତନ୍ତ୍ର ସାର୍ବଭୌମ ଗଣତାନ୍ତ୍ରିକ ରାଷ୍ଟ୍ର । ଗଣତନ୍ତ୍ର ରାଷ୍ଟ୍ର ରୂପେ ବିଶ୍ୱ ବକ୍ଷରେ ଏହାର ସ୍ଥାନ ସର୍ବପ୍ରଥମ । ଏହି ରାଷ୍ଟ୍ରରେ ବିଭିନ୍ନ ସମ୍ପ୍ରଦାୟ ଜାତି, ଗୋଷ୍ଠୀର ବ୍ୟକ୍ତିମାନେ ବହୁ ପ୍ରାଚୀନ କାଳରୁ ମିଳିତ ରୂପେ ବସବାସ କରି ଆସୁଛନ୍ତି ଓ ଏଠାରେ ସରକାର ଧର୍ମନିରପେକ୍ଷ, ଗଣତନ୍ତ୍ର ନୀତିକୁ ମୂଳମନ୍ତ୍ର ରୂପେ ଧରି ନେଇଛନ୍ତି । ଏଣୁ ଭାରତର ସର୍ବତ୍ର କୌଣସି ସମ୍ପ୍ରଦାୟ ଓ ଧର୍ମର ଲୋକଙ୍କ ପ୍ରତି ଧର୍ମ ବିଦ୍ୱେଷ ନୀତି ଅବଲମ୍ବନ କରି ସମ୍ବିଧାନ ସମସ୍ତ ଭାରତବାସୀଙ୍କୁ ସମାନ ଅଧିକାର ଓ ଆଇନ ପ୍ରଦାନ କରି ଆସିଛି । ଏବେ ଭାରତର ଲୋକସଂଖ୍ୟା ୧୨୫ କୋଟିରୁ ଅଧିକ ବୋଲି ଜଣଗଣନାରୁ ଜଣାପଡ଼ିଛି । ସ୍ୱାଧୀନତା ଲାଭ ପରେ ନବ ସ୍ୱତନ୍ତ୍ର ଭାରତୀୟ ଗଣତନ୍ତ୍ର ସମ୍ମୁଖରେ ବହୁବିଧ ସମସ୍ୟା ଉତ୍ତୁଙ୍ଗ ପର୍ବତ ଶିଖା ପରି ଦଣ୍ଡାୟମାନ ଥିଲା । ଖାଦ୍ୟ, ବସ୍ତ୍ର, ସ୍ୱାସ୍ଥ୍ୟ, ଶିକ୍ଷା, ବିଜ୍ଞାନ, ଆର୍ଥିକ ଅନଟନ, ନିରକ୍ଷରତା ଆଦି ଅନେକ ସମସ୍ୟାରେ ଆମ ରାଷ୍ଟ୍ରର ପ୍ରଗତି ଓ ବିକାଶ ପାଇଁ ଘୋର ଅନ୍ତରାୟ ସୃଷ୍ଟି ହୋଇଥିଲା । ମାତ୍ର ପାଞ୍ଚବର୍ଷୀୟ ଯୋଜନାମାନଙ୍କ ମାଧ୍ୟମରେ ଏହି ଉତ୍କଟ ସମସ୍ୟାଗୁଡ଼ିକର ଆଶୁ ସମାଧାନ ପାଇଁ ସରକାର ଉଦ୍ୟମ କଲା ପରେ ବି ଦୀର୍ଘଦିନ ପରେ ଆମ ଦେଶରୁ ନିରକ୍ଷରତା ଓ ଦାରିଦ୍ର୍ୟ ସମ୍ପୂର୍ଣ୍ଣ ରୂପେ ଦୂର ହୋଇପାରି ନାହିଁ । ଖାଦ୍ୟ ଶସ୍ୟର ଉତ୍ପାଦନ ଓ କୃଷି କ୍ଷେତ୍ରରେ ଆମ ଦେଶ ଭାରତ ଅଭୁତପୂର୍ବ ପ୍ରଗତି କଲା ପରେ ବି ଅନେକ କ୍ଷେତ୍ରରେ ପ୍ରଗତିଶୀଳ ରାଷ୍ଟ୍ର ସଂଯୁକ୍ତ ରାଜ୍ୟ ଆମେରିକା, ଜାପାନ, ଚୀନ୍ ଇତ୍ୟାଦି ରାଷ୍ଟ୍ରମାନଙ୍କ ସହିତ ସମକକ୍ଷ ହୋଇପାରି ନାହିଁ । ଏଥିପାଇଁ ଲୋଡ଼ା ଆତ୍ମମାନଙ୍କ କଠିନ ପରିଶ୍ରମ, ଐକାନ୍ତିକ ଦେଶ

ପ୍ରେମର ଭାବ ଓ କର୍ମପ୍ରବଣତା । ଶିକ୍ଷା ଓ ଔଦ୍ୟୋଗିକ କ୍ଷେତ୍ରରେ ଆମ୍ଭମାନଙ୍କର ଅନଗ୍ରସରତାକୁ ଦୂର କରି ଏ ଦିଗରେ ଜନସାଧାରଣ ଓ ଲୋକତନ୍ତ୍ର ସରକାରଙ୍କୁ ବିଶେଷ ଯତ୍ନବାନ ହେବାକୁ ପଡ଼ିବ । ବଡ଼ ସୌଭାଗ୍ୟର କଥା ଏହି ଯେ ଆମ ଦେଶ ମଙ୍ଗଳ ଗ୍ରହକୁ ଅନ୍ତରୀକ୍ଷ ଯାନ ଇସ୍ରୋ ମାଧ୍ୟମରେ ସର୍ବପ୍ରଥମରେ ପଠାଇବାକୁ ସକ୍ଷମ ହୋଇପାରିଛି । ଏ କ୍ଷେତ୍ରରେ ଆମେରିକା, ଚୀନ ପ୍ରଭୃତି ରାଷ୍ଟ୍ର ଉଦ୍ୟମ ଚଳାଇଥିଲେ ବି ସେମାନଙ୍କର ପ୍ରେରିତ ଅନ୍ତରୀକ୍ଷ ଯାନଗୁଡ଼ିକ ମଙ୍ଗଳ ପୃଷ୍ଠକୁ ପହଞ୍ଚିବାର ସଫଳତା ହାସଲ କରି ପାରିନାହାନ୍ତି ।

ଆମ ଦେଶର ନାଗରିକମାନେ ତଥା ନବ ଯୁବକ ଓ ଯୁବତୀମାନେ ଅନ୍ୟ ଦେଶର ନାଗରିକମାନଙ୍କଠାରୁ ବୁଦ୍ଧିବିଦ୍ୟା, ଜ୍ଞାନ, ବିଜ୍ଞାନ ଓ ଗରିମାରେ କେବେ ହେଲେ ନ୍ୟୂନ ନୁହନ୍ତି । ଏହାର ପ୍ରମାଣ ଦେଇଛନ୍ତି ସେମାନେ ଆଇଟି ଉଦ୍ୟୋଗ କ୍ଷେତ୍ରରେ । ଭାରତୀୟ ଆଇଟି ଇଞ୍ଜିନିୟରମାନେ ଏବେ ଆମେରିକା, ୟୁରୋପ, ଜାପାନ, ଚୀନ୍, ରୁଷିଆ ଇତ୍ୟାଦି କ୍ଷେତ୍ରରେ ଏ ଦିଗରେ ନିଜର ଅସାଧାରଣ ପ୍ରତିଭା ପ୍ରଦର୍ଶନ କରି ବିଶ୍ୱ ଜନତାର ଦୃଷ୍ଟି ଆକର୍ଷଣ କରିବାକୁ ସମର୍ଥ ହୋଇପାରିଛନ୍ତି । ବର୍ତ୍ତମାନ ଆମ ଦେଶର ନାଗରିକମାନେ ନିଜ ନିଜ ଭିତରେ ଭେଦଭାବ ଓ ବିଚ୍ଛିନ୍ନତାର ମନୋବୃତ୍ତିକୁ ତ୍ୟାଗ କରି ଦେଶ, ଜାତିର କଲ୍ୟାଣ ପାଇଁ କାୟମନୋବାକ୍ୟରେ ସଂକଳ୍ପବଦ୍ଧ ହୋଇ ଆମର ଅର୍ଥନୈତିକ, ଶୈକ୍ଷିକ, ଔଦ୍ୟୋଗିକ ଅନଗ୍ରସରତାକୁ ଦୂର କରିବାକୁ ଏବଂ ସରକାରଙ୍କ ଯୋଜନାଗୁଡ଼ିକୁ ସଫଳ କରିବା ପାଇଁ ଲାଗିପଡ଼ିବାର ବେଳ ଆସିଛି । ଆମ ଦେଶ ହେଉଛି ଏକ କୃଷିପ୍ରଧାନ ଅଞ୍ଚଳ । ଏହାର ୭୦ ପ୍ରତିଶତ ଜନତା ଗ୍ରାମାଞ୍ଚଳରେ ବାସ କରନ୍ତି । ଦେଶର ସମସ୍ତ ଜନତାଙ୍କୁ ଅଗ୍ରସର କରିବା ପାଇଁ ଖାଦ୍ୟାନ୍ନରେ ଆତ୍ମନିର୍ଭରଶୀଳ ହେବା ପାଇଁ କୃଷିକ୍ଷେତ୍ରରେ ସବୁଜ ବିପ୍ଳବ ଆଣିବା ଅବଶ୍ୟମ୍ଭାବୀ ହୋଇପଡ଼ିଲାଣି । କର୍ମନିଯୁକ୍ତି ହେଉଛି ଭାରତୀୟ ନବଯୁବକ ଓ ଯୁବତୀମାନଙ୍କ ପାଇଁ ଏକାନ୍ତ ଅପରିହାର୍ଯ୍ୟ। ଦେଶ ସ୍ୱାଧୀନ ହେଲା ପରେ ଦୀର୍ଘ ବର୍ଷ ବିତି ଯାଇଥିଲେ ହେଁ ଏହି ଉତ୍କଟ ସମସ୍ୟାକୁ କେହି ଦୂର କରି ପାରିନାହାନ୍ତି । ଗରିବମାନଙ୍କର ଦୈନନ୍ଦିନ ଆନୁଷଙ୍ଗିକ ଖର୍ଚ୍ଚର ଆବଶ୍ୟକତା ଅଛି । ସେଥିପାଇଁ ଏମାନଙ୍କ ପାଇଁ ନିଶ୍ଚିତ କର୍ମନିଯୁକ୍ତି ଓ ପରିବାରର ଆୟ ବୃଦ୍ଧି ଦିଗରେ ସରକାର ସଫଳ ଯୋଜନାମାନ କାର୍ଯ୍ୟକାରୀ କଲେ ହିଁ ଦେଶରୁ ଦାରିଦ୍ର୍ୟ ଦୂର ହେବ ଓ ଜନସାଧାରଣଙ୍କ ଜୀବନଯାତ୍ରା ସରଳ ହେବ । ବେକାରୀ ସମସ୍ୟା ଦୂର ହେବ । ଧନୀ ଓ ସମ୍ଭ୍ରାନ୍ତ ପରିବାରର ଛାତ୍ରଛାତ୍ରୀମାନେ ଅଧିକ ଅର୍ଥ ଦେଇ ଇଂରାଜୀ ମାଧ୍ୟମ ବିଦ୍ୟାଳୟ କଲେଜମାନଙ୍କରେ ଶିକ୍ଷା ଲାଭ କରୁଥିବା ସ୍ଥଳେ ଗରିବ ଜନସାଧାରଣଙ୍କ ପୁତ୍ରକନ୍ୟା ଗାଁ ସ୍କୁଲରେ ଶିକ୍ଷା ଲାଭ କରିବା ଫଳରେ ଏହି ଛାତ୍ରମାନେ ଧନୀକ ଶ୍ରେଣୀର ଛାତ୍ରଛାତ୍ରୀଙ୍କ ସହିତ ପ୍ରତିଯୋଗିତାରେ ସଫଳ ହୋଇ ନପାରି ହତାଶ ହେଉଛନ୍ତି ଓ ଏମାନଙ୍କୁ ଉପଯୁକ୍ତ କର୍ମ ନିଯୁକ୍ତି ମିଳୁ ନାହିଁ। ଭାରତୀୟ ଶିକ୍ଷାର ସ୍ତର ସବୁ ନାଗରିକମାନଙ୍କ ପାଇଁ ଏକା ପ୍ରକାର ହେବାକୁ ସରକାର ଦୃଢ଼ ପଦକ୍ଷେପ ନେବା ଦରକାର। ଛତୁ ଫୁଟିଲା ପରି ଶିକ୍ଷାନୁଷ୍ଠାନମାନ ନଖୋଲି ବରଂ ଉଚ୍ଚ ମାନର ଶିକ୍ଷା ପାଇଁ ସୀମିତ ଓ ଉପଯୁକ୍ତ ଶିକ୍ଷାନୁଷ୍ଠାନମାନ ଖୋଲିବା ଆବଶ୍ୟକ।

କେନ୍ଦ୍ରୀୟ ଅନୁଦାନ ପାଇଁ ରାଜ୍ୟମାନଙ୍କ ପ୍ରତି ପକ୍ଷପାତ, ଦଳ ସଂପ୍ରଦାୟ ନୀତିଠାରୁ ସରକାର ଦୂରରେ ରହି ସବୁ ରାଜ୍ୟକୁ ଜନସଂଖ୍ୟାର ଆବଶ୍ୟକତା ଅନୁଯାୟୀ କେନ୍ଦ୍ରୀୟ ଅନୁଦାନ ରାଶି ସମପରିମାଣରେ ଆବଣ୍ଟିତ ହେଲେ ଦେଶ ଓ ରାଜ୍ୟର କଲ୍ୟାଣ ହେବ। ଆମ ଦେଶର ଯୋଜନା ଓ କାର୍ଯ୍ୟାବଳୀ ବାସ୍ତବଧର୍ମୀ ହେବା ଆବଶ୍ୟକ। ବୈଜ୍ଞାନିକ ଆଧାରରେ କୃଷି, ଶିଳ୍ପ, ଉଦ୍ୟୋଗ, ଶିକ୍ଷା କ୍ଷେତ୍ରରେ ପ୍ରଗତିମୂଳକ ପରିବର୍ତ୍ତନ ପ୍ରତି ସରକାର ଧ୍ୟାନ ଦେବା ଦରକାର ଓ ଜନସାଧାରଣ ସରକାରଙ୍କ ଯୋଜନାମାନଙ୍କର ସଫଳତା ଦିଗରେ ସହଯୋଗ କରିବା ମଧ୍ୟ ଆବଶ୍ୟକ । କୃଷି କ୍ଷେତ୍ରରେ ପାଶ୍ଚାତ୍ୟ ଦେଶମାନଙ୍କ ଭଳି କିପରି ବୈଜ୍ଞାନିକ ପଦ୍ଧତି କାର୍ଯ୍ୟକାରୀ ହେବ ଓ କୃଷକମାନେ ଅଧିକମାତ୍ରାରେ ଫସଲ ଉତ୍ପାଦନ କରି ସେମାନଙ୍କର ଅଭାବ ଅସୁବିଧାକୁ ଦୂର କରି ପାରିବେ, ସେଥିପ୍ରତି ସରକାରଙ୍କ ତରଫରୁ ସମସ୍ତ ପ୍ରକାର ସାହାଯ୍ୟ ମିଳିବା ଆବଶ୍ୟକ । ସମଗ୍ର ଦେଶବାସୀ ନିରୋଗ ଓ ସୁସ୍ଥ ନିରାମୟ ଜୀବନଯାପନ ପାଇଁ ସ୍ୱତଃ ପ୍ରବୃତ୍ତଃ ଭାବେ ସରକାରଙ୍କୁ ସହଯୋଗ କରିବାର ବେଳ ଆସିଲାଣି। ସ୍ୱାସ୍ଥ୍ୟ ବିଭାଗରେ କେବଳ ଅପର୍ଯ୍ୟାପ୍ତ ସରକାରୀ ଅର୍ଥ ଖର୍ଚ୍ଚ ହେଲେ ଜନସାଧାରଣ ଉପକୃତ ହେବେ ନାହିଁ। ଏଥିପାଇଁ ଡାକ୍ତରମାନେ, ସ୍ୱାସ୍ଥ୍ୟ କର୍ମୀମାନେ କେବଳ ଅର୍ଥ ରୋଜଗାରକୁ ପାଥେୟ ନକରି ସର୍ବସାଧାରଣଙ୍କର କଲ୍ୟାଣ ପାଇଁ ନିସ୍ୱାର୍ଥପର ସେବା କରିବା ଆବଶ୍ୟକ। ଭାରତୀୟ ଗଣତନ୍ତ୍ରର ସର୍ବବୃହତ ବ୍ୟାଧି ହେଉଛି ଭ୍ରଷ୍ଟାଚାର। ଲୋକ ଚରିତ୍ରର ପତନ। ଦେଶରୁ ଭ୍ରଷ୍ଟାଚାର ଦୂରହେଲେ ଲୋକେ ସତ୍‌ଚରିତ୍ରବାନ ହେବେ। ଆମର ଭାରତୀୟ ଗଣତନ୍ତ୍ର ସଫଳତାର ଉଚ୍ଚସ୍ତରକୁ ଉନ୍ନୀତ ହେବ। ଆସନ୍ତୁ ଏହି ଶୁଭ ଗଣତନ୍ତ୍ର ଦିବସରେ ପ୍ରତିଜ୍ଞାବଦ୍ଧ ହୋଇ ଦେଶ ଜାତିର କଲ୍ୟାଣ ଓ ପ୍ରଗତି ପାଇଁ ସଂଘବଦ୍ଧ ଭାବେ ନିଃସ୍ୱାର୍ଥପର କର୍ମରେ ବ୍ରତୀ ହେବା। ନିଜେ ଧନ୍ୟ ହେବା ଓ ଦେଶ ମାତୃକାକୁ ଧନ୍ୟ କରିବା ।

ପ୍ଲଟ ନଂ ୪୬୯୩/୫୮୫୪
ଆଦିମାତା କଲୋନୀ
ମଞ୍ଚେଶ୍ୱର ରେଳବାଇ କଲୋନୀ, ଭୁବନେଶ୍ୱର–୧୭

# ଭାରତୀୟ ସ୍ୱାଧୀନତା ସଂଗ୍ରାମରେ ନେତାଜୀଙ୍କ ଭୂମିକା

ନିରୁପମା କର

ସ୍ୱାଧୀନତାର ମୂଲ୍ୟହେବ ରକ୍ତ ( ଆଜାଦୀ କା କିମତ୍ ହୈ ଖୁନ୍) ଦିଲ୍ଲୀର ପଥହେବ ଆମ ପାଇଁ ସ୍ୱର୍ଗର ପଥ 'ଦିଲ୍ଲୀ ଚଲ୍ଲୋ' । ଏମିତି ଅଗ୍ନିବର୍ଷୀ ଆହ୍ୱାନରେ ପ୍ରକମ୍ପିତ ହୋଇ ଉଠିଥିଲା ସେଦିନ ରେଙ୍ଗୁନ୍ ମାଟି। ପ୍ରବଳ ପରାକ୍ରମୀ ଇଂରେଜ ସରକାର ବିରୁଦ୍ଧରେ ଆଜାଦ୍ ହିନ୍ଦ୍ ଫୌଜର ଯୁଦ୍ଧ ଡାକରା। ଏ ଡ଼ାକରା ଦେଇଥିଲେ ଭାରତମାତାର ଯୋଗ୍ୟ ସନ୍ତାନ ବୀର ସୁଭାଷଚନ୍ଦ୍ର ବୋଷ। ଜନ୍ମଭୂମିର ମୁକ୍ତିପାଇଁ ଯିଏ ସବୁକିଛି ଅସାଧ୍ୟ ସାଧନ ପାଇଁ ଜୀବନକୁ ବାଜି ଲଗାଇ ଦେଇଥିଲେ, ସେହି ବୀରପୁରୁଷ ପଚାଶ ହଜାର ଫୌଜ୍‌ଙ୍କୁ ଏକତ୍ର କରି ପ୍ରବଳ ପରାକ୍ରମଶାଳୀ ଆଜାଦ୍ ହିନ୍ଦ୍ ଫୌଜ ଗଠନ କରି ଭାରତର ଉତ୍ତର ପୂର୍ବ ଦିଗରୁ ଦିଲ୍ଲୀ ଅଭିମୁଖେ ଅଭିଯାନ ଆରମ୍ଭ କରିଥିଲେ। ପ୍ରତ୍ୟେକ ଫୌଜଙ୍କ ରକ୍ତରେ ଖେଳିଯାଉଥିଲା ଆଗ୍ନେୟ ଶିହରଣ। ପ୍ରଗଳଭା ସ୍ରୋତସ୍ୱିନୀର ଧାରାତୁଲ୍ୟ ଦେଶପ୍ରେମୀର ଗତିପଥକୁ କିଏବା ପ୍ରତିରୋଧ କରିପାରନ୍ତା। ସେ ପଥ ହୋଇଥାଉ ବନ୍ଧୁର, ଦୁର୍ଗମ, ପଙ୍କିଳ, ଅଥବା କଣ୍ଟକ। ଯେତେ ଦୁଃସାଧ୍ୟ ହେଉପଛେ ସେ ପଥ ତା'ପାଇଁ ସଦା ସ୍ୱର୍ଗୀୟା, ନୈସର୍ଗିକ, ଆନନ୍ଦମୟୀ ଆଭାରେ ଭରପୂର। ଯିଏ ମାତୃଭୂମିର ସେବାକୁ ବ୍ରତ କରି ନେଇଛି, ନିଜ ଜୀବନକୁ ଉତ୍ସର୍ଗ କରି ଦେଇଛି, ତାପାଇଁ ପ୍ରତିବନ୍ଧକ ବା ଆସନ୍ତା କୋଉଠୁ। ମାତୃଭୂମି ପାଇଁ ସେ ରକ୍ତରେ ଲାଗିଥିଲା ନିଆଁ। ମାତୃଭୂମିର ଲୁହଭିଜା ମୁଖମଣ୍ଡଳରେ ସ୍ୱାଧୀନତାର ସ୍ୱାଦ ଭରିଦେଇ, ଚେନାଏ ହସର ଝଲକ ଭରିଦେବା ପାଇଁ ସେ ହୋଇ ଉଠିଥିଲା ତତ୍ପର। ସେଇଥିପାଇଁ ତ ବିଦେଶୀ ମାଟିରେ ଜୟହିନ୍ଦ୍ ଡାକ, ଗଗନ ପବନ ଭେଦି ଧାଇଁ ଆସିଥିଲା ଭାରତ ମାତୃଭୂମିକୁ।



'ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରିୟସି' ମନ୍ତ୍ରକୁ ଜୀବନ ଦୀକ୍ଷା କରି ଭାରତମାତାର ସେଇ ସୁଯୋଗ୍ୟ ସନ୍ତାନ ନେତାଜୀ ସୁଭାଷ ଚନ୍ଦ୍ର ବୋଷ ଥିଲେ ଓଡ଼ିଶା ମାଟିର ବୀର ସନ୍ତାନ। ଯିଏକି ଓଡ଼ିଶା ମା'ର କୋଳରେ ପାଣି ପବନରେ ବିତାଇଥିଲେ ନିଜର ଶୈଶବ, କୈଶୋର ଆଦ୍ୟ ଯୌବନ । ହଜାରେ ବର୍ଷର ସହର କଟକ ମାଟିରେ, ପିତା ଜାନକୀନାଥ ବୋଷ ଓ ମାତା ପ୍ରଭାବତୀ ଦେବୀଙ୍କ କୋଳ ମଣ୍ଡନ କରିଥିଲେ ୧୮୯୭ ମସିହା ଜାନୁଆରୀ ୨୩ ତାରିଖ ଦିନ । ଯାହାଙ୍କ ପାଇଁ ଆଜି ଉତ୍କଳ ମାଟି ଗର୍ବିତ, ପାଣି ପବିତ୍ର, ପବନ ମହକୀତ, ସେଇ ମହାନ୍ ବିପ୍ଲବୀ ଜାତୀୟ ବୀରଙ୍କର ବାଲ୍ୟଶିକ୍ଷାଠାରୁ ମେଟ୍ରିକ ପର୍ଯ୍ୟନ୍ତ ଓଡ଼ିଶାରେ ହୋଇଥିଲା । ୧୯୧୩ରେ ସେ କଲେଜରେ ପଢ଼ିବା ପାଇଁ କଲିକତା ଯାଇଥିଲେ । ସେ ଥିଲେ ଏକାଧାରରେ ଅସାଧାରଣ ମେଧାସମ୍ପନ୍ନ, ତୀକ୍ଷ୍ଣ ବୁଦ୍ଧି ସମ୍ପନ୍ନ, ପ୍ରବଳ ପରାକ୍ରମୀ ବୀର, ଅସୀମ ଶକ୍ତି ଓ ସାହସର ଅଧିକାରୀ । ତାଙ୍କ ତେଜଦୀପ୍ତ ଓଜସ୍ୱିନୀ ଅଭିଭାଷଣର ପ୍ରଭାବରେ ହଜାର ହଜାର ଭାରତୀୟ ଯୁବକ, ଦେଶପ୍ରେମରେ ଉଦ୍‌ବୁଦ୍ଧ ହୋଇ ଭାରତୀୟ ସ୍ୱାଧୀନତା ଆନ୍ଦୋଳନରେ ସାମିଲ ହୋଇଥିଲେ । ତାଙ୍କର ନିଃସ୍ୱାର୍ଥପର ଜନସେବା ସଚ୍ଚା ଦେଶପ୍ରେମ ଆଜି ବି ସମଗ୍ର ବିଶ୍ୱରେ ଉଦାହରଣ ହୋଇ ଦେଶ ମାତୃକାର ସେବା ପାଇଁ ମାର୍ଗ ପ୍ରଦର୍ଶନ କରିଚାଲିଛି ।

ସ୍ୱାଧୀନତା, ନଚେତ୍ ମୃତ୍ୟୁ । ହୁଏତ ତ୍ରିରଙ୍ଗା ପତାକା ଉତ୍ତୋଳନ କରି ଦିଲ୍ଲୀର ଲାଲ୍‌କିଲ୍ଲାକୁ ଅଧିକାର କରିବାକୁ ହେବ । ନଚେତ୍ ସଂଗ୍ରାମରେ ପ୍ରାଣ ବିସର୍ଜନ କରିବାକୁ ପଡ଼ିବ । ଦିଲ୍ଲୀର ପଥ ହିଁ ସ୍ୱାଧୀନତାର ପଥ, ଦିଲ୍ଲୀ ହିଁ ଜାଗ୍ରତର ପଥ । ହୁଏତ ଏଥିପାଇଁ ଚଲୋ ଦିଲ୍ଲୀ ଥିଲା ତାଙ୍କ ମୁଖର ବାଣୀ, ହୃଦୟର ସ୍ପନ୍ଦନ ଓ ମନର ସ୍ତବକ । ନିଜ ଆତ୍ମା ସହିତ ଜଡ଼ାଇ ଦେଇଥିଲେ ଜନ୍ମଭୂମିର ମୁକ୍ତିକୁ, ଯେଉଁଥିପାଇଁ ସେ ସଦା ଜାଗ୍ରତ ପ୍ରହରୀ ସଦୃଶ ବିପ୍ଳବୀମାନଙ୍କ ଦେହରେ ମନରେ ପ୍ରାଣରେ ଭରି ଦେଇଥିଲେ ଅଦମ୍ୟ ସାହସ, ଅସୀମ ଧୈର୍ଯ୍ୟ, ଅମାପଶକ୍ତି ତାଙ୍କର ଓଜସ୍ୱିନୀ ବାକ୍ ବଳରେ । ସେଇ ପ୍ରାଣପ୍ରାଚୁର୍ଯ୍ୟ ଭରା ବାଣୀରେ ଭାରତର ଯୁବଶକ୍ତି କାହିଁକି ଆବାଳବୃଦ୍ଧବନିତା ବି ଓହ୍ଲାଇ ଆସିଥିଲେ ସ୍ୱାଧୀନତାର ମହାସଂଗ୍ରାମକୁ ଯାହାଫଳରେ ପ୍ରବଳ ଶକ୍ତିଶାଳୀ ଗୋରା ସରକାର ଛାତିରେ ଛନକା ପଶିଯାଇଥିଲା ।

ଇଂଲଣ୍ଡର ଇଣ୍ଡିଆନ ସିଭିଲ ସର୍ଭିସ ପରୀକ୍ଷାରେ ସଫଳତାର ସହ ଚତୁର୍ଥ ସ୍ଥାନ ଅଧିକାର କରି ଉତ୍ତୀର୍ଣ୍ଣ ହେବା ପରେ ସେ ଭାରତ ପ୍ରତ୍ୟାବର୍ତ୍ତନ କରି ମହାତ୍ମା ଗାନ୍ଧୀଙ୍କ ଅସହଯୋଗ ଆନ୍ଦୋଳନରେ ନିଜକୁ ସାମିଲ କରିଥିଲେ । ଉଚ୍ଚପଦସ୍ଥ ଚାକିରିର ମୋହ ତାଙ୍କୁ ବାନ୍ଧି ରଖି ପାରି ନ ଥିଲା । କିନ୍ତୁ ସେ ଯେତେବେଳେ ଅନୁଭବ କଲେ ଦୁର୍ଦ୍ଦାନ୍ତ ଇଂରେଜ ବିରୋଧରେ ଅହିଂସା ଆନ୍ଦୋଳନ ଯଥେଷ୍ଟ ନୁହେଁ, ତେଣୁ ଶତ୍ରୁ ସହିତ ଲଢ଼ିବା ପାଇଁ ସେ କଣ୍ଟାକୁ କଣ୍ଟାରେ କାଢ଼ିବା ମାର୍ଗକୁ ଅଧିକ ଉଚିତ ମଣିଲେ । ହୁଏତ ଏଥିପାଇଁ ତାଙ୍କର ଗାନ୍ଧୀଙ୍କ ସହିତ ମନୋମାଳିନ୍ୟ ଘଟିଲା ଏବଂ ସୁଭାଷ ବୋଷ ନିଜ ପଥକୁ ଉଚିତ୍ ମନେକରି ସ୍ୱାଧୀନତା ପାଇଁ ଯୁଦ୍ଧର ନିହାତି ଆବଶ୍ୟକତା ରହିଛି । ସେଥିପାଇଁ ଲୋଡ଼ା ରକ୍ତାକ୍ତ ସଂଗ୍ରାମ, ଯାହା ଥିଲା ଗାନ୍ଧୀଙ୍କ ମତଠାରୁ ବିପରୀତମୁଖୀ ଏବଂ ଉଭୟଙ୍କ ମାର୍ଗ ହୋଇଥିଲା ସମ୍ପୂର୍ଣ୍ଣ ଅଲଗା । ହିଂସା ଓ ଅହିଂସା । ଜଣେ ଶାନ୍ତିର ଦୂତ ସାଜିଲେ ଏବଂ ଆଉ ଜଣେ ରକ୍ତର ହୋଲି ଖେଳିଲେ । କିନ୍ତୁ ଉଭୟଙ୍କର ଦେଶ ପ୍ରେମ ଥିଲା ଅନନ୍ୟ । ଉଭୟଙ୍କ ମନ୍ତ୍ର ଥିଲା ସ୍ୱାଧୀନତା ପାଇଁ ଅବଶ୍ୟମ୍ଭାବୀ । କାରଣ ସୁଭାଷ ବୋଷଙ୍କ ଆକ୍ରମଣରେ ଇଂରେଜ ସରକାରର ମେରୁଦଣ୍ଡ ଦୋହଲି ପଡ଼ିଥିଲା । ମୋ ମତରେ ହୁଏତ ସୁଭାଷଙ୍କ ଅନୁଭବୀ ଠିକ୍ ହିଁ ଥିଲା । ନେତାଜୀଙ୍କ ମତରେ ସ୍ୱାଧୀନତା ମଣିଷର ଜନ୍ମଗତ ଅଧିକାର । ତାହାକୁ କାହାଠାରୁ ଛଡ଼େଇ ନେଇ ହୁଏ କିନ୍ତୁ କାହାଠାରୁ ଦୟାରେ ମାଗିକରି ନେଇ ହୁଏ ନାହିଁ । ତେଣୁ ସେ ଇଂରେଜ ସରକାରଠାରୁ ଭାରତର ସ୍ୱାଧୀନତା ଛଡ଼ାଇ ଆଣିବା ପାଇଁ ବଦ୍ଧପରିକର ହୋଇ ଯୁଦ୍ଧର ଡାକରା ପାଇଁ ନିଜକୁ ପ୍ରସ୍ତୁତ କଲେ । ତେଣୁ ସେ କହିଥିଲେ, 'ତୁମେ ମୋତେ ରକ୍ତ ଦିଅ, ମୁଁ ତୁମକୁ ସ୍ୱାଧୀନତା ଦେବି' । ଯଦିଓ ସେ ସତ୍ୟ ଅହିଂସାର ପୂଜାରୀ ମହାତ୍ମା ଗାନ୍ଧୀଙ୍କୁ ଖୁବ୍ ଭଲ ପାଉଥିଲେ ଏବଂ ସମ୍ମାନ ଦେଉଥିଲେ ତଥାପି ସେ ଅନୁଭବ କଲେ ଯେ ମହାତ୍ମା ଭାରତର ସ୍ୱାଧୀନତାଠାରୁ ଅହିଂସାକୁ ଅଧିକ ଗୁରୁତ୍ୱ ଦିଅନ୍ତି । ଯାହା ତାଙ୍କ ଜୀବନ ଅଭିଧାନରେ ଥିଲା ସବୁଠାରୁ ଗୁରୁତ୍ୱପୂର୍ଣ୍ଣ, ସବୁଠାରୁ ମୂଲ୍ୟବାନ ।

ଯେଉଁ ଜାନୁଆରୀ ମାସରେ ସେ ଜନ୍ମ ହୋଇଥିଲେ, ସେହି ଜାନୁଆରୀ ଅର୍ଥାତ୍ ୧୯୪୪ ମସିହା ଜାନୁଆରୀ ମାସ ଅର୍ଦ୍ଧର ସେ ବିଦେଶ ମାଟି ଅର୍ଥାତ୍ ରେଙ୍ଗୁନ ସହରର କୋଚିନ ସ୍କୁଲଠାରେ ନିଜ ନେତୃତ୍ୱରେ ଗଢ଼ିଥିବା 'ଆଜାଦ୍ ହିନ୍ଦ୍ ଫୌଜ' ଠାରୁ ଅଭିବାଦନ ଗ୍ରହଣ କରିଥିଲେ ଏବଂ ତାଙ୍କ ପାଟିରୁ ସ୍ୱତଃ ବାହାରି ଆସିଥିଲା– ଦିଲ୍ଲୀ ଚଲୋ, ଜୟହିନ୍ଦ୍ ପରି ରଣହୁଙ୍କାର । ଉଠ, ଉଠ ଭାଇମାନେ ଜାଗ୍ରତ ହୁଅ ଏବେ ରକ୍ତକୁ ରକ୍ତ ଡାକୁଛି – ଉଠ ଦିଲ୍ଲୀ ଚଲୋ । ଜୟହିନ୍ଦ୍ ଡାକଦେଇ ଶତ୍ରୁ ଛାତିରେ ସଙ୍ଗିନ ଚଳାଅ । ଆମର ପୂର୍ବ ପୁରୁଷମାନଙ୍କର ବୀରତ୍ୱର ପରାକାଷ୍ଠାକୁ ଦେଖ, ଦେଶ ପାଇଁ ବଳିଦାନକୁ ମନକୁ ଆଣ । ସେମାନଙ୍କ ଡାକ କିଭଳି ରହି ରହି ଗୁଞ୍ଜରଣ ସୃଷ୍ଟି କରୁଛି କର୍ଣ୍ଣ ଗହ୍ୱରରେ । ଅସଂଖ୍ୟ ବୀର ସହିଦ୍‌ମାନଙ୍କର କାତର କଣ୍ଠସ୍ୱର ଆମକୁ ଆହ୍ୱାନ ଦେଉଛି । ଏହା ଥିଲା ଭାରତ ମାତାର ସେହି ସୁଯୋଗ୍ୟ ସନ୍ତାନ, ସ୍ୱଦେଶାଭିମାନୀ, ଅସାଧାରଣ ପ୍ରତିଭାସମ୍ପନ୍ନ ବ୍ୟକ୍ତିତ୍ୱ, ଦୁର୍ଦ୍ଦାନ୍ତ ସୁଃସାଧ କର୍ମବୀର ଏବଂ ବିସ୍ମୟକର, ବିରଳ, ବୀର ଯୋଦ୍ଧା ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କର ଫୌଜିମାନଙ୍କୁ ଆବେଦନ । ଯାହାଦ୍ୱାରା ଦେଶର ସ୍ୱାଧୀନତା ପ୍ରାପ୍ତି ଲାଗି ଗାନ୍ଧିଜୀଙ୍କ ଅହିଂସା ସଂଗ୍ରାମ ସାଙ୍ଗକୁ ନେତାଜୀଙ୍କ ଆଇଏନ୍‌ଏର ସଶସ୍ତ୍ର ଆକ୍ରମଣ, ଭାରତର ସ୍ୱାଧୀନତା ପ୍ରାପ୍ତିକୁ ସଫଳତା ସହିତ ତ୍ୱରାନ୍ୱିତ କରିଥିଲା, ଯାହା ହୁଏତ ରହିଯାଇଛି ଲୋକଲୋଚନ ଆଢୁଆଳରେ ।

ସେଦିନ ଥିଲା ୧୯୪୧ ମସିହା ଜାନୁଆରୀ ୧୬ତାରିଖ ରାତି ୧.୩୦ ମିନିଟ ସମୟରେ ଇଂରେଜ ସରକାରଙ୍କ ଆଖିରେ ଧୂଳି ଦେଇ ଛଦ୍ମବେଶରେ ନେତାଜୀ ଭାରତରୁ ଅନ୍ତର୍ଦ୍ଧାନ ହୋଇଗଲେ । ପରବର୍ତ୍ତୀ ସମୟରେ ଜାନୁଆରୀ ୨୬ ତାରିଖରେ ଯେତେବେଳେ ସୁଭାଷ ବୋଷଙ୍କର ପଳାୟନ ଖବର ପ୍ରଚାରିତ ହେଲା ସମଗ୍ର ବିଶ୍ୱ ସ୍ତମ୍ଭୀଭୂତ ହୋଇଗଲା । ପ୍ରମାଦ ଗଣିଲା ବ୍ରିଟିଶ ସରକାର । ୟା' ପରଠାରୁ ନେତାଜୀଙ୍କର ସେଇ ଦୁଃସାଧ ଯାତ୍ରାର ଆରମ୍ଭ ହୋଇଗଲା ଭାବିଲେ ଆଶ୍ଚର୍ଯ୍ୟ ହେବାକୁ ହୁଏ ।

ସେହି ସମୟରେ ନେତାଜୀଙ୍କ ପରି ବ୍ୟକ୍ତି ହିଁ ବ୍ରିଟିଶ ସରକାର ଆଖିରୁ ନିଜକୁ ହଟାଇ ନେଇ ଦୁଃସାହସିକ ପଦକ୍ଷେପ ନେବା ପାଇଁ ସାହସ କରିପାରିଥିଲେ । ଯିଏକି ବିନା ସ୍ୱାର୍ଥରେ ମାତୃଭୂମିର ସେବା ପାଇଁ ଆନନ୍ଦରେ ଜୀବନବ୍ୟାପୀ ସଂଗ୍ରାମ ଜାରି ରଖିପାରିଥିଲେ । ବହୁ କଷ୍ଟ ସ୍ୱୀକାର କରି ନେତାଜୀ ରାତାରାତି ଦିଲ୍ଲୀରୁ ପେଶଓ୍ୱାର ଯାତ୍ରା କରିବାକୁ ସମର୍ଥ ହୋଇପାରିଥିଲେ । ପେଶଓ୍ୱାରରୁ କାବୁଲ, ଆଫଗାନିସ୍ଥାନ ବାଟଦେଇ ମସ୍କୋରେ ପହଞ୍ଚିଥିଲେ । ମସ୍କୋରୁ ଜର୍ମାନୀର ରାଜଧାନୀ ବର୍ଲିନରେ ପହଞ୍ଚିଲେ ।

ବର୍ଲିନରେ ତାଙ୍କର ନାଜିବାଦର ନେତା ହିଟ୍‌ଲରଙ୍କ ସହିତ ସାକ୍ଷାତ ହେଲା । ନେତାଜୀ ବିଶ୍ୱାସ କରୁଥିଲେ ଯେ, ଶତ୍ରୁର ଶତ୍ରୁ ହିଁ ଆମର ମିତ୍ର । ତେଣୁ ସେ ହିଟ୍‌ଲରଙ୍କ ସହିତ ବନ୍ଧୁତାର ହାତ ବଢ଼ାଇଲେ ଏବଂ ହିଟ୍‌ଲରଙ୍କଠାରୁ ଆବଶ୍ୟକ ସାହାଯ୍ୟ ସହାନୁଭୂତି ଓ ସମ୍ମାନ ଲାଭ କଲେ । ଏହାଦ୍ୱାରା ତାଙ୍କ ଇଚ୍ଛା ଓ ବିଶ୍ୱାସ ଫଳବତୀ ହେଲା । କାରଣ ସେ କଥାରେ ଯେତିକି ବିଶ୍ୱାସ କରୁ ନଥିଲେ କାମରେ ତା'ଠାରୁ ଅଧିକ ବିଶ୍ୱାସ ରଖୁଥିଲେ । ତେଣୁ ସେ ଚାହୁଁଥିବା କଥା ଶତ୍ରୁର ଶତ୍ରୁ ସହ ମିତ୍ରତା ସ୍ଥାପନ ହେବା ଦ୍ୱାରା ଶତ୍ରୁକୁ ଉଚିତ ଶାସ୍ତି ଦେଇହେବ । ଅଥବା ଶତ୍ରୁଠାରୁ ନିଜର ନ୍ୟାଯ୍ୟ ଅଧିକାର ଫେରାଇ ଆଣିବା ସହଜ ହେବ ।

କାରଣ ୧୯୩୯ରେ ଆରମ୍ଭ ହୋଇଥିବା ଦ୍ୱିତୀୟ ବିଶ୍ୱଯୁଦ୍ଧରେ ମିତ୍ରଶକ୍ତି ପକ୍ଷରେ ଥିଲେ ଆମେରିକା, ଇଂଲଣ୍ଡ, ଫ୍ରାନ୍ସ ଓ ରୁଷିଆ ଏବଂ ଅକ୍ଷୟଶକ୍ତି ଥିଲେ ଜର୍ମାନୀ, ଇଟାଲୀ ଓ ଜାପାନ । ତେଣୁ ବ୍ରିଟେନ ବିଶ୍ୱଯୁଦ୍ଧରେ ଲିପ୍ତ ଥିବା ବେଳେ ନେତାଜୀ ଏପଟୁ ଅର୍ଥାତ୍ ଭାରତରୁ ଯୁଦ୍ଧ ଆନ୍ଦୋଳନ କରି ବ୍ରିଟେନକୁ ଅସୁବିଧାରେ ପକାଇ ଭାରତର ଫାଇଦା ହାସଲ ହେବ ମନେକରି, ଜର୍ମାନୀ ସହ ବନ୍ଧୁତ୍ୱ ସ୍ଥାପନ କରିଥିଲେ ।

ନେତାଜୀଙ୍କ ଜୀବନର ପୁଣି ଏକ ମୋଡ଼ ଥିଲା ୧୯୪୨ରେ ଭାରତୀୟ ବିପ୍ଳବୀ ରାସବିହାରୀ ବୋଷଙ୍କଠାରୁ ଜାପାନ ଯିବା ପାଇଁ ଡକରା । ଜର୍ମାନରୁ ଜାପାନ ଯାତ୍ରା ସବୁଠି କିନ୍ତୁ ସେଇ ଦୁଃସାହସର ପଦଚିହ୍ନ । ୧୯୪୩ରେ ସେ ବୁଡ଼ାଜାହାଜରେ ବସି ପୂର୍ବ ଏସିଆରେ ଆସି ପହଞ୍ଚିଲେ । ସେଠାରେ ଟୋକିଓରେ କିଛିଦିନ ଅବସ୍ଥାନ ପରେ ୧୯୪୩ ଜୁନ ୨ରେ ସିଙ୍ଗାପୁରରେ ପହଞ୍ଚି ରାସବିହାରୀ ବୋଷଙ୍କ ଦ୍ୱାରା ପ୍ରତିଷ୍ଠିତ ଭାରତୀୟ ସ୍ୱାଧୀନତା ସଂଘର ଦାୟିତ୍ୱ ଗ୍ରହଣ କଲେ ଏବଂ ତାର ନାମ ମଧ୍ୟ ଆଜାଦ୍ ହିନ୍ଦ୍ ଫୌଜ ରଖିଲେ । ପ୍ରତି ମୁହୂର୍ତ୍ତରେ ନେତାଜୀଙ୍କର ଜୀବନ ଥିଲା ସଂଘର୍ଷମୟ । ମହୁମାଛି ପରି କଷ୍ଟସହିଷ୍ଣୁ ଜୀବନରେ କେବଳ ଫୁଟି ଉଠୁଥିଲା ଦେଶପ୍ରେମର ବାସ୍ନା ପାଇଁ ପାଗଳପ୍ରାଣ ।

୧୯୪୩ ମସିହା ଅକ୍ଟୋବର ୨୧ ତାରିଖଟି ଥିଲା ନେତାଜୀଙ୍କ ପାଇଁ ଅବିସ୍ମରଣୀୟ ଏବଂ ଭାରତ ଇତିହାସ ପାଇଁ ଅତି ଶୁଭପ୍ରଦ ଏବଂ ଚିରସ୍ମରଣୀୟ ଦିବସ । ସେହିଦିନ ସିଙ୍ଗାପୁରର ମ୍ୟୁନିସିପାଲ ମଇଦାନରେ, ବହୁ ବିଦେଶୀ ରାଷ୍ଟ୍ରର ପ୍ରତିନିଧି ତଥା ଲକ୍ଷାଧିକ ଜନସମାବେଶରେ ନେତାଜୀ ଆଜାଦ ହିନ୍ଦ ସରକାର ପ୍ରତିଷ୍ଠା ଘୋଷଣା କରି ଉଦ୍‌ବୋଧନ ଦେଇଥିଲେ – 'ବନ୍ଧୁଗଣ, ଭାରତର ସ୍ୱାଧୀନତା ଯୁଦ୍ଧ ପାଇଁ ଆଜି ଏକ ଅସ୍ଥାୟୀ ସ୍ୱାଧୀନ ଭାରତ ସରକାର ପ୍ରତିଷ୍ଠାର ସିଦ୍ଧାନ୍ତ ମୁଁ ଆପଣମାନଙ୍କ ସମ୍ମୁଖରେ ଘୋଷଣା କରୁଛି' । ନେତାଜୀଙ୍କର ଏହି ସରକାରକୁ ଜାପାନ, ଜର୍ମାନୀ, ଇଟାଲୀ, ପର୍ସିଆ, ସ୍ପେନ, ଆୟାର୍ଲାଣ୍ଡ, ଫିଲିପାଇନ୍‌ସ, କୋରିଆ, ଇଣ୍ଡୋନେସିଆ, ଇଣ୍ଡୋଚୀନ, ମାଳୟଶ୍ୟାମ, ବ୍ରହ୍ମଦେଶ, ନାନକିଙ୍ଗ ଓ ମାଞ୍ଚୁକୋ ଆଦି ଏସିଆ ଓ ୟୁରୋପ ମହାଦେଶର ୧୪ଟି ରାଷ୍ଟ୍ର ସରକାରୀ ଭାବେ ମାନ୍ୟତା ଦେଇ ସ୍ୱୀକାର କରିଥିଲେ ଏବଂ ଆଣ୍ଡାମାନ ଦ୍ୱୀପପୁଞ୍ଜ ଯାହାକୁ ଇଂଲଣ୍ଡଠାରୁ ଜାପାନ ଅଧିକାର କରିଥିଲା ତାକୁ ସୁଭାଷ ବୋଷଙ୍କୁ ହସ୍ତାନ୍ତର କରିଦେଲା ।

ଆଜାଦ ହିନ୍ଦ ସରକାର ଗଠନ କରିବାର ମାତ୍ର କିଛି ଘଣ୍ଟାର ବ୍ୟବଧାନ ପରେ ସେହି ଦିନ ରାତିରେ ନେତାଜୀ ଇଂଲଣ୍ଡ ବିରୁଦ୍ଧରେ ବିଧିବଦ୍ଧ ଭାବେ ଯୁଦ୍ଧ ଘୋଷଣା କରି ଯୁଦ୍ଧ ଆରମ୍ଭ କରିଦେଲେ । ଆଜାଦ୍ ହିନ୍ଦ ଫୌଜର ପ୍ରବଳ ଆକ୍ରମଣକୁ ପ୍ରବଳ ଶକ୍ତିଶାଳୀ ବ୍ରିଟିଶ ବାହିନୀ ପ୍ରତିହତ କରିପାରି ନଥିଲା । ଫଳରେ ଆଜାଦ ହିନ୍ଦ ଫୌଜ ସଗୌରବେ ମାଡ଼ିଚାଲିଲା ବୀରଦର୍ପରେ । ପୂର୍ବ ପଟେ ଭାରତରେ ବିଦ୍ରୋହ ସାଙ୍ଗକୁ ପଶ୍ଚିମପଟେ ଇଂଲଣ୍ଡ ଉପରେ ଜର୍ମାନୀର ନିର୍ମମ ବୋମାମାଡ଼ ଏବଂ ବ୍ରହ୍ମଦେଶ ପଟୁ ଆଜାଦ ହିନ୍ଦ ଫୌଜର ସଶସ୍ତ୍ର ଆକ୍ରମଣ । ଇଂରେଜ ସରକାରର ମେରୁଦଣ୍ଡକୁ ସମ୍ପୂର୍ଣ୍ଣ ରୂପେ ଦୋହଲାଇ ଦେଲା । ନେତାଜୀଙ୍କ ଏହି ଦୁଃସାହସିକ ପଦକ୍ଷେପ ଫଳରେ ତାଙ୍କର ଏବଂ ଆଜାଦ ହିନ୍ଦ ଫୌଜର ବୀରତ୍ୱ କାହାଣୀ, ଭାରତୀୟ ବିଦ୍ରୋହୀ ଏବଂ ଭାରତର ପ୍ରତ୍ୟେକ ଦେଶବାସୀଙ୍କ ହୃଦୟରେ ନୂତନ ଉନ୍ମାଦନା ଓ ଭାରତୀୟ ସ୍ୱାଧୀନତା ସଂଗ୍ରାମ ପାଇଁ ପ୍ରେରଣା ଭରିଦେଲା । ଏହି ଯୁଦ୍ଧ କେବଳ ଯେ ଭାରତୀୟଙ୍କୁ ଉତ୍ସାହ ଉଦ୍ଦୀପନା ଯୋଗାଇ ଦେଲା ତାହା ନୁହେଁ । ଏହାଦ୍ୱାରା ଇଂରେଜ ସରକାରର ମନୋବଳ ସମ୍ପୂର୍ଣ୍ଣ ଭାବରେ ଧସିପଡ଼ିଲା । ଦେଶ ଭିତରେ ମହାତ୍ମା ଗାନ୍ଧୀଙ୍କ





ନେତୃତ୍ୱରେ ଅସହଯୋଗ ଆନ୍ଦୋଳନ ସାଙ୍ଗକୁ ଦେଶ ବାହାରେ ସୁଭାଷ ବୋଷଙ୍କ ନେତୃତ୍ୱରେ ଆଜାଦ ହିନ୍ଦ ଫୌଜର ସଶସ୍ତ୍ର ଆକ୍ରମଣ, ପ୍ରଥମ ଥର ପାଇଁ ଭୀତି ସଞ୍ଚାର କଲା ଇଂରେଜ ସରକାର ମନରେ । ସେ ହୃଦୟଙ୍ଗମ କଲା, ଭାରତରେ ସରକାର ତିଷ୍ଠିବା ଆଉ ମାତ୍ର ଅଳ୍ପ ଦିନ ପାଇଁ । ଏହିଠାରୁ ହିଁ ସେ ଦେଖିପାରିଲା ତା'ର ପତନର ତୈଳଚିତ୍ର ।

ପ୍ରଚଣ୍ଡ ମନୋବଳ ନେଇ ବ୍ରିଟିଶ ବାହିନୀକୁ ପଛକୁ ହଟାଇ ବୀରଦର୍ପରେ ମାଡ଼ି ଚାଲିଥିଲା ଆଜାଦ ହିନ୍ଦ ଫୌଜ । ଏହି ବିଜୟ ଯାତ୍ରା ମଣିପୁରର ଇମ୍ଫାଲ୍ ପର୍ଯ୍ୟନ୍ତ ପହଞ୍ଚି ସାରିଥିଲା । କିନ୍ତୁ ଠିକ୍ ଏହି ସମୟରେ ଫୌଜିମାନଙ୍କ ହାତରୁ ସରିଆସିଲା ଯୁଦ୍ଧାସ୍ତ୍ର । ସେପଟେ ଜାପାନର ହୀରୋସୀମା, ନାଗାସାକି ଉପରେ ଆମେରିକା ଭୟଙ୍କର ପରମାଣୁ ବୋମା ନିକ୍ଷେପ କରି ନାହିଁ ନଥିବା କ୍ଷତି ସାଧନ କଲା । ଏହାଦ୍ୱାରା ଜାପାନର ମେରୁଦଣ୍ଡ ଭାଙ୍ଗିଗଲା କହିଲେ ଚଳେ ।

ତେଣୁ ଜାପାନ ୧୯୪୫ ମସିହା ଅଗଷ୍ଟ ୧୫ ତାରିଖ ଦିନ ଆମେରିକା ନିକଟରେ ଆତ୍ମସମର୍ପଣ କଲା । ଏହି ଖବର ଜାପାନ୍ ରେଡ଼ିଓରୁ ପ୍ରଚାରିତ ହେବା ପରେ ପରେ, ଆଜାଦ୍ ହିନ୍ଦ୍ ଫୌଜ ଓ ଜାପାନ୍‌ର ସମସ୍ତ ସୈନ୍ୟ ବ୍ରିଟିଶ ସରକାର ଦ୍ୱାରା ଗୃହବନ୍ଦୀ ହେଲେ । କିନ୍ତୁ ନେତାଜୀଙ୍କ ପରି ବିରଳ ଯୋଦ୍ଧା ତୀକ୍ଷ୍ଣବୁଦ୍ଧି ସମ୍ପନ୍ନ ମଣିଷଟି ପାଇଁ ମିତ୍ରଶକ୍ତି ନିକଟରେ ଆତ୍ମସମର୍ପଣ ଆଦୌ ଉଚିତ ନୁହେଁ । ତେଣୁ ସେ ଛଅ ମାସପାଇଁ ଆତ୍ମଗୋପନ କରିବାକୁ ସିଦ୍ଧାନ୍ତ ନେବାକୁ ବାଧ୍ୟ ହେଲେ । କାରଣ ଏହାହିଁ ଥିଲା ନିଜ ଜାତୀୟ ବାହିନୀର ମନ୍ତ୍ରିମଣ୍ଡଳର ନିଷ୍ପତ୍ତି । ତେଣୁ ଯେତେ ଶୀଘ୍ର ସିଙ୍ଗାପୁର ଛାଡ଼ି ଦେବେ ନେତାଜୀଙ୍କ ପାଇଁ ତାହା ମଙ୍ଗଳ । କିନ୍ତ ନେତାଜୀ ପରବର୍ତ୍ତୀ କାର୍ଯ୍ୟସୂଚୀ କିପରି ଭାବରେ ନିର୍ଦ୍ଧାରିତ ହୋଇଥିଲା ତାହା, ସ୍ୱୟଂ ନେତାଜୀଙ୍କ ଛଡ଼ା କାହାକୁ ଜଣା ନଥିଲା । କିନ୍ତୁ ଏଥିରେ ତାଙ୍କୁ ସହାୟତା କରିଥିଲେ ଜାପାନ୍ ସରକାରଙ୍କର କେତେଜଣ ଉଚ୍ଚପଦସ୍ଥ ଗୁଇନ୍ଦା ଅଫିସର ।

୧୯୪୫ ମସିହା ଅଗଷ୍ଟ ୧୬ତାରିଖରେ ଆଇ.ଏନ୍.ଏର ଏକ ସ୍ୱତନ୍ତ୍ର ବିମାନ ଯୋଗେ ନେତାଜୀ ଏବଂ ତାଙ୍କର ବିଶ୍ୱସ୍ତ ସହକର୍ମୀ, ହବିବୁଲ୍ ଲହମାନ, ପ୍ରିତମ ସିଂ, ଏସ୍.ଏ ଆୟାର ଏବଂ ଶ୍ରୀ ନେଗେସୀ, କୌଣସି ଏକ ଅଜଣା ମନ୍ତବ୍ୟସ୍ଥଳ ସିଙ୍ଗାପୁରଠାରୁ ସେମାନଙ୍କର ଯାତ୍ରା ଆରମ୍ଭ କରିଥିଲେ । ସେଠାରୁ ସେମାନେ ବ୍ୟାଙ୍କକ୍‌ରେ ଦିନ ୩.୩୦ରେ ପହଞ୍ଚି ଥିଲେ । ଅଗଷ୍ଟ ୧୭ତାରିଖରେ ଆଉ ଏକ ବୋମାବର୍ଷି ବିମାନରେ ବ୍ୟାଙ୍କକ୍ ଘାଟି ଛାଡ଼ିଲେ । ସେହି ଯାତ୍ରା ହିଁ ଥିଲା ନେତାଜୀଙ୍କ ଜୀବନର ରହସ୍ୟମୟ ଯାତ୍ରା । ଯାହାର ପରିଣତି ଶେଷ ଯାତ୍ରାରେ ପରିଣତ ହେଲା । ବିଶ୍ୱ ଦରବାରରେ ଏବଂ ଭାରତମାତାର ସେହି ସୁଯୋଗ୍ୟ ସନ୍ତାନ ପ୍ରଚଣ୍ଡ ସ୍ୱଦେଶୀଭିମାନୀ, ଅସାଧାରଣ ପ୍ରତିଭା ସମ୍ପନ୍ନ, ଦୁର୍ଦ୍ଧାନ୍ତ, ଦୁର୍ଦ୍ଧର୍ଷ, ଦୁଃସାଧ୍ୟ କର୍ମବୀର ଏବଂ ବିରଳ ବିସ୍ମୟକର ବୀର ଯୋଦ୍ଧା, ବିଶ୍ୱସ୍ତରୀୟ ନେତା, ନେତାଜୀ ସୁଭାଷ ଚନ୍ଦ୍ର ବୋଷ ସବୁଦିନ ପାଇଁ ହଜିଗଲେ ବିଶ୍ୱ ଇତିହାସରୁ, ଭାରତୀୟ ସ୍ୱାଧୀନତା ସଂଗ୍ରାମରୁ ରହସ୍ୟମୟ ଭାବରେ ଏକ ବିମାନ ଦୁର୍ଘଟଣାର ଶୀକାର ହୋଇ ୧୯୪୫ ଅଗଷ୍ଟ ୧୮ ତାରିଖରେ ବିମାନ ଦୁର୍ଘଟଣା ହୋଇଥିଲେ ବି ନେତାଜୀଙ୍କ ମୃତ୍ୟୁ ଖବର ପ୍ରଥମେ ଜାପାନ ରେଡ଼ିଓ ଅଗଷ୍ଟ ୨୩ରେ ଏହି ସମ୍ବାଦ ପ୍ରଚାର କରିଥିଲା । ସମଗ୍ର ବିଶ୍ୱ ସ୍ତମ୍ଭୀଭୂତ ହୋଇଯାଇଥିଲା । ଆଜିବି ରହିଯାଇଛି ଅବିଶ୍ୱାସର ପରଦା ଆଢ଼ୁଆଳରେ କିନ୍ତୁ ଭାରତୀୟ ସ୍ୱାଧୀନତା ସଂଗ୍ରାମ ପାଇଁ ନେତାଜୀଙ୍କ ଅବିସ୍ମରଣୀୟ ଅବଦାନ, ଯାହା ଆଜିବି ପ୍ରତ୍ୟେକ ଭାରତୀୟଙ୍କ ଦେହରେ, ମନରେ, ପ୍ରାଣରେ ଜାଳିଦିଏ ସଚ୍ଚା ଦେଶପ୍ରେମର ବହ୍ନି, ସେହି ମହାନ୍ ମହାପୁରୁଷଙ୍କୁ ଭକ୍ତିପୂତ ପ୍ରଣତି ଜଣାଇବା ହିଁ ଏକାନ୍ତ କାମ୍ୟ ।

କ୍ୱାର୍ଟର୍ସ ନଂ– ୨ଆର–୬
ୟୁନିଟ୍–୮, ଭୁବନେଶ୍ୱର







# ଖୋରଧା ମାଟିର ବୀର ବକ୍ସି ଜଗବନ୍ଧୁ

ବିମଳା ସିଂହ

ଉତ୍କର୍ଷ କଳାର ରାଜ୍ୟ ଉତ୍କଳ ଆମର ଜନ୍ମ ମାଟି । ଏ ମାଟିର ଇତିହାସ ଅତି ମହାନ୍ । ଏ ମାଟି ଏକ ଉଚ୍ଚ ପରମ୍ପରା, ସଂସ୍କୃତିକୁ ବହନ କରି ଆସିଛି ଅତି ପ୍ରାଚୀନ କାଳରୁ । ଏହାର କଳାକୃତି ଏକ ସ୍ୱତନ୍ତ୍ର ସ୍ଥାନ ଜାହିର୍ କରିଛି ବିଶ୍ୱ ଦରବାରରେ । ଏ ମାଟିର ଆରାଧ୍ୟ ଦେବତା ପ୍ରଭୁ ଶ୍ରୀଜଗନ୍ନାଥ । ଏ ମାଟି ଜନ୍ମ ଦେଇଛି ଅନେକ ସାଧୁ, ସନ୍ଥ, ତ୍ୟାଗୀ, ବୀର, ଦେଶପ୍ରେମୀ, ସଂସ୍କାରକ, ସଂସ୍କୃତି ରକ୍ଷକଙ୍କୁ । ଏମାନଙ୍କ ପ୍ରଗାଢ଼ ନିଃସ୍ୱାର୍ଥପର ସେବା, ଚେଷ୍ଟା ପାଇଁ ଓଡ଼ିଶା ବହୁ ଦିଗରୁ ପ୍ରଶଂସିତ ।

ଦିନ ଥିଲା ଏକ ଗୌରବମୟ ଇତିହାସକୁ ଜାବୁଡ଼ି ଧରି ଏ ମାଟିର ବୀରଗଣ କାହାରି ପାଖରେ ମଥାନତ କରି ନାହାଁନ୍ତି । ବୀର ରଣାଙ୍ଗନରେ ରଣ କରି ମରେ ସିନା ପଛଘୁଞ୍ଚା ତା'ର ଜାତକରେ ନାହିଁ । ଏହି ନୀତିରେ ଦୃଢ଼ ରହି ଏ ମାଟିକୁ ଶତ୍ରୁ ପାଖରୁ ରକ୍ଷା କରିବା ପାଇଁ ପାହାଡ଼, ଜଙ୍ଗଲ ଭିତରେ ଲୁଚି ରହି ଗଛର ପତ୍ର ଖାଇ ମଧ୍ୟ ଜୀବନ ବିତାଇଛନ୍ତି ମାତୃ ଭୂମିର ସ୍ୱାଧୀନତା ରକ୍ଷା ପାଇଁ । ଏହିପରି ଅନେକ ବୀର ସ୍ୱତଃ ପ୍ରାତଃ ସ୍ମରଣୀୟ । ବୀର ପ୍ରସବିନୀ ଏଇ ଆମ ଉତ୍କଳ ଭୂଇଁରେ ଖୋରଧାଗଡ଼ ନାମ ଉଚ୍ଚାରଣ କଲେ ସେ ମାଟିର ବୀର ଗାଥା ମନରେ ପୁଲକ ସୃଷ୍ଟି କରେ । କାରଣ ଏହା ଏପରି ଏକ ମାଟି ଯେଉଁ ମାଟିକୁ ଚିପୁଡ଼ି ଦେଲେ ଲାଲ୍ ରକ୍ତ ଝରିଆସେ । ଏକ ବୀର ଭୂଇଁ ଦିନେ ବିଦେଶୀ ଶାସକର ତନ୍ତ୍ରୀ ଥରାଇ ଦେଇଥିଲା । ଖୋରଧାର ରାଜା ଥିଲେ ଠାକୁର ରାଜା । ଠାକୁର ରାଜାଙ୍କ ସହ ମିଶି ଅନେକ ବୀର ଏଇ ଭୂଇଁରୁ ଇଂରେଜମାନଙ୍କ ବିରୁଦ୍ଧରେ ଯେଉଁ ସଂଗ୍ରାମ କରିଥିଲେ, ସେଇ ରଣହୁଙ୍କାର ଏବେ ବି ପ୍ରତିଧ୍ୱନିତ ହୁଏ ସେମାନଙ୍କ ବୀରତ୍ୱର କଥା କହି । ତାପଙ୍ଗର ଦଳବେହେରାଙ୍କ ଠାରୁ ଆରମ୍ଭ କରି କୃତ୍ତିବାସ ପାଟ୍ଟଶାଣୀ, ଜୟୀ ରାଜଗୁରୁ, ବକ୍ସି ଜଗବନ୍ଧୁଙ୍କ ପର୍ଯ୍ୟନ୍ତ ସମସ୍ତେ ଏଇ ଲାଲ୍ ମାଟିର ସନ୍ତାନ ରୂପେ ନିଜର ତ୍ୟାଗ, ନିଷ୍ଠା ଆଉ ଜୀବନର ବଳିଦାନ ପାଇଁ ଆଜି ଘରେ ଘରେ ପୂଜିତ । ସେମାନଙ୍କ ବୀରତ୍ୱର ପରାକାଷ୍ଠା ପ୍ରଦର୍ଶନ କରିବାକୁ ଯାଇ ଅନେକ ଐତିହାସିକ ସେମାନଙ୍କର ଲେଖନୀ ମୁନରେ ଏହି ବୀରମାନଙ୍କ ଜୀବନ କାହାଣୀ ଲେଖିଯାଇଛନ୍ତି, ଯାହା ଆମମାନଙ୍କ ପାଇଁ ପ୍ରେରଣାର ଉତ୍ସ ହୋଇ ରହିଛି ।

ଖୋର୍ଦ୍ଧାର ପାଇକ ବୀର ବକ୍ସି ଜଗବନ୍ଧୁଙ୍କ ଜନ୍ମ କାହାଣୀ ଏବେ ବି ଅସ୍ପଷ୍ଟ ଥିଲେ ମଧ୍ୟ ସମ୍ଭବତଃ ୧୭୮୦ରେ ତାଙ୍କର ଜନ୍ମ ଏବଂ ତିରୋଧାନ ୧୮୨୯, ମସିହା ଜାନୁୟାରୀ ୨୪ ତାରିଖରେ ହୋଇଥିଲା । ତାଙ୍କର ପ୍ରକୃତ ନାମ ଥିଲା ବକ୍ସି ବିଦ୍ୟାଧର ମହାପାତ୍ର । ୧୮୦୩ରେ ଇଂରେଜମାନେ ଓଡ଼ିଶା ଅଧିକାର କରିନେବା ପରେ ୧୮୦୪ରେ ଖୋର୍ଦ୍ଧାର ରାଜା ମୁକୁନ୍ଦଦେବଙ୍କୁ ଗାଦିଚ୍ୟୁତ କରି ତାଙ୍କ ରାଜ୍ୟକୁ ପ୍ରତ୍ୟକ୍ଷ ଶାସନାଧୀନ କଲେ । ତାହାପରେ ଆରମ୍ଭ ହୋଇଥିଲା ପ୍ରଜାମାନଙ୍କ ଉପରେ ଇଂରେଜମାନଙ୍କ ଅତ୍ୟାଚାର । ଏହି ଅତ୍ୟାଚାର ସ୍ୱରୂପ ଇଂରେଜମାନେ ପାଇକମାନଙ୍କ ନିଷ୍କର ଜମି ଉପରେ ଉଚ୍ଚ ହାରରେ କରଧାର୍ଯ୍ୟ, ସେହି ଅଞ୍ଚଳର ଜମିଦାରୀ ସ୍ୱଦେଶୀମାନଙ୍କ ହାତରୁ ଛଡ଼ାଇ ନେଇ ବିଦେଶୀଙ୍କ ହାତରେ ରାଜସ୍ୱ ଆଦାୟ ଦାୟିତ୍ୱ ଦେବା ନୀତି ଘୋଷଣା କରିବା । ଏହି ଅନ୍ୟାୟ ନୀତି ଘୋଷଣା ଦ୍ୱାରା ଅନେକ ସାଧାରଣ ଜନତା ନିଜର ଭିଟାମାଟି ଛାଡ଼ି ଚାଲି ଯାଇଥିଲେ ଏବଂ ସେମାନଙ୍କ ଭିତରୁ କେତେଜଣ କରଦ ରାଜାଙ୍କ ନିକଟରେ ଆଶ୍ରୟ ନେଇଥିଲେ । ଇଂରେଜମାନଙ୍କ ଦ୍ୱାରା ପ୍ରପୀଡ଼ିତ ଏଇ ପ୍ରଜାମାନେ ଖୋଜୁଥିଲେ ଏକ ନେତୃତ୍ୱ, ହୃଦୟରେ କୁହୁଳୁଥିବା ନିଆଁକୁ ସାକାର କରିବା ପାଇଁ ଅର୍ଥାତ ଇଂରେଜମାନଙ୍କୁ ଏ ମାଟିରୁ ତଡ଼ିବା । ୧୮୧୭ ମସିହା ମାର୍ଚ୍ଚ ମାସରେ ସେଇ ସୁଯୋଗ ଆସିଥିଲା ଏବଂ ତାହା ବିଦ୍ରୋହରେ ପରିଣତ ହୋଇଥିଲା ଖୋର୍ଦ୍ଧାର ଏଇ ବୀର ବକ୍ସି ଜଗବନ୍ଧୁଙ୍କ ନେତୃତ୍ୱରେ । ଇଂରେଜମାନଙ୍କ ଏଇ ଅନ୍ୟାୟ ନୀତି ଓ ନିର୍ଯ୍ୟାତନା ବିରୁଦ୍ଧରେ ତାଙ୍କର ଏଇ ପ୍ରିୟ ନେତାଙ୍କ ନେତୃତ୍ୱରେ ବିରୋଧୀ ହୋଇ ଉଠିଲେ ନିର୍ଯ୍ୟାତିତମାନେ । ସେଇ ସମୟରେ ବକ୍ସି ଜଗବନ୍ଧୁ ଥିଲେ ଖୋର୍ଦ୍ଧା ରାଜାଙ୍କ ସେନାପତି ଏବଂ ରାଜାଙ୍କ ପରେ ଦ୍ୱିତୀୟ ସ୍ଥାନ ଥିଲା

ତାଙ୍କର । ଶେରଗଡ଼ ଓ ବଡ଼ମ୍ବା ରାଜାଙ୍କ ସହିତ ତାଙ୍କ ପରିବାରର ବୈବାହିକ ସଂପର୍କ ଥିଲା । ଇତିହାସ ପୃଷ୍ଠାରୁ ଜଣାଯାଏ ଯେ ସେ ଭୋଇ ବଂଶର ପ୍ରଥମ ରାଜା ଗୋବିନ୍ଦ ବିଦ୍ୟାଧରଙ୍କ ମନ୍ତ୍ରୀ ଦନେଇ ବିଦ୍ୟାଧରଙ୍କ ଅଷ୍ଟମ ବଂଶଧର ଥିଲେ ବୋଲି । ଶ୍ରୀ ସୁଧାକର ପଟ୍ଟନାୟକଙ୍କ ଦ୍ୱାରା ପ୍ରାପ୍ତ ଏକ ତାଳପତ୍ର ପୋଥିରୁ ଏ ବିଷୟରେ ସୂଚନା ମିଳିଥିଲା ।

ଇଂରେଜ ସାହେବ ଷ୍ଟାର୍ଲିଂଙ୍କ ରଚିତ ଓଡ଼ିଶା ଇତିହାସରେ ମଧ୍ୟ ଏକ କିମ୍ବଦନ୍ତୀକୁ ଭିତ୍ତି କରି ଲେଖିଥିବାର ଜଣାଯାଏ ଯେ ୧୮୧୭ ମସିହାରେ ହୋଇଥିବା ପାଇକ ବିଦ୍ରୋହରେ ବକ୍ସି ଜଗବନ୍ଧୁ ହିଁ ପାଇକମାନଙ୍କୁ ଏକଜୁଟ୍ କରାଇଥିଲେ । ତାଙ୍କର ସୁସ୍ଥ, ସବଳ, ସୁନ୍ଦର ଏବଂ ବଳିଷ୍ଠ ଚେହେରା ଅନ୍ୟମାନଙ୍କୁ ଆକର୍ଷିତ କରୁଥିଲା । ଇଂରେଜମାନଙ୍କ ବିରୁଦ୍ଧରେ ହୋଇଥିବା ପ୍ରଥମ ଗଣବିଦ୍ରୋହ ବା ପାଇକ ବିଦ୍ରୋହର ବକ୍ସି ଜଗବନ୍ଧୁ ହିଁ ଥିଲେ କର୍ଣ୍ଣଧାର । ୧୮୧୭ ମସିହାରେ ଘୁମୁସରର ରାଜା ଧନଞ୍ଜୟ ଭଞ୍ଜଙ୍କୁ ଏକ ମିଥ୍ୟା ହତ୍ୟା ମାମଲାରେ ଇଂରେଜମାନେ ବନ୍ଦୀ କରିବାରୁ ଏହାର ପ୍ରତିବାଦରେ ୩୦୦/୪୦୦ କନ୍ଧ ବାଣପୁରରେ ଥିବା ଇଂରେଜମାନଙ୍କ ଖଜଣାଖାନା ଲୁଟ୍ କରିବା ସହ ସରକାରୀ ଦପ୍ତର ସବୁ ଆକ୍ରମଣ କରି ଅନେକ କ୍ଷତି ପହଞ୍ଚାଇ ଥିଲେ । ଖୋର୍ଦ୍ଧାର ପାଇକମାନେ ଏଭଳି ଏକ ସୁଯୋଗକୁ ହାତଛଡ଼ା ନ କରି ବକ୍ସି ଜଗବନ୍ଧୁଙ୍କ ନେତୃତ୍ୱରେ ବିଦ୍ରୋହ ଆରମ୍ଭ କରିଦେଲେ । ଇଂରେଜମାନଙ୍କ ସହ ସଲାସୁତରା କରି ଉତ୍କଳ ମାତାର କ୍ଷତି ପହଞ୍ଚାଉଥିବା ଚରଣଚୁଟିଆ ହିଁ ହୋଇଥିଲା ବକ୍ସି ଜଗବନ୍ଧୁଙ୍କର ପ୍ରଥମ ଶିକାର । ସେମାନେ ଖୋର୍ଦ୍ଧାରେ ଥିବା ଇଂରେଜ ସରକାରୀ ଅଫିସମାନଙ୍କରେ ପଶି ଭଙ୍ଗାରୁଜା ସହ ଖଜଣାଖାନା ଲୁଟ୍ ମଧ୍ୟ କଲେ । ଇଂରେଜମାନଙ୍କ ସହ ଏଇ ଦୁର୍ଦ୍ଧର୍ଷ ପାଇକମାନଙ୍କର ଖୋର୍ଦ୍ଧା ନିକଟବର୍ତ୍ତୀ ଗଙ୍ଗପଡ଼ା, ବାଳକାଟି, ପିପିଲି ଆଦି ସ୍ଥାନରେ ସଂଘର୍ଷ ସଂଗଠିତ ହୋଇଥିଲା । କିନ୍ତୁ ପୁରୀରେ ପାଇକମାନେ ଇଂରେଜମାନଙ୍କ ଗତିରୋଧ କରି ନ ପାରିବାରୁ ଖୋର୍ଦ୍ଧାର ରାଜା ମୁକୁନ୍ଦଦେବଙ୍କୁ ବନ୍ଦୀ କରି ରଖିଲେ । ୧୮୧୭ ମସିହା ଏପ୍ରିଲ ମାସ ୧୨ ତାରିଖରେ ସାମରିକ ଆଇନ୍ ପ୍ରବର୍ତ୍ତନ କରି ମେଜର୍ ସାର୍ ଜି ମାଟନ୍ ଡେଲଙ୍କୁ ସାମରିକ କମିଶନର୍ ରୂପେ ନିଯୁକ୍ତି କଲେ ବିଦ୍ରୋହ ଦମନ ପାଇଁ । ଅକ୍ଟୋବର ମାସ ଶେଷ ଆଡ଼କୁ ଇଂରେଜମାନେ ବିଦ୍ରୋହ ଦମନ କରିବାରେ ସଫଳ ହେଲେ ସତ, କିନ୍ତୁ ବକ୍ସି ଜଗବନ୍ଧୁଙ୍କ ବଳିଷ୍ଠ ନେତୃତ୍ୱ ପାଖରେ ଶାନ୍ତିରେ ନିଃଶ୍ୱାସ ମାରି ପାରି ନଥିଲେ । କାରଣ ଏଇ ବୀରମାନେ ତାଙ୍କର ଅନୁଚରମାନଙ୍କ ସହ ଜଙ୍ଗଲରେ ଆତ୍ମଗୋପନ କରି ରହିଥିଲେ । ପୁଣି କେତେବେଳେ ଏମାନେ ବିଦ୍ରୋହ ଆରମ୍ଭ କରିଦେବେ ତା'ର କିଛି ଠିକଣା ନଥିଲା । ଏହି ଚିନ୍ତାରେ ଇଂରେଜମାନେ ଏକ ଦୋଦୁଲ୍ୟମାନ ଅବସ୍ଥାରେ ସେତେବେଳେ ରହିଥିଲେ । ୧୮୨୨ ପର୍ଯ୍ୟନ୍ତ ଏଇ ବୀରମାନଙ୍କ ସହ ଇଂରେଜମାନଙ୍କର ଲୁଚକାଳି ଖେଳ ଚାଲିଥିଲା । ଇଂରେଜମାନେ ସେମାନଙ୍କୁ ଧରି ପାରି ନ ଥିଲେ । ତେଣୁ ୧୮୨୨ ରେ ତତ୍‌କାଳୀନ ଇଂରେଜ ବଡ଼ଲାଟ୍ ବକ୍ସି ଜଗବନ୍ଧୁ , କୃଷ୍ଣଚନ୍ଦ୍ର ଭ୍ରମରବର ଓ ତାଙ୍କର ଅନୁଚରମାନଙ୍କୁ କ୍ଷମା ଦେବା ପାଇଁ କିଛି ସର୍ତ୍ତ ରଖି ଘୋଷଣା କରିଥିଲେ ଯେ :

୧ – ସେମାନଙ୍କର ବଂଶାନୁକ୍ରମିକ ପଦବୀ ବକ୍ସି ଓ ଦେୱାନ ବ୍ୟବହାର କରିବେ ନାହିଁ ।

୨ – ସେମାନେ କଟକରେ ରହିବେ ଓ ଇଂରେଜମାନଙ୍କ ବିନା ଅନୁମତିରେ କଟକ ଛାଡ଼ି ଯାଇ ପାରିବେ ନାହିଁ ।

୩ – ସେମାନଙ୍କୁ ଯଥାକ୍ରମେ ମାସିକ ୧୦୦ ଏବଂ ୫୦ ଟଙ୍କା ଭତ୍ତା ଦିଆଯିବ ।

ତଥାପି ଏଇ ବୀରମାନେ ଅତି ଶୋଚନୀୟ ଅବସ୍ଥାରେ ଥାଇ ମଧ୍ୟ ଏ ଘୋଷଣା ଅନୁଯାୟୀ ଆତ୍ମ ସମର୍ପଣ କରି ନଥିଲେ । ତେଣୁ ଇଂରେଜମାନେ ନୟାଗଡ଼ ଓ ଅନ୍ୟାନ୍ୟ ରାଜାମାନଙ୍କୁ ସାହାଯ୍ୟ ନକରିବା ପାଇଁ ଧମକ୍ ଦେଇଥିଲେ । ରାଜାମାନେ ଅନ୍ୟ ଉପାୟ ନପାଇ ନୟାଗଡ଼ ରାଜା ଓ ତାଙ୍କ ଦେୱାନ ବରଜୁ ପାଇକରାୟଙ୍କ ଜରିଆରେ ଏଇ ସର୍ତ୍ତକୁ ମାନି ନେଇ ଆତ୍ମ ସମର୍ପଣ କରିବାକୁ ପ୍ରବର୍ତ୍ତାଇଲେ । ଅନ୍ୟ କିଛି ଉପାୟ ନଥିଲା ସେତେବେଳେ ବକ୍ସି ଜଗବନ୍ଧୁଙ୍କ ନିକଟରେ । ତେଣୁ ସେ ବାଧ୍ୟ ହୋଇ ୧୮୨୫ରେ ଆତ୍ମ ସମର୍ପଣ କରିଥିଲେ ଏବଂ କଟକରେ ଗୃହବନ୍ଦୀ ଭାବରେ ଜୀବନ ବିତାଇଥିଲେ । ୧୮୨୯ ଜାନୁଆରୀ ୨୪ ତାରିଖରେ ଏଇ ବୀରଙ୍କର ଜୀବନଦୀପ ନିର୍ବାପିତ ହୋଇ ଯାଇଥିଲା ସତ, କିନ୍ତୁ ଏ ମାଟିରେ ସେଇ ବୀରଙ୍କର ଅମର ଆତ୍ମା ଆଜି ବି ପ୍ରଜ୍ୱଳିତ ଦୀପଶିଖା ହୋଇ ଜଳୁଅଛି ଅହରହ ସବୁ ଉତ୍କଳୀୟଙ୍କ ହୃଦୟରେ ।

ଜାତି, ବର୍ଣ୍ଣ, ଧର୍ମ ନିର୍ବିଶେଷରେ ସମସ୍ତଙ୍କୁ ଏକାଠି କରି ଏ ମାଟିର ସ୍ୱାଭିମାନ, ଉଚ୍ଚ ପରମ୍ପରା, ଐତିହ୍ୟ, ସଂସ୍କୃତିକୁ ବଜାୟ ରଖିବା ସହ ପରାଧୀନତାର ଶୃଙ୍ଖଳ ଭିତରୁ ନିଜ ଜନ୍ମ ମାଟିକୁ ରକ୍ଷା କରିବା ପାଇଁ ତାଙ୍କର ଆତ୍ମ ବଳିଦାନ ପାଇଁ ସେ ଚିରନମସ୍ୟ । ଏଇ ବୀରଙ୍କର ଦେଶ ଭକ୍ତି ପାଖରେ ଆସନ୍ତୁ ନତମସ୍ତକ ହୋଇ ତାଙ୍କର ଗୁଣଗାନ କରିବା ।

ପ୍ଲଟ ନଂ.୧୨୨୩
ମଲ୍ଲିକ କମ୍ପ୍ଲେକ୍ସ, ଜାଗମରା
ଖଣ୍ଡଗିରି, ଭୁବନେଶ୍ୱର-୩୦

# ପୁଣ୍ୟ ଭୂଇଁ ଭାରତ

ଏମ୍. ଭି. ରାଓ

ସତ୍ୟ, ଶିବ ଓ ସୁନ୍ଦର ଏକ ଓ ଅଭିନ୍ନ । ଏହାର ସମନ୍ୱୟରେ ଜୀବନ ହୋଇଥାଏ କ୍ରିୟାଶୀଳ । ଯାହା ସତ୍ୟ ତାହା ଚିର ସତ୍ୟ, ଚିର ସୁନ୍ଦର ଓ ଚିର ମଙ୍ଗଳମୟ ।

ସ୍ରଷ୍ଟାଙ୍କ ଦ୍ୱାରା ସୃଷ୍ଟ ଏ ଜଗତ ବଡ଼ ବିଚିତ୍ର । ପରମବ୍ରହ୍ମ ପ୍ରତ୍ୟେକ ବସ୍ତୁକୁ ଏପରି ସୁନ୍ଦର ଭାବରେ ସନ୍ନିବେଶିତ କରିଛନ୍ତି ଯେ ସେଥିରୁ କୌଣସି ଗୋଟିଏ ମଧ୍ୟ ତ୍ରୁଟିପୂର୍ଣ୍ଣ ନୁହଁ । ପରମାତ୍ମା ସତ୍ୟ, ଶିବ ଏବଂ ସୁନ୍ଦରର ପ୍ରତୀକ ହୋଇଥିବାରୁ ତାଙ୍କ ବିଶ୍ୱ ମଧ୍ୟ ଅନୁରୂପ ସତ୍ୟ ଶିବ ଓ ସୁନ୍ଦରର ମୂର୍ତ୍ତିମନ୍ତ ବିଗ୍ରହ ।

ସତ୍ୟ, ଶିବ ଓ ସୁନ୍ଦରର ସମାହାର ହେଉଛି ଏ ଭୂଗୋଳ । ଯେଉଁଠି ସତ୍ୟର ଅସ୍ତିତ୍ୱ ରହିଛି, ସେହିଠି ନିଶ୍ଚିତ ହୋଇ ରହିଛି ଶିବ ଏବଂ ସୁନ୍ଦରର ଉପସ୍ଥିତି । ବ୍ରହ୍ମ ହେଉଛି ପରମ ସତ୍ୟ, ଜଗତ ହେଉଛି ସତ୍ୟର ବାହ୍ୟ ପ୍ରକାଶ ମାତ୍ର । ଅହଂ ବ୍ରହ୍ମାସ୍ମି ( ମୁଁ ହିଁ ବ୍ରହ୍ମ) ଉପଲବ୍ଧ ହେଲେ ପରମ ସତ୍ୟକୁ ଚିହ୍ନି ହେବ । ସେହି ଦୃଷ୍ଟିରୁ ଏ ଜୀବନ ସତ୍ୟ ଏବଂ ସତ୍ୟର ଗତି ସର୍ବଦା ଶିବ ଏବଂ ସୁନ୍ଦର ଆଡ଼କୁ ।

ମଣିଷ ଅମୃତ ସନ୍ତାନ ଏବଂ ଅମୃତପ୍ରାପ୍ତି ତା' ଜୀବନର ସର୍ବଶ୍ରେଷ୍ଠ ଲକ୍ଷ୍ୟ । ସତ୍ୟର ପ୍ରତିଷ୍ଠା, ସୌନ୍ଦର୍ଯ୍ୟର ଉପାସନା ଓ ମଙ୍ଗଳକାମନା ତା'ର ଉଦ୍ଦେଶ୍ୟ ।

ଉପରୋକ୍ତ ସାରାମୃତ ଉପାଦାନରେ ଗଢ଼ା । ଏ ପୁଣ୍ୟ ଭାରତଭୂମି ଏବଂ ଭାରତ ମାତୃକାର ବକ୍ଷରୁ ଅମୃତପାନ କରି ତା'ର ସନ୍ତାନ ହୋଇଛି ଦୀପ୍ତିମନ୍ତ ।

ଜନ୍ମଭୂମି ସ୍ୱର୍ଗାଦପୀ ଗରିୟସି । ଆମର ଜନ୍ମଭୂମି ଭାରତ ବିଶ୍ୱରେ ଏକ ସର୍ବଶ୍ରେଷ୍ଠ ଧର୍ମକ୍ଷେତ୍ର ଯେଉଁଠି ଯୁଗ ଯୁଗ ଧରି ଭଗବାନ ଦଶଟି ଅବତାରରେ ଅବତୀର୍ଣ୍ଣ ହୋଇ ଲୀଳାଖେଳା କରି ଯାଇଛନ୍ତି । ସମସ୍ତ ଅବତାରର ଗୋଟିଏ ମାତ୍ର ଲକ୍ଷ୍ୟ – ଧର୍ମ ସଂସ୍ଥାପନା । 'ଗୀତା'ରେ ଭଗବାନ ଶ୍ରୀକୃଷ୍ଣଙ୍କୁ ଏହା କହିଛନ୍ତି ।

ଏଠାରେ ପ୍ରଶ୍ନ ଉଠିବା ସ୍ୱାଭାବିକ ଯେ ଏତେବଡ଼ ଭୂଗୋଳରେ କେଉଁଠି ଉଚିତ ସ୍ଥାନ ପାଇଲେନି ପ୍ରଭୁ ଅବତାର ନେଇ ଆବିର୍ଭାବ ହେବାକୁ ? ପ୍ରକୃତ କାରଣ ହୋଇପାରେ, ଭଗବାନ ଏ ମାଟି ଓ ଏ ମାଟିରେ ଥିବା ସତ୍ୟ, ଧର୍ମ, ଶାନ୍ତି, ପ୍ରେମ ଓ ଅହିଂସା ମାର୍ଗର ପଥିକ ଭଗବତ୍‌ପ୍ରୀତ ଏବଂ ନୈତିକ ଓ ଆଧ୍ୟାତ୍ମିକ ଭାବନାରେ ଭାବପୂର୍ଣ୍ଣ ଅମୃତ ସନ୍ତାନଙ୍କୁ ଅତି ଭଲ ପାଆନ୍ତି ।

ଭଗବାନ ସତ୍ୟ ସାଇ ବାବା, 'ଭାରତ' ଶବ୍ଦର ଅର୍ଥ ବ୍ୟାଖ୍ୟା କରି କହିଛନ୍ତି 'ଭା' ଅର୍ଥ ଭଗବାନ ଓ 'ରତ' ଅର୍ଥ ଅନୁରାଗ ( ପୃ –୨୯, ଜୁନ୍, ୨୦୧୪ ସନାତନ ସାରଥି) । ତେଣୁ ଯେଉଁ ବ୍ୟକ୍ତିବିଶେଷଙ୍କ ଭଗବାନଙ୍କ ପ୍ରତି ରତ ବା ଭକ୍ତି ଅଛି ସେମାନେ ଭାରତୀୟ । ଭଗବତ୍ ପ୍ରୀତି ହେଉଛି ଆଧ୍ୟାତ୍ମିକତା । ଯାହା ଭାରତୀୟ ସଂସ୍କୃତିର ମୂଳ ତତ୍ତ୍ୱ ।

ଲୁହା ଓ ଚୁମ୍ବକର ଘନିଷ୍ଠତା ଅତି ନିବିଡ଼ । ଚୁମ୍ବକ ଲୁହାକୁ ଆକର୍ଷଣ କରେ, ସେହିଭଳି ପରମାତ୍ମା ଜୀବାତ୍ମାକୁ ନିଜ ଆଡ଼କୁ ଆକର୍ଷିତ କରନ୍ତି । ଲୁହା ଧୂଳି ଓ କଳଙ୍କରେ ଆଚ୍ଛାଦିତ ହେଲେ ଚୁମ୍ବକ ଆକର୍ଷଣ କରି ପାରିବ ନାହିଁ । ତେଣୁ ଲୁହା ଧୂଳି ଓ କଳଙ୍କମୁକ୍ତ ରହିବା ଦରକାର । ଠିକ୍ ସେହିଭଳି ଜୀବାତ୍ମା ପ୍ରକୃତ ସ୍ୱଭାବର ଦୀପ୍ତିମନ୍ତ ରହିଲେ ପରମାତ୍ମା କୋଳକୁ ଟାଣି ନେବେ । ଅଧର୍ମ ଓ ପଙ୍କିଳ ପରିବେଶରେ ରହି ଏ ମଣିଷ ସର୍ବଦା, କୁକର୍ମର ଅନୁଗାମୀ ହୋଇପଡେ ଏବଂ ପ୍ରଭୁ ଚିନ୍ତନଠାରୁ ବହୁ ଦୂରକୁ ଚାଲିଯାଏ । ଅବାଟରେ ଚାଲିଯାଉଥିବା ଅମୃତ ସନ୍ତାନକୁ ସଠିକ୍ ବାଟକୁ ଆଣିବା ପାଇଁ ଏ ଧରାଧାମରେ ଭଗବାନଙ୍କର ଅବତାର ନିଶ୍ଚିତ ହୋଇ ପଡୁଛି ।

ଧରା ବକ୍ଷରେ ଯେତେବେଳେ ଅଧର୍ମ ରାଜ କରେ, ଅମୃତସନ୍ତାନ ନିଷ୍ପେସିତ ହୋଇଯାଏ, ସେତେବେଳେ ଧର୍ମ ସଂସ୍ଥାପନା କରିବା ପାଇଁ ପୁଣ୍ୟ ଭାରତ ଭୂଇଁରେ ଭଗବାନ ଅବତାର ଗ୍ରହଣ କରନ୍ତି। ଏଭଳି ଦୃଷ୍ଟାନ୍ତ ବୋଧେ କୌଣସି ଦେଶରେ ନାହିଁ। ତ୍ରେତୟା ଯୁଗରେ ରାମ ଅବତାରରେ ରାକ୍ଷସ ରାଜା ଲଙ୍କାଧିଶ୍ୱର ଦଶାନନ ରାବଣକୁ ବଧ କରି ରାଜା ରାମଚନ୍ଦ୍ର ପୁରୁଷୋତ୍ତମ ପାଲଟି ଥିଲେ। ଏଥିପାଇଁ ଚଉଦ ବରଷ ପତ୍ନୀ ବିହୁନେ ବଣ ଜଙ୍ଗଲରେ କେତେ କଷ୍ଟରେ ଦିନ ବିତାଇ ନ ଥିଲେ ? ଦ୍ୱାପର ଯୁଗରେ କୃଷ୍ଣ ଅବତାରରେ ମୁଖ୍ୟତଃ ଦୁରାଚାରୀ କଂସକୁ ବଧ କରିଥିଲେ ଭଗବାନ ଶ୍ରୀକୃଷ୍ଣ।

ପାଶ୍ଚାତ୍ୟ ସଂସ୍କୃତିର ପ୍ରଭାବରେ ପ୍ରଭାବିତ ଆଜିର ମଣିଷ, ଅସୀମ କାମନା, ଅବାଞ୍ଛିତ ସମ୍ପର୍କ ବଢ଼ାଇ ଔଚିତ୍ୟର ସୀମା ଉଲ୍ଲଙ୍ଘନ କରୁଛି। ସତ୍ୟକୁ ଭୁଲି ଦିବ୍ୟତ୍ୱର ଅନୁଭୂତିଠାରୁ ବହୁ ଦୂରକୁ ଚାଲିଯାଉଛି ଏ ମଣିଷ। ଆନନ୍ଦ ପାଇଁ କାମନା, ଅଭିଳାଷ ଓ ଆକୁଳତା ବୃଦ୍ଧି ପାଉଛି, ଯାହା ଦିବ୍ୟାନୁଭୂତିର ବିପରୀତ ମାର୍ଗ। ଶାନ୍ତିମୟ ଜୀବନ ପାଇଁ ଦିବ୍ୟାନୁଭୂତି ଆବଶ୍ୟକ। ତେଣୁ ହୃଦୟକୁ ନିର୍ମଳ ଓ ସ୍ୱଚ୍ଛ କରି ପବିତ୍ର ଆଧ୍ୟାତ୍ମିକ ବଳରେ ଶରୀରକୁ ଧୌତ କରି ସାହସର ସହ ସତ୍ୟ ଓ ପ୍ରେମ ମାର୍ଗକୁ ଅନୁସରଣ କଲେ ହିଁ ଭଗବାନଙ୍କ କରୁଣାର ବାରିଧାରା ପ୍ରାପ୍ୟ ନିଶ୍ଚିତ। ପ୍ରେମ ଅତି ପବିତ୍ର ଓ ଏହା ଭଗବାନଙ୍କ ରୂପ ।

ସର୍ବଶକ୍ତିମାନ ଭଗବାନଙ୍କୁ କୌଣସି ମାପକାଠିରେ ମାପି ହେବ ନାହିଁ କି କୌଣସି ଗଣନାରେ କଳନା କରି ହେବ ନାହିଁ। କୌଣସି ଭାଷା ମାଧ୍ୟମରେ ବି ତାଙ୍କୁ ପ୍ରକାଶ କରି ହେବ ନାହିଁ। ରହସ୍ୟ ପୁରୁଷଙ୍କ ରହସ୍ୟ ଭେଦ କରିବା ଏ ସାଧାରଣ ମଣିଷ ପକ୍ଷେ ସମ୍ଭବ ନୁହଁ କାରଣ ସେ ଏ ମଣିଷକୁ ସମ୍ପୂର୍ଣ୍ଣ ରହସ୍ୟ ମଧ୍ୟରେ ଆବୃତ୍ତ କରି ରଖିଛନ୍ତି। ତେଣୁ ସେ ହେଉଛନ୍ତି ଅକଳ୍ପନୀୟ, ଅଚିନ୍ତନୀୟ ଓ ଅନିର୍ବଚନୀୟ ଯାହାର ଐଶୀଶକ୍ତି ଅଧୀନରେ ସମସ୍ତ ଭୂଗୋଳ, ଜୀବଜଗତ ଓ ଜଡ଼ଜଗତ ଅବସ୍ଥାନ କରିଛନ୍ତି।

ପୃଥିବୀ ଦରବାରରେ ଭାରତ ଏକ ଶ୍ରେଷ୍ଠ ଗଣତନ୍ତ୍ର ରାଷ୍ଟ୍ର, ଯେଉଁଠି ସବୁ ଧର୍ମ, ସବୁ ଜାତି, ସବୁ ବର୍ଣ୍ଣର ବ୍ୟକ୍ତି ସମାନ ଅଧିକାର ଭୋଗ କରିଥାନ୍ତି। ଗଣଙ୍କଦ୍ୱାରା ସରକାର ଗଢ଼ାଯାଇ ଗଣତନ୍ତ୍ରର ଶାସନ ଚାଲୁଥିବାରୁ ଏହା ଏକ ଉଚ୍ଚକୋଟୀର ଗଣତନ୍ତ୍ର ରାଷ୍ଟ୍ର। ବହୁବର୍ଷ ଧରି ଇଂରେଜମାନଙ୍କ ଦ୍ୱାରା ଶାସିତ, ଶୋଷିତ ହେବା ପରେ ଜାତିର ଜନକ ମହାତ୍ମା ଗାନ୍ଧୀଙ୍କ ଅହିଂସା ମନ୍ତ୍ରରେ ଗୋରା ସରକାର ରାତାରାତି ଭାରତ ଛାଡ଼ି ଫେରି ଯାଇଥିଲେ। ଏଭଳି ସଂଗ୍ରାମ ପୃଥିବୀ ଇତିହାସରେ ବିରଳ। ଅତଏବ, ସର୍ବଧର୍ମ ସର୍ବନାମର ସମାହାର ଭଗବାନ। ବାପୁଙ୍କ ମନ୍ତ୍ରକୁ ଜପ କରି ଭାରତ ମାତାର ସନ୍ତାନ ଗଣତନ୍ତ୍ର ଓ ପଞ୍ଚଶୀଳ ନୀତିର ବିଶ୍ୱାସ କରେ। ତଦନୁଯାୟୀ ଭାରତବାସୀ ବା ହିନ୍ଦୁସ୍ଥାନୀ ସବୁଧର୍ମ ଓ ସବୁ ବର୍ଣ୍ଣର ବ୍ୟକ୍ତିଙ୍କୁ ସମ୍ମାନ ଜଣାଇ ଆସୁଛି। ସର୍ବଦା ପଡୋଶୀ ରାଷ୍ଟ୍ରଙ୍କ ସହିତ ବନ୍ଧୁତ୍ୱର ହାତ ମିଳାଇ ଦେଶର ପରମ୍ପରା ଓ ଐତିହ୍ୟର ମାନ ବଜାୟ ରଖି ଆସୁଛି। ମର୍ଯ୍ୟାଦା ପୁରୁଷୋତ୍ତମ ରାମଚନ୍ଦ୍ର ଓ ଭଗବାନ ଶ୍ରୀକୃଷ୍ଣଙ୍କ ଜନ୍ମିତ ପୁଣ୍ୟମାଟିର ଦାୟାଦ ଏ ମଣିଷ ବା ଅନ୍ୟଥା ହେବ କେମନ୍ତେ ?

ପଡୋଶୀ ରାଷ୍ଟ୍ର ଧର୍ମ ନାଁରେ ଯୁଦ୍ଧ, ଗଣହତ୍ୟା ଇତ୍ୟାଦି କୁକର୍ମମାନ କରି ଚାଲିଥିବାବେଳେ ଆଧ୍ୟାତ୍ମିକ ଚେତନାପୂର୍ଣ୍ଣ ଭାରତୀୟମାନେ ଶାନ୍ତି ମାର୍ଗରେ ଚାଲିଛନ୍ତି, ଯେଉଁ ମହାନ ଗୁଣ ଯୋଗୁଁ ପୃଥିବୀରେ ଅଧିକାଂଶ ଦେଶ ଓ ଦେଶବାସୀଙ୍କ ମୁଖରେ ଶାନ୍ତିପ୍ରିୟ ଭାରତବାସୀ ଆଜି ପ୍ରଂଶସିତ। ଧୈର୍ଯ୍ୟ ବିରକ୍ତିକର ହେଲେ ମଧ୍ୟ ଏହାର ଅନ୍ତିମ ଫଳ ମଧୁର ହୋଇଥାଏ। ଅସୀମ ଧୈର୍ଯ୍ୟର ପରିଚୟ ଦେଇ ଭାରତ ସଦାସର୍ବଦା ନିଜ ଲକ୍ଷ୍ୟରେ ସଫଳ ହୋଇ ପାରୁଛି। ପଡ଼ୋଶୀ ରାଷ୍ଟ୍ରର କୁଚକ୍ରାନ୍ତ ଯୋଗୁଁ ଆମ ଦେଶ ଭିତରେ ଆଭ୍ୟନ୍ତରୀଣ ବିଶୃଙ୍ଖଳା ଦେଖାଦେଉଛି। ଏହାରି ଫଳରେ ଆମର ଅନେକ ଧନ ଓ ଜନ କ୍ଷୟ ହୋଇ ଆର୍ଥିକ ସଙ୍କଟ ସୃଷ୍ଟି ହେଉଥିଲେ ହେଁ ପରିଶେଷରେ ଧର୍ମର ହିଁ ଜୟ ହେଉଛି ଏବଂ ଶତ୍ରୁପକ୍ଷ ପରାଜୟକୁ ସ୍ୱୀକାର କରିବାକୁ ବାଧ୍ୟ ହେଉଛି। କ୍ରୋଧ ପରମ ଶତ୍ରୁ। ତେଣୁ କ୍ରୋଧକୁ ସମ୍ଭାଳି, ମନରେ ଭାଇଚାରାର ମନ୍ତ୍ର ଗାନ କରି ସେମାନଙ୍କୁ ଏ ଦେଶ କ୍ଷମା କରିଛି।

ସତ୍ୟ, ଶିବ ଓ ସୁନ୍ଦର ଏକ ଓ ଅଭିନ୍ନ। ସତ୍ୟର ପୂଜାରୀ, ଆଧ୍ୟାତ୍ମିକ ଚେତନାରେ ଉଦ୍‌ବୃଦ୍ଧ ଭାରତୀୟ ସର୍ବଦା ଭାରତମାତାର ସେବାରେ ନିଜକୁ ଉତ୍ସର୍ଗୀକୃତ କରିଥାଏ। ମଇଁଷି ଶିଙ୍ଗ ଫଟା, ଯୁଝିଲା ବେଳକୁ ଗୋଟା। ଆଞ୍ଚଳିକ ବୈଷମ୍ୟ ଭେଦରେ ମନରେ ଯେତେ ଦ୍ୱେଷ ଥାଉନା କାହିଁକି, ମାତୃକା ସେବାରେ ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ସମସ୍ତ ଭାରତୀୟ ଏକଜୁଟ ହୋଇ ଆଗେଇ ଆସନ୍ତି।

କାଳର ସ୍ରୋତରେ ଆମ ଲୋକ ପାଶ୍ଚାତ୍ୟ କଳା ଓ ସଂସ୍କୃତିରେ ବିମୋହିତ ହୋଇ ପଥଭ୍ରଷ୍ଟ ହେଉଛନ୍ତି, ଫଳତଃ ଏ ପୁଣ୍ୟ ଭୂଇଁରେ ପାପର ଭାରା ବଢ଼ିବାରେ ଲାଗୁଛି। ଯେତେବେଳେ ପାପର ମାତ୍ରା ଶୀର୍ଷକୁ ଯାଇ ପହଞ୍ଚିଛି, ପ୍ରକୃତି ବା ଭଗବାନ ତା'ର ଅନ୍ତ ଘଟାଇବାକୁ ଯାଇ କିଛି ନା କିଛି ଅଘଟଣ ଘଟାଉଛନ୍ତି।

ସାମ୍ପ୍ରତିକ ଉତ୍ତରାଖଣ୍ଡ ବନ୍ୟା ଓ ଭୂସ୍ଖଳନକୁ ଉଦାହରଣଭାବେ ନିଆଯାଇପାରେ, ଯେଉଁଥିରେ ପ୍ରାୟ ଦଶହଜାର ତୀର୍ଥଯାତ୍ରୀଙ୍କ ସମାଧି ଘଟିଛି।

ଏ ତ କଳିଯୁଗ, ଯୁଗ ଅନ୍ତରେ ଭଗବାନ କଲ୍‌କୀ ଅବତାରରେ ଧରାପୃଷ୍ଠକୁ ଅବତରଣ କରି ପାପୀଙ୍କୁ ସଂହାର କରିବା କଥା ମାଳିକାରେ ଉଲ୍ଲେଖ ଅଛି। ତେଣୁ ଏଥିରୁ ମୁକ୍ତି ପାଇବାକୁ ହେଲେ ନିତ୍ୟ ନାମ ସଂକୀର୍ତ୍ତନ ହିଁ ଏକମାତ୍ର ଉପାୟ।

ଭାରତମାତାର ସୌନ୍ଦର୍ଯ୍ୟ ଅବର୍ଣ୍ଣନୀୟ। ନୀଳ ଆକାଶ, ନୀଳ ଜଳରାଶି ଶ୍ୟାମଳ କେଦାର ଓ ସବୁଜ ବନାନୀ ଦ୍ୱାରା ଶୋଭିତ ମା' ଆମର। ଯାହା ନାହିଁ ଭାରତେ ତାହା ନାହିଁ ଜଗତେ। ଅର୍ଥାତ୍ ସମସ୍ତ ଧନଧାନ୍ୟ ଓ ଖଣିଜ ସମ୍ପଦରେ ଭରପୂର ଏ ଦେଶ। ଏ କ୍ଷଣସ୍ଥାୟୀ ଜଗତରେ ଯେତେ ଯାହା ଅଛି ସେସବୁ ପରମାତ୍ମାଙ୍କ ଦ୍ୱାରା ଆବୃତ ହୋଇ ରହିଛି। ବିଧିର ବିଧାନ ବଳରେ ଯାହା ମିଳିଛି ତାହା ହିଁ ଭୋଗ କରିବା ଉଚିତ। ପରର ଦ୍ରବ୍ୟକୁ ଲୋଭ କରିବା ଉଚିତ ହେବ ନାହିଁ। କିନ୍ତୁ ବ୍ରିଟିଶ ସରକାରର ଲୋଲୁପ ଦୃଷ୍ଟି ଭାରତ ମାତାର ସୌନ୍ଦର୍ଯ୍ୟ ଓ ଧନଧାନ୍ୟ ଉପରେ ପଡ଼ିଥିଲା ଏବଂ ଏ ଦେଶକୁ ଲୁଣ୍ଠନ କରି ମା'ର ସୌନ୍ଦର୍ଯ୍ୟକୁ ବିକୃତ କରି ଦେଇଥିଲା। ଭାରତ ମାତୃକାର ସୁସନ୍ତାନମାନେ ସବୁ କାର୍ଯ୍ୟରେ ସକ୍ଷମ, କୌଣସିରେ ଅକ୍ଷମ ନୁହନ୍ତି। ମା'ର ପୁରୁବ ସୌନ୍ଦର୍ଯ୍ୟ ଓ ଗୌରବକୁ ଫେରାଇ ଆଣିବା ପାଇଁ ତା' ସନ୍ତାନମାନେ ଆଜି ତତ୍ପର। ହଜାର ହଜାର ଯୁବକ ସାତ ସମୁଦ୍ର ପାର ହୋଇ ଆମେରିକା ଭଳି ବିଦେଶ ମାଟିରେ ଦିବାନିଶି କଠିନ ପରିଶ୍ରମ କରି ବିପୁଳ ବୈଦେଶିକ ମୁଦ୍ରାରେ ଏ ଦେଶକୁ ଭରପୂର କରୁଛନ୍ତି ଯାହାକି ଆମ ଦେଶବାସୀଙ୍କ ଜୀବନଶୈଳୀରେ ଉନ୍ନତିର ଦିଗ ଖୋଲି ପାରୁଛି। ଆମ ମା'ର ଏ ମନ୍ତ୍ର ଶ୍ରୀବୃଦ୍ଧିକୁ ପଡ଼ୋଶୀ ରାଷ୍ଟ୍ରମାନେ ସହ୍ୟ ନ କରିପାରି ଏ ରାଷ୍ଟ୍ରକୁ ବିଭାଜନ କରିବାରେ ପ୍ରୟାସ କରୁଛନ୍ତି। ଶାନ୍ତି ପ୍ରସ୍ତାବ ଉପରେ ଆଲୋଚନା ହେଉଥିବାବେଳେ ସୀମନ୍ତରେ ସନ୍ତ୍ରାସବାଦୀଙ୍କୁ ପ୍ରେରଣ କରି ବିଶୃଙ୍ଖଳା ସୃଷ୍ଟି କରିବାରେ ଉଦ୍ୟମରତ ଶତ୍ରୁରାଷ୍ଟ୍ର ସଫଳ ହୋଇ ପାରୁନି, ଏହା ହିଁ ହେଉଛି ସେମାନଙ୍କ ପାଇଁ ବିଡ଼ମ୍ବନା। ଭାରତମାତାର ଯୋଗ୍ୟ ବୀର ସୈନିକ ଦୃଢ଼ତାର ସହ ଜବାବ ଦେଉଛନ୍ତି ଶତ୍ରୁଙ୍କୁ। ଆମେ ମୈତ୍ରୀର ହାତ ବଢ଼ାଇ ଥିବାବେଳେ ସେମାନେ ପିଠିରେ କୁଠାରଘାତ କରୁଛନ୍ତି। ସତ୍ୟମେବ ଜୟତେ। କାରଗିଲ୍ ଯୁଦ୍ଧ ହେଉଛି ଏକ ଜ୍ୱଳନ୍ତ ଉଦାହରଣ।

ଚଳଚ୍ଚିତ୍ର ଜଗତର କଳାକାରମାନଙ୍କର କୃତିତ୍ୱ ବା ଅବଦାନ ଏ ଦିଗରେ କିଛି କମ୍ ନୁହଁ। ଏପରିକି ଭାରତୀୟ ଚଳଚ୍ଚିତ୍ର ବିଦେଶରେ ଲୋକପ୍ରିୟ ହୋଇ ଅଜସ୍ର ଧନ ଉପାର୍ଜନ କରିପାରୁଛି ଏବଂ କିଛି ଚଳଚ୍ଚିତ୍ର OSCAR ପୁରସ୍କାର ପାଇବାରେ ମଧ୍ୟ ଆଗୁଆ।

ବିଶ୍ୱରେ ବାସ କରୁଥିବା ମଣିଷ ପରମାତ୍ମାଙ୍କ ସୃଷ୍ଟିରେ ସର୍ବୋତ୍ତମ ସୃଷ୍ଟି। ବିଚାର କରିବା, ଭଲମନ୍ଦ ବାଛିବା, କହିବା ଓ ଶୁଣିବାର ଶକ୍ତି ରହିଛି ଏ ମଣିଷର। ସଫଳତାର ଚରମ ସୀମାରେ ପହଞ୍ଚିବାର ଗର୍ବ ଅନୁଭବ କରିପାରୁଛି ଆଜିର ମଣିଷ, ହେଲେ ତା'ର ଆଦିମ ରାକ୍ଷସ ପ୍ରବୃତ୍ତି କେବେ ବି ବଦଳୁନି। ଧର୍ମ ପିପାସୁ, ଆଧ୍ୟାତ୍ମିକ ଭାବନାରେ ଉଦ୍‌ବୁଦ୍ଧ ଭାରତମାତାର ଯୋଗ୍ୟ ସନ୍ତାନ ଏଥିରୁ ଭିନ୍ନ। ସେ ସର୍ବଦା ଐଶ୍ୱରିକ ଶକ୍ତି ଚିନ୍ତନକୁ ନେଇ ବଞ୍ଚିବାକୁ ଚାହେଁ। ଅନ୍ୟ ଦେଶ, ଜାତିକୁ ଭାଇଚାରାରେ ବାନ୍ଧି ଜାତିର ଜନକ ମହାତ୍ମା ଗାନ୍ଧୀଙ୍କ ଅହିଂସା ନୀତିକୁ ଶୀର୍ଷ ସ୍ଥାନ ଦିଏ ଏବଂ ସଦାସର୍ବଦା ଶାନ୍ତିପ୍ରିୟ ଭାରତମାତାର ଉତ୍ତମ ସନ୍ତାନର ପରିଚୟ ବିଶ୍ୱ ଦରବାରରେ ଦେଇ ଆସିଛି। ଭାରତମାତାର ଯୋଗ୍ୟ ସନ୍ତାନମାନେ ଏ ମନ୍ତ୍ର ଆଦର୍ଶକୁ ନିପୁଣତାର ସହ ସମ୍ପାଦନ କରି ବିଶ୍ୱ ଦରବାରରେ ଏକ ମହାନ ଶାନ୍ତିପ୍ରିୟ ଦେଶରୂପେ ପରିଚୟ କରାଇ ପାରୁଛନ୍ତି। ଏ ହେଉଛି ଭାରତୀୟଙ୍କ ପାରମ୍ପରିକ ପରମ୍ପରା।

ଭେଙ୍କଟସାଇ ନିଳୟମ
ପ୍ରାଇମେରୀ ସ୍କୁଲ ପଛ
ନୂଆ ପୋଲିସ କଲୋନୀ
ଛତ୍ରପୁର, ଗଞ୍ଜାମ



# ଆଧୁନିକ ସମାଜରେ ଆଧାତ୍ମିକତାର ଆବଶ୍ୟକତା

ପଣ୍ଡିତ ଜଗନ୍ନାଥ ଶତପଥୀ

ସମାଜ ହିଁ ଜୀବନର ଯଥାର୍ଥ ଦର୍ପଣ । ପ୍ରତିବିମ୍ବଧାରଣ କରିବା ପାଇଁ ସ୍ୱଚ୍ଛତା ଯେପରି ଅପରିହାର୍ଯ୍ୟ, ସେହିପରି ବ୍ୟକ୍ତିର ଚାରିତ୍ରିକ ଉତ୍କର୍ଷ ତଥା ମାନବିକ ମୂଲ୍ୟବୋଧ ପ୍ରତିଫଳନ ପାଇଁ ଆଦର୍ଶଭିତ୍ତିକ ସମାଜର ଭୂମିକା ମଧ୍ୟ ଅନସ୍ୱୀକାର୍ଯ୍ୟ । ସ୍ଥୂଳତଃ ସମାଜ ଓ ବ୍ୟକ୍ତି ପରସ୍ପର ଅଙ୍ଗାଙ୍ଗୀ ଭାବେ ନିଜ ନିଜ ଲକ୍ଷ୍ୟରେ ଉତ୍ତରଣଶୀଳ ।

ପ୍ରାକ୍ ବୈଦିକ କାଳରୁ ଅନ୍ତତଃ ମାନବ ସଭ୍ୟତାର କ୍ରମ ବିକାଶ ଧାରାରେ ସାମାଜିକ ଜୀବନରେ ବିଭିନ୍ନ ମତବାଦ, ଧର୍ମଧାରଣା, ଆଚାର ବିଚାର ତଥା ସଂସ୍କୃତିର ବିବର୍ତ୍ତନଶୀଳତା ଗଡଳିକା ପ୍ରବାହରେ ଏପର୍ଯ୍ୟନ୍ତ ବହି ଆସିଛି । ହୁଏତ ତାହା କେତେବେଳେ ଆଧାତ୍ମିକତାର ମୁଖ୍ୟ ସ୍ରୋତରେ ବା ଅପସଂସ୍କୃତିର ପ୍ରାବଲ୍ୟରେ ଉଦଗ୍ର ଜଳାବର୍ତ୍ତପରି । ଯାହାଦ୍ୱାରା ମାନବ ସଭ୍ୟତାର କ୍ରମିକ ବିକାଶ ବା ନୈତିକ ଅବକ୍ଷୟ ତାର ସୁଦୂର ପ୍ରସାରୀ ପରିଣତିକୁ ଜୀବନ୍ୟାସ ଦେଇଛି । ଜୀବନର ସାଂସ୍କୃତିକ ବିନ୍ୟାସ ପାଇଁ ଆଚାର ବିଚାର, ଧର୍ମ, ଭାଷା, ଚଳଣି ଓ ରୁଚିବୋଧକୁ ନେଇ ସମାଜ ଜୀବନ ନିତ୍ୟ ବିବର୍ତ୍ତନଶୀଳ । ନାନା ବିଭିନ୍ନତା ମଧ୍ୟରେ ଐକ୍ୟ ସମାଜ ଜୀବନରେ ଏକ ସୁସଂହତ ଧାରା ବା ଅନୁଶାସନ । ବେଳେବେଳେ ଏଭଳି ଜଣେ ଜଣେ ମହାପୁରୁଷଙ୍କର ଅଭ୍ୟୁଦୟ ଘଟେ, ଯେଉଁମାନଙ୍କର ଜୀବନାୟକ ଆମ ସମାଜ ଜୀବନକୁ ପ୍ରଜ୍ଞାଲୋକରେ ଉଦ୍‌ଭାସିତ କରିଦିଏ ଓ ଜନଜୀବନକୁ ଶୁଦ୍ଧ, ନିର୍ମଳ ତଥା ଆଧାତ୍ମିକ କରିବା ପାଇଁ ଉପଯୁକ୍ତ ଦିଗ୍‌ଦର୍ଶନ ଦେଇଥାଏ ।

ଗୀତାର ଭାଷାରେ–

ଯଦ୍ ଯଦାଚରତି ଶ୍ରେଷ୍ଠ ସ୍ତତ୍ତଦେବେତରୋ ଜନଃ
ସଯତ୍ ପ୍ରମାଣଂ କୁରୁତେ ଲୋକସ୍ତଦନୁବର୍ତ୍ତତେ ।

ଅର୍ଥାତ୍ ସମାଜର ପ୍ରମୁଖ ବ୍ୟକ୍ତିମାନେ ଯାହା ଯାହା କରନ୍ତି, ଅନ୍ୟମାନେ ତାକୁ ଅନୁସରଣ କରନ୍ତି । ସେ ଯାହା ପ୍ରମାଣ କରନ୍ତି, ତାହା ହିଁ ହୁଏ ସାମ୍ବିଧାନିକ ସ୍ୱୀକୃତି । ସାଧାରଣ ଲୋକ ସେହି ମାର୍ଗରେ ପରିଚାଳିତ ହୁଅନ୍ତି । ଆଜି କିନ୍ତୁ ସେଭଳି ଶୁଦ୍ଧପୂତ ଜୀବନାଲେଖ୍ୟ ସମାଜରେ ବିରଳ ।

ଏକଥା ସ୍ୱୀକାର୍ଯ୍ୟ ଯେ– ସମାଜ ଓ ରାଷ୍ଟ୍ରଜୀବନ ଗୋଟିଏ ସୂତ୍ରରେ ବନ୍ଧା । ଆମେ ସେହି ସୂତ୍ରରୁ ବିଚ୍ଛିନ୍ନ ହେବା ଫଳରେ ନିଜର ବାସ୍ତବ ସ୍ଥିତି, ପରମ୍ପରା, ଚରିତ୍ର, ଧର୍ମ, ସଂହତି ସବୁ ଭୁଲିଯାଉ । ଆଚାରନିଷ୍ଠ ଓ ବିଚାରବନ୍ତ ବ୍ୟକ୍ତି ରାଷ୍ଟ୍ର ଗଠନରେ ସର୍ବଦା ସଂସ୍କୃତି– ସଚେତନ । ସମାଜରେ ଭଲ ମଣିଷ ସୃଷ୍ଟି କରିବା ପାଇଁ ଏହି ଭାରତ ଭୂଖଣ୍ଡରେ ମୁନିଋଷିଗଣ ବେଦ, ବେଦାନ୍ତ, ସାଙ୍ଖ୍ୟ, ନ୍ୟାୟ ପ୍ରଭୃତି ରାଶିରାଶି ଗ୍ରନ୍ଥ ମାଧ୍ୟମରେ ଦିଗ୍‌ଦର୍ଶନ ଦେଇଯାଇଛନ୍ତି । ଆମର ଏହି ଭାରତବର୍ଷ ବିଶ୍ୱର ଜନଜୀବନକୁ ନାନା ଶାସ୍ତ୍ର ମାଧ୍ୟମରେ ଆଧାତ୍ମିକ ଚିନ୍ତନ ଯୋଗାଇ ଆସିଛି ।

''ଏତଦ୍ ଦେଶ ପ୍ରସୂତସ୍ୟ ସକାଶାଦଗ୍ରଜନ୍ମନଃ
ସ୍ୱଂ ସ୍ୱଂ ଚରିତଂ ଶିକ୍ଷେରନ୍ ପୃଥିବ୍ୟଂ ସର୍ବମାନବାଃ ।।''

ଆଚାର୍ଯ୍ୟ ମନୁଙ୍କ ଭାଷାରେ ଆମର ଏହି ଭାରତବର୍ଷ ନିଜର ବୌଦ୍ଧିକ ବିଚାରରେ ଏପରି ମହିମାନ୍ୱିତ ଥିଲା ଯେ ସମଗ୍ର ବିଶ୍ୱମାନବକୁ ନୈତିକ ଶିକ୍ଷାଦ୍ୱାରା ପ୍ରଭାବିତ କରି ରାଷ୍ଟ୍ରଗୁରୁ ରୂପେ ମାନ୍ୟତା ଲାଭ କରିଥିଲା । ହଜାର ହଜାର ବର୍ଷ ପୂର୍ବରୁ ମହର୍ଷି ମନୁ, ଯାଜ୍ଞବଲକ୍ୟ, ପରାଶର ପ୍ରଭୃତି ମହାମନୀଷିଗଣ ବିଶ୍ୱଜନତାକୁ ନୀତିମୟ ଜୀବନଯାପନ ନିମିତ୍ତ ନିଜ ନିଜର ବେଦୋଜ୍ଜ୍ୱଳ ବାଣୀ ଶୁଣାଇ ଥିଲେ । ଉଦାର ମାନବିକତା, ସମ୍ବେଦନଶୀଳତା ପ୍ରଭୃତି ଅତିମାନବୀୟ ଗୁଣରେ ଭାରତବର୍ଷର ଚାରିତ୍ରିକ ମହତ୍ତ୍ୱ ଥିଲା ଉତ୍ତରଣଶୀଳ । ଆଜି ଭୌତିକ ସଭ୍ୟତାର

ଅପସଂସ୍କୃତି, ଅତୀତର ସାର୍ବଜନୀନ – ମାନବିକ ମୂଲ୍ୟବୋଧରୁ ଆମକୁ କ୍ରମଶଃ ଦୂରକୁ ନେଇଯାଇଅଛି।

ବର୍ତ୍ତମାନ ଦୁର୍ନୀତିର ବିଷ ବଳୟରେ ଆମର ସମାଜ ଜୀବନ, ଆଧାତ୍ମିକ ମାର୍ଗରୁ କ୍ରମେ କ୍ରମେ ବିଚ୍ୟୁତ ହେବାରେ ଲାଗିଛି। ବିଭିନ୍ନ ପଦପଦବୀରେ ଥିବା ତୁଙ୍ଗ ବ୍ୟକ୍ତି, ରାଜନେତା, ବିଧାୟକ ଓ ମନ୍ତ୍ରୀଗଣ ଦେଶର ଧନକୁ ଲୁଟ୍ କରିବା ପାଇଁ ଦୁର୍ନୀତିର ଜାଲରେ ଛନ୍ଦି ହୋଇଯାଇଛନ୍ତି। ସର୍ବୋଚ୍ଚ ନ୍ୟାୟାଳୟର ଦରବାରରେ ଏହି ତଥାକଥିତ ନେତୃବୃନ୍ଦ ଅପରାଧର ବିଷଚକ୍ରରେ ପଡ଼ି ଯେଭଳି ଲାଞ୍ଛିତ ଓ ଦଣ୍ଡିତ ହେଉଛନ୍ତି, ତାହା ପରାଧୀନ ଭାରତବର୍ଷରେ କେବେ ଘଟି ନଥିଲା। କିନ୍ତୁ ଆଶ୍ଚର୍ଯ୍ୟର କଥା ଗ୍ରାମୀଣ ଭାରତବର୍ଷର ନିମ୍ନସ୍ତରରେ ଥିବା ଜନଗଣଙ୍କଠାରେ ସତ୍ୟ, ନ୍ୟାୟ, ସେବା, ତ୍ୟାଗ ଓ ନିର୍ଲୋଭ ପ୍ରଭୃତି ମୂଲ୍ୟବୋଧ ଏବେ ମଧ୍ୟ ଉଜ୍ଜୀବିତ, ଯେଉଁମାନଙ୍କର ଆଧାତ୍ମିକ ପୁଣ୍ୟ ପ୍ରବାହରେ ଏ ଦେଶ ତିଷ୍ଠି ରହିଛି ବୋଲି କହିବାକୁ ହେବ।

ପୃଥିବୀର ସର୍ବବୃହତ୍ ଗଣତାନ୍ତ୍ରିକ ରାଷ୍ଟ୍ର ଭାବରେ ଭାରତର ଏକ ସ୍ୱତନ୍ତ୍ର ଐତିହ୍ୟ ରହିଛି। ଏବେ ପ୍ରତିଦିନ ସମ୍ବାଦପତ୍ରଟିଏ ଖୋଲିବା ମାତ୍ରେ ହତ୍ୟା, ଧର୍ଷଣ, ଡକାୟତି, ଜାଲିୟାତି, ବଧୂହତ୍ୟା ରାଜନୈତିକ ସଂଘର୍ଷ ଇତ୍ୟାଦି ଅଶାଳୀନ ଗଣଦେବତାମାନଙ୍କର ଅଜସ୍ର ନିର୍ଲ୍ଲଜ କାହାଣୀ ଉପରେ ପ୍ରଥମେ ନଜର ପଡ଼ିବ। ଏଥିପାଇଁ ପ୍ରଥମେ ତଦନ୍ତ କମିଶନ, କ୍ରାଇମବ୍ରାଞ୍ଚ, ସିବିଆଇ ପ୍ରଭୃତି ମାଧ୍ୟମରେ ବିଚାରପାଇଁ ରାଜକୋଷରୁ ବିପୁଳ ଅର୍ଥଶ୍ରାଦ୍ଧ । ଶେଷରେ ଗୋଟାପଣେ ତୁଳସୀ ହୋଇ ସେହି ତଥାକଥିତ ନେତାମାନେ ଆମପରି ଦଳେ ସ୍ତାବକଙ୍କଦ୍ୱାରା ଯେପରି ସମ୍ବର୍ଦ୍ଧିତ ହେଉଛନ୍ତି, ତାହା ମଧ୍ୟ ଆହୁରି ହାସ୍ୟାସ୍ପଦ। ଦେଶର ବିକାଶ ପାଇଁ ସବୁଠାରୁ ଅପରିହାର୍ଯ୍ୟ ଶିକ୍ଷା–ବ୍ୟବସ୍ଥା ଓ ସ୍ୱାସ୍ଥ୍ୟ ସେବା ଆଜି ଦାରୁଣ ବିପର୍ଯ୍ୟୟର ସମ୍ମୁଖୀନ ହୋଇଛି। ବିଦ୍ୟାଳୟରେ ଶିକ୍ଷକ ଅଛନ୍ତି, ପାଠ ନାହିଁ। ଡାକ୍ତରଖାନାରେ ଡାକ୍ତର ଅଛନ୍ତି, ସେବା ନାହିଁ। ଦେଶରେ ଅଗଣିତ ନେତା ଅଛନ୍ତି କିନ୍ତୁ ଜନତା ଜନାର୍ଦ୍ଦନର ସେବାପାଇଁ ସେଭଳି ହୃଦୟବତ୍ତା ବା ଗାନ୍ଧୀ, ଗୋପବନ୍ଧୁ ପରି ନେତା ନାହାଁନ୍ତି। ସବୁ ଜାଗାରେ ଏକ ବିରାଟ ଶୂନ୍ୟତା। ବର୍ତ୍ତମାନ ଦେଶର ପୁରୋଭାଗରେ ଥିବା ନେତୃବୃନ୍ଦ ଯେପରିକି ପୁରୁଷାନୁକ୍ରମେ ଆମଭଳି ସ୍ତାବକମାନଙ୍କୁ ଶାସନ କରିବାପାଇଁ ପଟ୍ଟା ନେଇଛନ୍ତି। ଦେଶର ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥା ଧୂଳିସାତ୍ ହୋଇ ଯାଇଅଛି। ଅତୀତର ରାଜତନ୍ତ୍ର ଶାସନର ଦୋଷ ଦୁର୍ବଳତା ସତ୍ତ୍ୱେ ଯାହାକିଛି ମୂଲ୍ୟବୋଧ ଥିଲା, ଆଜି ବି ସେସବୁ କେଉଁଠି ହେଲେ ଦେଖିବାକୁ ମିଳୁନାହିଁ। ବରଂ ଆଜିର ଲୋକେ ରାଜତନ୍ତ୍ର ଶାସନର ସ୍ତୁତିଚାରଣ କରି ଅତୀତର ଗୌରବ ଗାନ କରିଥାନ୍ତି।

ଅତୀତର ପ୍ରେକ୍ଷାପଟରେ ଯେଉଁସବୁ ସ୍ଥାପତ୍ୟ, ଭାସ୍କର୍ଯ୍ୟ ଚାରୁକଳା ଦିନେ ଓଡ଼ିଆ ସ୍ୱାଭିମାନର ସ୍ୱାକ୍ଷର ଦେଇଥିଲା, ଆଜି ସେସବୁ ଗୁଳ୍ମାଛାଦିତ ବା ଅବକ୍ଷୟମୁଖୀ। କୋଣାର୍କ, ଭୁବନେଶ୍ୱର ଓ ପୁରୀ ଶ୍ରୀମନ୍ଦିର ପ୍ରଭୃତି ସଂଖ୍ୟାତୀତ ରାଜକୀୟ କୀର୍ତ୍ତି ପାଇଁ ଆମ ନେତାମାନେ ବିଦେଶୀ ପର୍ଯ୍ୟଟକଙ୍କ ନିକଟରେ ବେଶ୍ ବାହାଦୂରୀ ନେଉଥିବାବେଳେ ସେଗୁଡ଼ିକର ରକ୍ଷଣାବେକ୍ଷଣ ପାଇଁ ସେଭଳି ଗୁରୁତ୍ୱ ଦିଆଯାଉନାହିଁ। ଏ ଜାତିର ଗର୍ବ ପୁରୀ ଶ୍ରୀଜଗନ୍ନାଥ ମନ୍ଦିର ବିଭିନ୍ନ କାରଣରୁ ଆଜି ଚରମ ଦୁର୍ଗତିର ସମ୍ମୁଖୀନ। ଏହିଭଳି ଏକ ଦୁର୍ଦ୍ଦିନରେ ସମଗ୍ର ଓଡ଼ିଆ ଜାତିକୁ ଏବେ ସର୍ବମାନ୍ୟ ଗଜପତିଙ୍କର ଆହ୍ୱାନ ବିଶେଷ ପ୍ରଣିଧାନଯୋଗ୍ୟ।

ମହାତ୍ମା ଗାନ୍ଧୀଙ୍କର ତପୋଲବ୍ଧ ସ୍ୱାଧୀନତା ଆଜି ସ୍ୱାର୍ଥପ୍ରଣୋଦିତ ରାଜନେତାଙ୍କ ହାତମୁଠାରେ । ଦୁର୍ନୀତିର ବିଷବଳୟରେ ପଡ଼ି ସମାଜର ଅଗ୍ରଗଣ୍ୟ ବ୍ୟକ୍ତିଗଣ ଯେକୌଣସି ଜଘନ୍ୟ କାର୍ଯ୍ୟ କରିବାକୁ ଲଜ୍ଜାଜନକ ବୋଲି ଭାବୁନାହାଁନ୍ତି। ଏ ପରିପ୍ରେକ୍ଷୀରେ ବର୍ତ୍ତମାନର ମୁଖ୍ୟ ନିର୍ବାଚନ ଆୟୋଗଙ୍କ ଟିପ୍‌ପଣୀ ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ। ତାଙ୍କ ମତରେ ରାଜନେତାମାନେ ଆମ ଗଣତନ୍ତ୍ରକୁ କର୍କଟ ରୋଗ ଭଳି ତିଳ ତିଳ କରି ଗ୍ରାସ କରିବାରେ ଲାଗିଛନ୍ତି। ଗଣତନ୍ତ୍ର ବା ଜନକଲ୍ୟାଣ ପାଇଁ ସେମାନଙ୍କର ଯେଉଁ ଅଙ୍ଗୀକାରବଦ୍ଧତା ରହିବା କଥା ତାହା ଆଜି ଦିବାସ୍ୱପ୍ନରେ ପରିଣତ ହୋଇଛି। କ୍ଷମତା ଓ ବାହୁବଳରେ ରାଜ୍ୟର ସମ୍ବଳ ଓ ସାମର୍ଥ୍ୟକୁ ସେମାନେ ଯେପରି ଶୋଷଣ କରିବାରେ ଲାଗିଛନ୍ତି ତାର ତୁଳନା ନାହିଁ ।

ବର୍ତ୍ତମାନ ପାଶ୍ଚାତ୍ୟ ସଭ୍ୟତାର ପ୍ରାବଲ୍ୟ ଭାରତୀୟ ସ୍ୱାଭିମାନକୁ ପ୍ରତି ପଦକ୍ଷେପରେ ପ୍ରତିହତ କରିବାରେ ଲାଗିଛି। ଖାଦ୍ୟପାନୀୟ, ପୋଷାକ ବେଶଭୂଷା, ଆଚାର ବ୍ୟବହାର ଆଜି ସବୁ ପାଶ୍ଚାତ୍ୟମୁଖୀ। ହଜାର ହଜାର ବର୍ଷ ତଳର ଆମ ଧର୍ମ ଧାରଣା ପାଶ୍ଚାତ୍ୟ ରାଷ୍ଟ୍ରରେ ଅଭିନନ୍ଦିତ ହେଉଥିଲାବେଳେ ଆମେ ନିର୍ବିଚାରରେ ଆମ ମୌଳିକ ତତ୍ତ୍ୱକୁ ପ୍ରତ୍ୟାଖ୍ୟାନ କରି ଅପସଂସ୍କୃତି ଆଡ଼କୁ ଆଗେଇ ଚାଲିଛୁ। ବ୍ରିଟିଶ ଶାସନାଧୀନ ଭାରତବର୍ଷରେ ଆମର ଧର୍ମ ଧାରଣା ଓ ଆଚାର ବିଚାର ଉପରେ କୌଣସି ପ୍ରକାର ଆଞ୍ଚ ଆସି ନଥିବାବେଳେ ଏବେ କିନ୍ତୁ ଆମେ ଆମର ପରମ୍ପରାରୁ ବିଚ୍ୟୁତ ହୋଇ ସେମାନଙ୍କ ଚଳଣୀକୁ ଆପଣାଇ ନେଲୁଣି। ଆଶ୍ଚର୍ଯ୍ୟର କଥା, ସେମାନଙ୍କ ନିକଟରେ ଯେଉଁ

ସମୟାନୁବର୍ତ୍ତିତା ଓ କର୍ତ୍ତବ୍ୟ ପରାୟଣତା ଇତ୍ୟାଦି ମହନୀୟ ଗୁଣ ଥିଲା, ଆମେ ସେଥିରୁ କାଣିଚାଏ ହେଲେ ଶିକ୍ଷା ଗ୍ରହଣ କରିପାରି ନାହୁଁ।

ସମାଜର କ୍ରମିକ ବିକାଶରେ ନିଜସ୍ୱ ଭାଷା, ସାହିତ୍ୟ, ସଂସ୍କୃତି ଓ ଧର୍ମର ଯେଉଁ ଆନୁଷଙ୍ଗିକ ବିଚାର ବିମର୍ଷ ଆବଶ୍ୟକ ଏବେ ତା'ର ଯଥାର୍ଥ ଅନୁଶୀଳନ ହୋଇପାରୁନାହିଁ। ମା, ମାତୃଭାଷା, ମାତୃଭୂମି– ଏ' ତିନୋଟିକୁ ଆଜିର ମଣିଷ ଭୁଲିଯାଇଛନ୍ତି। ଜାତି ବଡ଼ହୁଏ ତା'ର ଭାଷା ଓ ସାହିତ୍ୟକୁ ନେଇ। କିନ୍ତୁ ଆଜି ଆମର ରାଶି ରାଶି ଉଚ୍ଚାଙ୍ଗ ସାହିତ୍ୟ ଦାରୁଣ ବିପର୍ଯ୍ୟୟର ସମ୍ମୁଖୀନ। ମାଧ୍ୟମିକ ସ୍ତରରୁ ବିଶ୍ୱବିଦ୍ୟାଳୟ ପର୍ଯ୍ୟନ୍ତ କେଉଁଠି ହେଲେ ଓଡ଼ିଆ ଭାଷା ସାହିତ୍ୟ ଉପରେ ସେଭଳି ଗୁରୁତ୍ୱ ଦିଆଯାଉନାହିଁ। ଭାଷା, ସାହିତ୍ୟର ସୁରକ୍ଷାପାଇଁ ସ୍ଲୋଗାନ ଦେଉଥିବା ତଥା କଥିତ ନେତୃବୃନ୍ଦ ନିଜ ପିଲାମାନଙ୍କୁ ମାତୃଭାଷା ଶିକ୍ଷାରୁ ବଞ୍ଚିତ କରି ଇଂରାଜୀ ମାଧ୍ୟମ ସ୍କୁଲରେ ପଢ଼ାଉଛନ୍ତି। ଆମର ନାମ ଫଳକ ଓ ନିମନ୍ତ୍ରଣ ପତ୍ର ଇଂରାଜୀରେ ଛାପି ଆମେ ଆଭିଜାତ୍ୟର ପରିଚୟ ଦେଉଥିବା ବେଳେ ସଭାସମିତିମାନଙ୍କରେ ଭାଷା ସାହିତ୍ୟର ସୁରକ୍ଷା ପାଇଁ ଲମ୍ବା ଲମ୍ବା ବକ୍ତୃତା ଦେବାରେ ଲାଗିଛୁ।

ଏବେ ଧାର୍ମିକ ସଂସ୍କାର ପାଇଁ ବିଭିନ୍ନ ସ୍ଥାନରେ ଧର୍ମସଭା ପ୍ରବଚନ ଓ ମୂର୍ତ୍ତିପୂଜାମାନ ଅନୁଷ୍ଠିତ ହେଉଅଛି। ଏଥିରେ ଆଧ୍ୟାତ୍ମିକ ଚିନ୍ତନ ତ ନାହିଁ ଅଧିକନ୍ତୁ ନୃତ୍ୟଗୀତ ସୁରାର ଉତ୍କଟ ସ୍ୱୈରାଚାରରେ ଜନଜୀବନ ଅତ୍ୟନ୍ତ ଦୁର୍ବିସହ ହୋଇଉଠୁଛି।

କେବଳ ବ୍ୟବସାୟିକ ଦୃଷ୍ଟିକୋଣରୁ ଧର୍ମ ନାମରେ ଲୋକମାନଙ୍କଠାରୁ ଅର୍ଥଶୋଷଣକରି କେତେକ ସ୍ୱାର୍ଥାନ୍ୱେଷୀ ବାବା ନାମଧାରୀ ବ୍ୟକ୍ତି ସମାଜରେ ଆତଙ୍କ ସୃଷ୍ଟି କରି ଚାଲିଛନ୍ତି। ତା'ଛଡ଼ା ଗଣମାଧ୍ୟମଗୁଡ଼ିକ ନାନା ପ୍ରକାର ବିକୃତ ନଗ୍ନ ଦୃଶ୍ୟ ତଥା ବିଜ୍ଞାପନ ମାଧ୍ୟମରେ ଆମ ଯୁବ ସମାଜକୁ ଆଧ୍ୟାତ୍ମିକ ମାର୍ଗରୁ ବିଚ୍ୟୁତ କରିବାରେ ଲାଗିଛନ୍ତି। ଏହିପରି ଏକ ଅବକ୍ଷୟମୁଖୀ ସମାଜରେ ଆମର ସାଂପ୍ରତିକ ସ୍ଥିତି ଦୋଦୁଲ୍ୟମାନ।

ରୁଗ୍‌ଣ ମାନସିକତାରେ ଜର୍ଜରିତ ଏଭଳି ଏକ ସମାଜକୁ ରକ୍ଷା କରିବାକୁ ହେଲେ ଆମର ଆଧ୍ୟାତ୍ମିକତା ଏକାନ୍ତ ଧ୍ୟେୟ, ଯାହାକି ପ୍ରାଚୀନ ଭାରତର ମୂଳମନ୍ତ୍ର ଥିଲା । ଦୂରଦ୍ରଷ୍ଟା ମୁନିଋଷି, ସନ୍ଥମାନଙ୍କର ଜନ୍ମଭୂମି ଏହି ଭାରତବର୍ଷର ଗୌତମ ବୁଦ୍ଧ, ଆଚାର୍ଯ୍ୟ ଶଙ୍କର, ମହର୍ଷି ଅରବିନ୍ଦ, ସ୍ୱାମୀ ବିବେକାନନ୍ଦ ଓ ରାମକୃଷ୍ଣ ପରମହଂସ ପ୍ରଭୃତି ମହାମନୀଷିଗଣ ଜନ୍ମ ଲାଭ କରି ଯେଉଁ ଦିବ୍ୟ ଭାବନାରେ ଭାରତୀୟମାନଙ୍କୁ ଅଭିମନ୍ତ୍ରିତ କରିଥିଲେ ଏବେ ତାର ଯଥାର୍ଥ ଅନୁଶୀଳନ ହେବା ଉଚିତ। ଆମର ଏହି ଓଡ଼ିଶାରେ ବୌଦ୍ଧ ଜୈନ ଶୈବ ଶାକ୍ତ ସୌର ଗାଣପତ୍ୟ ଓ ବୈଷ୍ଣବ ପ୍ରଭୃତି ଧର୍ମର ଦିନେ ଅଭିବୃଦ୍ଧି ଘଟି ଜଗନ୍ନାଥ କୈନ୍ଦ୍ରିକ ବୈଷ୍ଣବ ଧାରାରେ ନିଜକୁ ସମନ୍ୱିତ କରିଥିଲା । ସାର୍ବଜନୀନ ପ୍ରେମ ମୈତ୍ରୀ କରୁଣା ଓ ସଂହତି ମଧ୍ୟରେ 'ବସୁଧୈବ କୁଟୁମ୍ବକମ୍' ପ୍ରଚାର କରି ଜାତି, ବର୍ଣ୍ଣ, ଧର୍ମ, ନିର୍ବିଶେଷରେ ସମସ୍ତଙ୍କ ମଧ୍ୟରେ ଏକ ଉଚ୍ଚ ପରମ୍ପରା ପ୍ରତିଷ୍ଠା କରିଥିଲା । ଏହି ଉଦାର ଜଗନ୍ନାଥ ଚେତନାରେ ବିଭିନ୍ନ ଧର୍ମ, ସମ୍ପ୍ରଦାୟ ଓ ସଂସ୍କୃତି ଯେପରି ଏକାକାର ହୋଇଯାଉଥିଲେ ସେଭଳି ଦୃଷ୍ଟାନ୍ତ ବିଶ୍ୱ ଇତିହାସରେ ମଧ୍ୟ ବିରଳ । ଏଭଳି ଏକ ଆଧ୍ୟାତ୍ମିକ ମନନ ଶୀଳତାରେ ମହିମାନ୍ୱିତ ସାମ୍ପ୍ରତିକ ସମାଜ କ୍ରମେ କ୍ରମେ ବିପର୍ଯ୍ୟସ୍ତ ହେବାରେ ଲାଗିଛି କାହିଁକି ? ତା'ର ଗୋଟିଏ ମାତ୍ର ଉତ୍ତର ଚରିତ୍ର ଭିତ୍ତିକ ଶିକ୍ଷାପଦ୍ଧତି ଓ ଆଦର୍ଶର ଘୋର ସଂକଟ । ସ୍ୱାମୀ ବିବେକାନନ୍ଦଙ୍କ ଭାଷାରେ, ପୂର୍ଣ୍ଣାଙ୍ଗ ମଣିଷଟିଏ ଗଢ଼ିବାକୁ ହେଲେ ଶିକ୍ଷାରେ ଆଧ୍ୟାତ୍ମିକତାର ସମନ୍ୱୟର ଯେପରି ଆବଶ୍ୟକ, ସେହିପରି ଚରିତ୍ରବାନ୍ ଛାତ୍ରବତ୍ସଳ ଓ ସଦାଚାରସମ୍ପନ୍ନ କ୍ରାନ୍ତଦର୍ଶୀ ଗୁରୁକୁଳ ମଧ୍ୟ ଏକାନ୍ତ କାମ୍ୟ ।

ଚରିତ୍ରବତ୍ତା, ନୈତିକତା ତଥା ମୂଲ୍ୟବୋଧର ଅଭ୍ୟୁତ୍ଥାନ ପାଇଁ ଦେଶର ବୁଦ୍ଧିଜୀବୀ, ଶିକ୍ଷାବିତ୍‌ମାନେ ଉପଯୁକ୍ତ ଶିକ୍ଷା ପଦ୍ଧତିର ନିର୍ମାଣ ଦିଗରେ ଏବେ ବିଚାର ବିମର୍ଶ କରିବାର ସମୟ ଆସିଛି । ମାନବ ସମ୍ବଳର ବିକାଶ ନ ଘଟିଲେ ଭାବି ବଂଶଧରମାନଙ୍କର ଉଜ୍ଜ୍ୱଳ ଭବିଷ୍ୟତ ନଷ୍ଟ ହେବା ସଂଗେ ସଂଗେ ସାମ୍ପ୍ରତିକ ସମାଜ ଆହୁରି ବିପର୍ଯ୍ୟସ୍ତ ହୋଇପଡ଼ିବ । ତେଣୁ ଏଭଳି ଏକ ଘଡ଼ିସନ୍ଧି ମୁହୂର୍ତ୍ତରେ ନାଗରିକମାନେ ସମସ୍ତ ସଂକୀର୍ଣ୍ଣତାକୁ ପଛରେ ପକାଇ ସଂସ୍କାରମୁଖୀ ସମାଜ ଗଠନରେ ନିଜ ନିଜକୁ ସାମିଲ କରିବାକୁ ଆଗେଇ ଆସନ୍ତୁ ।

'ଚନ୍ଦ୍ରାଳୟ', ସେଲ୍‌ଟର ଛକ,
ତୁଳସୀପୁର, କଟକ– ୭୫୩୦୦୮

# ଗାନ୍ଧୀବାଦର ବାସ୍ତବ ପ୍ରୟୋଗଶାଳା: ବରଗଡ ଜିଲ୍ଲାର ପାଣିମୋରା ଗ୍ରାମ

ଅଧ୍ୟାପକ ପବିତ୍ର ମୋହନ ବାରିକ

ଦୁର୍ଦ୍ଧର୍ଷ ଇଂରେଜ ଶକ୍ତି ବିରୋଧରେ ଭାରତଛାଡ ଆନ୍ଦୋଳନର ମହାନାୟକ ମହାତ୍ମା ଗାନ୍ଧୀଙ୍କର ସର୍ବଶେଷ ଓ ସର୍ବଶ୍ରେଷ୍ଠ ରାଜନୈତିକ ଅସ୍ତ୍ର । ସତ୍ୟ ଓ ଅହିଂସାର ପୂଜାରୀ ମହାତ୍ମା ଗାନ୍ଧୀଙ୍କର ଭାରତଛାଡ ଆନ୍ଦୋଳନର ମହାମନ୍ତ୍ର କର ବା ମରକୁ ସମଗ୍ର ଦେଶବାସୀ ମୁକ୍ତ କଣ୍ଠରେ ଉଚ୍ଚାରଣ କରିଥିଲେ । ଚିର ଆକାଂକ୍ଷିତ ଏହି ଅଦମ୍ୟ ଆନ୍ଦୋଳନ ଭାରତବର୍ଷର ଇତିହାସ ପୃଷ୍ଠାକୁ ମଣ୍ଡନ କରିଛି ତାହା ନୁହେଁ, ସମଗ୍ର ବିଶ୍ୱ ଇତିହାସର ଏକ ବିସ୍ଫୋରକ ଘଟଣା ରୂପେ ବିବେଚିତ । ଏହି କାଳଜୟୀ ତଥା ଯୁଗାନ୍ତକାରୀ ଆନ୍ଦୋଳନର ବାର୍ତ୍ତା, ଗୁରୁତ୍ୱ, ମହତ୍ୱ, ଫଳାଫଳ ଓ ଶ୍ରେଷ୍ଠତାକୁ ବିଚାରକୁ ନେଲେ ବିଶ୍ୱର ପ୍ରମୁଖ ମୁକ୍ତି ଆନ୍ଦୋଳନ ସହିତ ସମତୁଲ୍ୟ । ୧୭୮୩ ଖ୍ରୀଷ୍ଟାବ୍ଦର ଆମେରିକା ସ୍ୱାଧୀନତା ସଂଗ୍ରାମ, ୧୭୮୯ ଖ୍ରୀଷ୍ଟାବ୍ଦର ଫରାସୀ ରାଷ୍ଟ୍ର ବିପ୍ଳବ ଓ ୧୯୧୭ ଖ୍ରୀଷ୍ଟାବ୍ଦର ରୁଷ୍ ବିପ୍ଳବର ଦାର୍ଶନିକତ୍ୱ ସହିତ ମହାତ୍ମା ଗାନ୍ଧୀଙ୍କ ଅଧିନାୟକତ୍ୱରେ ଆରମ୍ଭ ହୋଇଥିବା ଭାରତର ଲୋମହର୍ଷକାରୀ ଭାରତଛାଡ ଆନ୍ଦୋଳନର ନିବିଡ ସଂପର୍କ ରହିଛି । ସାମ୍ୟ, ମୈତ୍ରୀ, ମୁକ୍ତି ଏ ସମସ୍ତ ଆନ୍ଦୋଳନର ବୀଜମନ୍ତ୍ର । ନିଃସ୍ୱାର୍ଥପର ସଂଘର୍ଷ, ନିର୍ଭୟ ସଂଗ୍ରାମ ଓ ନିର୍ଲୋଭ ବଳିଦାନର ଅନ୍ୟନାମ ମହାପୁରୁଷ ମହାତ୍ମା ଗାନ୍ଧୀଙ୍କ ସଫଳ ନେତୃତ୍ୱରେ ଆରମ୍ଭ ହୋଇଥିବା ଭାରତଛାଡ ଆନ୍ଦୋଳନ । ଗାନ୍ଧିଜୀଙ୍କ ନିଷ୍ପତ୍ତିକୁ ଭାରତର ମୁକ୍ତିକାମୀ, ଦେଶପ୍ରେମୀ ଜନତା ଭାରତଛାଡ ଆନ୍ଦୋଳନ ରୂପକ ମହାଯଜ୍ଞରେ ନିଜକୁ ଆତ୍ମାହୁତି ଦେଇଥିଲେ । ଗାନ୍ଧିଜୀଙ୍କର ଆଦର୍ଶକୁ ପାଥେୟ କରି ବରଗଡ ଜିଲ୍ଲା ପାଣିମୋରା ଗ୍ରାମର କେତେଜଣ ବରେଣ୍ୟ ଦେଶଭକ୍ତ ୧୯୪୦ ମସିହାର ଯୁଦ୍ଧ ବିରୋଧୀ ବ୍ୟକ୍ତିଗତ ସତ୍ୟାଗ୍ରହ ଓ ୧୯୪୨ ମସିହାର ଭାରତଛାଡ ଆନ୍ଦୋଳନରେ ଯୋଗଦାନ କରିଥିଲେ । ସେଦିନର ଅଖ୍ୟାତ ପଲ୍ଲୀ ପାଣିମୋରା ଗାନ୍ଧିଜୀଙ୍କ ସତ୍ୟ, ଅହିଂସା ଓ ସତ୍ୟାଗ୍ରହକୁ ଜୀବନର ଆଦର୍ଶ ରୂପେ ଗ୍ରହଣକରି ମୁକ୍ତିଯୁଦ୍ଧର ଆଜୀବନ ସଂଗ୍ରାମୀ ରୂପେ ନିଜକୁ ସମର୍ପିତ କରିଥିଲେ । ପରବର୍ତ୍ତୀ ସମୟରେ ସେହି ଅଖ୍ୟାତ ପଲ୍ଲୀ ବିଖ୍ୟାତ ସଂଗ୍ରାମୀ ପୀଠ ଭାବରେ ସ୍ୱତନ୍ତ୍ର ସ୍ୱାକ୍ଷର ନିଜ ଶରୀରରେ ଧାରଣ କରିଛି । ସେଦିନ ଗାନ୍ଧିଜୀଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ଗ୍ରାମବାସୀମାନେ ଦେଶ ଭକ୍ତିର ପ୍ରକୃତ ପରିଚୟ ପ୍ରଦାନ କରିଥିଲେ । ଆଜି ମଧ୍ୟ ଗାନ୍ଧୀବାଦର ବାସ୍ତବ ପ୍ରୟୋଗଶାଳା ରୂପେ ପାଣିମୋରା ଗ୍ରାମ ନିଜ ନାମକୁ ସର୍ବାଗ୍ରେ ରଖିବାରେ ସମର୍ଥ ହୋଇପାରିଛି । ବରଗଡ ଜିଲ୍ଲାର ସୋହେଲା ବ୍ଲକ୍ ଅନ୍ତର୍ଗତ ପାଣିମୋରା ଗ୍ରାମ ଗାନ୍ଧିଜୀଙ୍କ ପରିକଳ୍ପିତ ଏକ ଆଦର୍ଶ ଗ୍ରାମ । ଅତୀତର ସଂଗ୍ରାମୀ ଯୁଗର ନିର୍ଭୀକ ସୈନିକ ଭାବେ ପାଣିମୋରା ଗ୍ରାମର ୩୨ଜଣ ଉତ୍ସାହୀ ଯୁବକ ଭାରତଛାଡ ଆନ୍ଦୋଳନ ରୂପକ ମହାସଂଗ୍ରାମରେ ଅଂଶଗ୍ରହଣ କରି କାଳଜୟୀ ଇତିହାସ ପୃଷ୍ଠାରେ ନିଜ ନାମ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ କଲେ । ପାଣିମୋରା ଗ୍ରାମର ଜାତୀୟବାଦୀ କବି ଦିବ୍ୟ କିଶୋର ସାହୁଙ୍କ ଦିବ୍ୟ ସନ୍ଦେଶ ଓ ଚେତନା ଗ୍ରାମର ଉତ୍ସାହୀ ଯୁବକମାନଙ୍କୁ ଗାନ୍ଧୀବାଦ ପ୍ରତି ଆକୃଷ୍ଟ କରିଥିଲେ । କବି ଦିବ୍ୟ କିଶୋର ସାହୁଙ୍କର ସାନ୍ନିଧ୍ୟ ଲାଭ କରି ପାଣିମୋରା ଗ୍ରାମର ଯୁବଗୋଷ୍ଠୀ ଗାନ୍ଧୀ ମାହାତ୍ମାଙ୍କ ରଚନାତ୍ମକ କାର୍ଯ୍ୟ ପ୍ରତି ମନ ନିବେଶ କରିଥିଲେ । କବି ଦିବ୍ୟ କିଶୋର ସାହୁ ଗ୍ରାମରୁ ଅନ୍ଧବିଶ୍ୱାସ ଓ କୁସଂସ୍କାର ଦୂର କରିବା ଉଦ୍ଦେଶ୍ୟରେ ଅନେକ ରଚନାତ୍ମକ କାର୍ଯ୍ୟରେ ମନ ନିବେଶ କରିଥିଲେ । ୧୯୩୭ ମସିହାରେ ଦିବ୍ୟ କିଶୋର ସାହୁ ଗ୍ରାମର ଯୁବକମାନଙ୍କ ମଧ୍ୟରେ ଦେଶପ୍ରେମ, ଜାତିପ୍ରୀତି, ମାତୃଭୂମି ପ୍ରତି ଶ୍ରଦ୍ଧା ଭାବ ଜାଗ୍ରତ କଲେ । କବି ଦିବ୍ୟ କିଶୋର ସାହୁ ଅଖିଳ ଭାରତ କଂଗ୍ରେସ କମିଟିର ଅଧିବେଶନରେ ଯୋଗ ଦେବା ପାଇଁ ବିଜୟୱାଡା ଯାତ୍ରା କରିବା ସମୟରେ ବାଟରେ ଗାନ୍ଧିଜୀଙ୍କର ସଂସ୍ପର୍ଶରେ ଆସିଥିଲେ । ଏ ସଂପର୍କରେ ସେ ଭାରତ ଜୟଗାନ ନାମକ ଏକ ପୁସ୍ତକ ରଚନା

କରି ଗାନ୍ଧୀ ଆଦର୍ଶକୁ ସୁନ୍ଦର ଭାବରେ ବର୍ଣ୍ଣନା କରିଥିଲେ । ସେହି ସମର ଯୁଗରେ କବି ଦିବ୍ୟ କିଶୋର ସାହୁଙ୍କର ଅମର କବିତା ଯୁବକମାନଙ୍କୁ ଭାରତଛାଡ ଆନ୍ଦୋଳନରେ ଯୋଗ ଦେବା ପାଇଁ ପ୍ରେରଣା ଓ ଉତ୍ସାହ ସୃଷ୍ଟି କଲା । ପାଣିମୋରା ଗ୍ରାମର ୩୨ଜଣ ଯୁବ ସଂଗ୍ରାମୀ ଏକକାଳୀନ ସଂଗ୍ରାମରେ ଯୋଗ ଦେବା ସଂଗ୍ରାମ ଇତିହାସର ଏକ ବିରଳ ଦୃଷ୍ଟାନ୍ତ । ଗାନ୍ଧୀବାଦକୁ ଜୀବନର ଶ୍ରେଷ୍ଠ ସଂପଦ ରୂପେ ବିବେଚନା କରିଥିବା ସେହି ୩୨ଜଣ ଗାନ୍ଧୀଭକ୍ତଙ୍କ ମଧ୍ୟରୁ ବର୍ତ୍ତମାନ ତିନିଜଣ ଜୀବିତ ଅଛନ୍ତି । ଜିତେନ୍ଦ୍ରୀୟ ପ୍ରଧାନ ଓ ଉଦୟନାଥ ନାୟକ ସଂଗ୍ରାମୀ ଦ୍ୱୟ ବର୍ତ୍ତମାନ ପାଣିମୋରା ଗ୍ରାମରେ ଜୀବନର ଅପରାହ୍ନ ସମୟରେ ପଦାର୍ପଣ କରି ବିଗତ ସଂଗ୍ରାମୀ ଦିନର ଅଭୁଲା ସ୍ମୃତିକୁ ରୋମନ୍ଥନ କରୁଛନ୍ତି । ମଦନ ଭୋଇ ସମ୍ବଲପୁର ଜିଲ୍ଲା ବରଗାଁର ଛଚାନପାଲି ଆଶ୍ରମରେ ଅନ୍ତେବାସୀ ରୂପେ କାଳାତିପାତ କରୁଛନ୍ତି । ୨୦୦୯ ମସିହା ଅଗଷ୍ଟ ୯ କ୍ରାନ୍ତି ଦିବସ ଉପଲକ୍ଷେ ମହାମାନ୍ୟ ରାଷ୍ଟ୍ରପତିଙ୍କ ଦ୍ୱାରା ସମ୍ବର୍ଦ୍ଧିତ ହେବା ପାଇଁ ଦୟାନିଧି ନାୟକ ଦିଲ୍ଲୀ ଅଭିମୁଖେ ଯାତ୍ରା କରିବା ପୂର୍ବରୁ ବରଗଡ ଗାନ୍ଧୀଛକଠାରେ ଜାତିର ପିତା ଗାନ୍ଧିଜୀଙ୍କର ପ୍ରତିମୂର୍ତ୍ତିରେ ପୁଷ୍ପମାଲ୍ୟ ଅର୍ପଣ କରି ସାଂପ୍ରତିକ ସମୟର ଘଟଣାବଳୀ ପ୍ରତି ନିଜର କ୍ଷୋଭ ପ୍ରକାଶ କରିଥିଲେ । ଗାନ୍ଧିଜୀଙ୍କ କଳ୍ପିତ ରାମରାଜ୍ୟ ଓ ସ୍ୱରାଜ୍ୟ ଅପହଞ୍ଚ ଦୂରତାରେ କହି ସେ ଦୁଃଖରେ ମ୍ରିୟମାଣ ହୋଇ ପଡିଥିଲେ । ତଥାପି ସେ ଆଶାବାଦୀ ଥିଲେ ବର୍ତ୍ତମାନ ସମୟ ଅଛି ଯଦି ଯୁବ ସମାଜ ଗାନ୍ଧିଜୀଙ୍କ ପ୍ରଦର୍ଶିତ ମାର୍ଗରେ ପରିଚାଳିତ ହେବେ ତାହା ହେଲେ ଦେଶର ସମସ୍ତ ସମସ୍ୟା ଦୂର ହୋଇପାରିବ । ଅନ୍ୟ ଯେଉଁ ୨୯ଜଣ ସ୍ୱତନ୍ତ୍ର ସେନାନୀ ସଂଘର୍ଷ ଓ ସଂଗ୍ରାମ କରି କଷ୍ଟଲବ୍ଧ ସ୍ୱାଧୀନତା ପ୍ରଦାନ କରିଥିଲେ ଓ ଜୀବନବ୍ୟାପୀ ଗାନ୍ଧୀବାଦର ପ୍ରଚାରରେ ନିଜକୁ ଉତ୍ସର୍ଗୀକୃତ କରିଥିଲେ, ସେମାନେ ଆଜି ଏ ପାର୍ଥିବ ଜଗତରେ ନାହାଁନ୍ତି । ସେମାନେ ହେଲେ ଯଶୋବନ୍ତ ଭୋଇ, ଶ୍ୟାମସୁନ୍ଦର ସାହୁ, ଋଷି ସରାଫ, ଧନଞ୍ଜୟ ପ୍ରଧାନ, ଚୈତନ୍ୟ ସରାଫ, ରାଘବ ଚରଣ ପ୍ରଧାନ, ଡମ୍ବରୁଧର ଦେଓ୍ୱାନ, ଚମରୁ ପରିଡ଼ା, ଦିବ୍ୟ କିଶୋର ସାହୁ, ଫୁଲସର ପ୍ରଧାନ, ଶଙ୍କର ପ୍ରଧାନ, ଫକୀର ବେହେରା, ଧନ ସିଂ ପ୍ରଧାନ, ପ୍ରଭାକର ପ୍ରଧାନ, ପ୍ରଭାକର ସାହୁ, ପୂର୍ଣ୍ଣଚନ୍ଦ୍ର ପ୍ରଧାନ, ଶ୍ରୀବତ୍ସ ନାୟକ, ଧନୁ ସାହୁ, ଗୋକୁଳ ନାୟକ, ମଦନ ମୋହନ ପ୍ରଧାନ, କହ୍ନେଇ ଲାଲ ସାହୁ, ହରିହର ଭୋଇ, ଶାକ ସାରଣ ଭୋଇ, ଦଶରଥ ନାୟକ, ଏକରା ସାହୁ, ସୁନାଧର ସାହୁ, ଚନ୍ଦ୍ରଭାନୁ ପରଡିଆ, ମୀନ କେତନ ସରାଫ ଓ ଚୈତନ୍ୟ ସାହୁ । ପରାଧୀନତାର ଶୃଙ୍ଖଳକୁ ବିଚ୍ଛିନ୍ନ କରି ୧୯୪୭ ମସିହା ଅଗଷ୍ଟ ୧୫ ତାରିଖ ଦିନ ଭାରତ ତା'ର ବହୁ ପ୍ରତୀକ୍ଷିତ ସ୍ୱାଧୀନତାର ସ୍ୱାଦ ଅନୁଭବ କଲା । ଗଣ ସଂଗ୍ରାମର ଅବସାନ ପରେ ମଧ୍ୟ ପାଣିମୋରା ଗ୍ରାମର ସତୀର୍ଥ ସଂଗ୍ରାମୀମାନଙ୍କର ସଂଗ୍ରାମ କେବେ ପୂର୍ଣ୍ଣଚ୍ଛେଦ ପଡି ନଥିଲା । ଅର୍ଥ, କ୍ଷମତା ଓ ଭୋଗବିଳାସର ଲାଳସାକୁ ପରିହାର କରି ସେମାନେ ଜୀବନ ସର୍ବସ୍ୱ ଗାନ୍ଧୀବାଦ କାର୍ଯ୍ୟରେ ପୂର୍ଣ୍ଣ ପ୍ରାଣରେ ନିଜକୁ ହଜାଇ ଦେଇଥିଲେ । ସଂଗ୍ରାମୀମାନେ ଗାନ୍ଧିଜୀଙ୍କ ଆଦର୍ଶ ଓ ରଚନାତ୍ମକ କାର୍ଯ୍ୟ ସାଦରେ ଗ୍ରହଣ କରିଥିଲେ । ସାମାଜିକ ସଂସ୍କାର କ୍ଷେତ୍ରରେ କାର୍ଯ୍ୟ ଆରମ୍ଭ କରି ସଂଗ୍ରାମୀମାନେ ଉଲ୍ଲେଖନୀୟ ସଫଳତା ଅର୍ଜନ କରିଥିଲେ । ଅସ୍ପୃଶ୍ୟତା ଓ ନିଶା ନିବାରଣ, ହରିଜନମାନଙ୍କର ମନ୍ଦିରରେ ପ୍ରବେଶ ଓ ଖଦିର ପ୍ରସାର ଦିଗରେ ପାଣିମୋରା ଗ୍ରାମର ଗାନ୍ଧୀବାଦୀ ସଂଗ୍ରାମୀମାନେ ତପନିଷ୍ଠ ସାଧକ ଭାବରେ ନିରବଚ୍ଛିନ୍ନ ଉଦ୍ୟମ ଆରମ୍ଭ କରିଥିଲେ । ଓଡ଼ିଶାରେ ଗାନ୍ଧିଜୀଙ୍କର ହରିଜନ ପଦଯାତ୍ରା ସମୟରେ ପୁରୀ ଶ୍ରୀଜଗନ୍ନାଥ ମନ୍ଦିରରେ ପ୍ରବେଶ ପାଇଁ ଉତ୍କଳ କଂଗ୍ରେସ କମିଟି ଉଦ୍ୟମ ଆରମ୍ଭ କରିଥାଏ । କିନ୍ତୁ ଏହା ପୂର୍ବରୁ ପାଣିମୋରା ଗାନ୍ଧୀବାଦୀ ବ୍ୟକ୍ତିମାନଙ୍କ ଉଦ୍ୟମରେ ହରିଜନମାନେ ସେହି ଗ୍ରାମର ଶ୍ରୀଜଗନ୍ନାଥ ମନ୍ଦିରରେ ପ୍ରବେଶ କରି ପୂଜାର୍ଚ୍ଚନା କଲେ । ବରଗଡର ହରିଜନ ନେତା ବିଶି ବିଭାରଙ୍କ ନେତୃତ୍ୱରେ ହରିଜନମାନେ ଜଗନ୍ନାଥ ମନ୍ଦିରରେ ପ୍ରବେଶ କରି ସବର୍ଣ୍ଣମାନଙ୍କୁ ଫୁଲମାଳ ପ୍ରଦାନ କଲେ ଓ ଚନ୍ଦନ ଲଗାଇଥିଲେ । ଏ କାର୍ଯ୍ୟର ପ୍ରତିବାଦ କରି ଗ୍ରାମର ରକ୍ଷଣଶୀଳ ଗୌନ୍ତିଆ ନୃପରାଜ ପ୍ରଧାନ ଗାଁ ପରିତ୍ୟାଗ କରି ଘନାପାଲିରେ ବାସ କଲେ । ଗାନ୍ଧିଜୀଙ୍କର ମହାପ୍ରୟାଣ ପାଣିମୋରା ଗ୍ରାମର ଅଧିବାସୀମାନଙ୍କୁ ଗଭୀର ଭାବରେ ମର୍ମାହତ ଓ ବ୍ୟଥିତ କରିଥିଲା । ଗ୍ରାମବାସୀମାନେ ଗାନ୍ଧିଜୀଙ୍କର ଏକ ଫଟୋକୁ ଶୋଭାଯାତ୍ରାରେ ନେଇ ଗାଁର ବଡ ପୋଖରୀ କୂଳରେ ଦାହ ସଂସ୍କାର କରିଥିଲେ । ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ସମସ୍ତେ ମିଶି ରାନ୍ଧି ଖାଇ ଜାତିର ପିତାଙ୍କ ଦଶାହ କାର୍ଯ୍ୟ ସଂପନ୍ନ କରିଥିଲେ । ସେହିଦିନଠାରୁ ବର୍ତ୍ତମାନ ପର୍ଯ୍ୟନ୍ତ ଅନେକ ଗ୍ରାମବାସୀ ଗାନ୍ଧିଜୀଙ୍କର ନିଧନ ହୋଇଥିବା ସନ୍ଧ୍ୟାରେ ଉପବାସ ରହି ସାମୂହିକ ପ୍ରାର୍ଥନା କରିଥାନ୍ତି । ପ୍ରତି ଶୁକ୍ରବାର ଗାନ୍ଧୀ ଜୟନ୍ତୀ ଓ ଗାନ୍ଧୀଙ୍କର ଶ୍ରାଦ୍ଧଦିବସ ଦିନ ଗ୍ରାମରେ ଆମିଷ ନିଷେଧ । ପ୍ରତିଦିନ ପ୍ରତ୍ୟୁଷରେ ଗ୍ରାମର ରମଣୀମାନେ ନଦୀରେ ସ୍ନାନସାରି ଗାନ୍ଧିଜୀଙ୍କର ପ୍ରତିମୂର୍ତ୍ତିରେ ଜଳଦାନ କରିଥାନ୍ତି । ସ୍ୱାଧୀନତା ସଂଗ୍ରାମ ସମୟରେ ପାଣିମୋରା ଗ୍ରାମର ମନ୍ଦିରରେ ପ୍ରଚଳିତ ହୋଇ ଆସୁଥିବା ନାଗରା ବାଦନ, ପ୍ରଭାତ ଫେରି ଓ ଗାନ୍ଧୀ ଭଜନ ଏବେ ମଧ୍ୟ ଚାଲୁ ରହିଛି । ଗ୍ରାମର ଜଗନ୍ନାଥ

ମନ୍ଦିରରେ ପ୍ରତିଦିନ ନାଗରା ବାଜିବା ଦ୍ୱାରା ଗ୍ରାମବାସୀମାନେ ଏକତ୍ରିତ ହୋଇ ପ୍ରଭାତ ଫେରି କରିଥାନ୍ତି । ଏହାପରେ ଗାନ୍ଧିଜୀଙ୍କର ପ୍ରିୟ ଭଜନ ରଘୁପତି ରାଘବ ରାଜା ରାମ ଗାନ କରାଯାଏ । ସ୍ୱାଧୀନତା ସଂଗ୍ରାମ ସମୟରେ ବାଜୁଥିବା ନାଗରା ଏବେ ମଧ୍ୟ ବାଜି ବିଗତ ଦିନର ସଂସ୍କୃତିକୁ ଉଜ୍ଜୀବିତ କରୁଅଛି । ସଂଗ୍ରାମୀମାନେ ପାଣିମୋରା ଗ୍ରାମକୁ ଗାନ୍ଧୀଙ୍କର ଆଦର୍ଶରେ ପୁନଃଗଠନ କରିଥିଲେ । ଏବେ ମଧ୍ୟ ଗାନ୍ଧୀଙ୍କର ଦର୍ଶନ ଓ ଆଦର୍ଶ ପାଣିମୋରା ଗ୍ରାମରେ ଜୀବିତ ଅଛି । ପାଣିମୋରା ଗ୍ରାମର ଗାନ୍ଧୀବାଦୀ ସଂଗ୍ରାମୀ ଧନଞ୍ଜୟ ପ୍ରଧାନ ୧୯୪୯ ମସିହାରେ ସେବା ଗ୍ରାମକୁ ଯାଇ ତାଲିମ ନେଇଥିଲେ । ତାଲିମ କାର୍ଯ୍ୟକ୍ରମରେ ଅଂଶଗ୍ରହଣ କରିବା ପାଇଁ ସମଗ୍ର ଦେଶରୁ ମାତ୍ର ପାଞ୍ଚଜଣ ମନୋନୀତ ହୋଇଥିଲେ । ସେମାନଙ୍କ ମଧ୍ୟରେ ଧନଞ୍ଜୟ ଥିଲେ ଅନ୍ୟତମ । ସେ ସେଠାରେ ସେବା, ଚାଷ, ସୂତାକଟା ଓ ଲୁଗାବୁଣା ବିଷୟରେ ତାଲିମ ପାଇଥିଲେ । ଗାନ୍ଧୀ ଶୁଦ୍ଧିକ୍ରିୟାର ସ୍ମାରକୀ ରୂପେ ୧୯୫୮ ଖ୍ରୀଷ୍ଟାବ୍ଦରେ ଗ୍ରାମରେ ହରିଜନମାନଙ୍କର ମନ୍ଦିର ପ୍ରବେଶ ହୋଇଥିଲା । ଗାନ୍ଧିଜୀଙ୍କର ଜଣେ ସତୀର୍ଥ ଅନୁଗାମୀ ତଥା ଐତିହାସିକ ଭୂଦାନ ଆନ୍ଦୋଳନର ସ୍ରଷ୍ଟା ବିନୋବାଜୀ ୧୯୬୩ ମସିହାରେ ପାଣିମୋରାକୁ ଗ୍ରାମଦାନ ଘୋଷଣା କରାଯିବା ଖବର ପାଇ ସେ ତାଙ୍କର ପଦଯାତ୍ରା କାର୍ଯ୍ୟକ୍ରମରେ ପରିବର୍ତ୍ତନ କରି ଉକ୍ତ ଗ୍ରାମରେ ଉପସ୍ଥିତ ହେଲେ । ଗ୍ରାମର ୧୮ ଶହ ଏକର ଜମିରୁ ୧୨ଶହ ଏକର ଜମି ଗ୍ରାମସଭାର ଅନ୍ତର୍ଭୁକ୍ତ କରାଗଲା । ୧୯୬୩ ମସିହାରେ ତାଳପଟିଆଠାରେ ସର୍ବୋଦୟ ନେତା ସନ୍ଥ ବିନୋବାଜୀଙ୍କୁ ପାଣିମୋରା ଗ୍ରାମ ଦାନ କରାଯାଇ ତାଙ୍କ ହସ୍ତରେ କାଗଜପତ୍ର ପ୍ରଦାନ କରାଯାଇଥିଲା । ଆଚାର୍ଯ୍ୟ ହରିହର ଦାସ ପାଣିମୋରା ଗ୍ରାମରେ ଅବସ୍ଥାନ କରି ଗ୍ରାମବାସୀଙ୍କୁ ସର୍ବୋଦୟ ଚିନ୍ତାଧାରାରେ ଅନୁପ୍ରାଣିତ ହେବା ପାଇଁ ପରାମର୍ଶ ଦେଇଥିଲେ । ପାଣିମୋରା ଗ୍ରାମର ଶେଷରେ ଆଚାର୍ଯ୍ୟ ସାଗର ସରୋବର ଅବସ୍ଥିତ । ସେହି ସମୟରେ ପାଣିମୋରା ଗ୍ରାମର ନାମ ଆଚାର୍ଯ୍ୟପୁର ନାମରେ ନାମିତ ହୋଇଥିଲା । ବରଗଡ ସହରରୁ ଜାତୀୟ ରାଜପଥରେ ୪୦ କିମି ଦୂର ଅତିକ୍ରମ କଲାପରେ ପଡେ ସୋହେଲା ବ୍ଲକ୍ । ସେଠାରୁ ବାମକୁ ୧୨କିମି ଅତିକ୍ରମ କଲାପରେ ପଡେ ପାଣିମୋରା ଗ୍ରାମ । ସୁନ୍ଦର ପ୍ରାକୃତିକ ପରିବେଶ ମଧ୍ୟରେ ଐତିହ୍ୟ ସଂପନ୍ନ ଗ୍ରାମ ପାଣିମୋରା ଅବସ୍ଥିତ । ଗ୍ରାମର ଜନସଂଖ୍ୟା ୪ହଜାରରୁ ଅଧିକ । ଗ୍ରାମର କେନ୍ଦ୍ରରେ ରହିଛି ଜଗନ୍ନାଥ ମନ୍ଦିର । ମନ୍ଦିରର ଦୈନନ୍ଦିନ ପୂଜା ସହିତ ପ୍ରଭାତରେ ପ୍ରତିଦିନ ଗାନ୍ଧିଜୀଙ୍କ ଉଦ୍ଦେଶ୍ୟରେ ଆୟୋଜିତ ହୁଏ ପ୍ରାର୍ଥନା ସଭା । ଗାନ୍ଧୀବାଦୀ କବି ଦିବ୍ୟ କିଶୋର ସାହୁ ଗଡଜାତ ଅଞ୍ଚଳରେ ପରିବ୍ରାଜକ ବିଦ୍ୟାନନ୍ଦ ନାମରେ ପରିଚିତ ହେଲେ । ତାଙ୍କ ଅମ୍ଳାନ ସ୍ମୃତିର ଉଜ୍ଜୀବିତ ପାଇଁ ଗ୍ରାମରେ ସ୍ଥାପିତ ହୋଇଛି ବିଦ୍ୟାନନ୍ଦ ପାଠାଗାର । ପାଣିମୋରା ଗ୍ରାମଦାଣ୍ଡ ରାସ୍ତାର ଦୋଛକିରେ ଏକ ମଣ୍ଡପରେ ଗାନ୍ଧିଜୀଙ୍କର ପ୍ରତିମୂର୍ତ୍ତି ସ୍ଥାପନ କରାଯାଇଅଛି । ପ୍ରତିମୂର୍ତ୍ତିର ସମ୍ମୁଖରେ ରହିଛି ଛୋଟ ପାଚେରୀ ଘେରା ଏକ ସ୍ମୃତିପୀଠ । ଏହା ମଧ୍ୟରେ ନିର୍ମିତ ହୋଇଛି ଏକ ସ୍ମୃତିସ୍ତମ୍ଭ । ଏହି ସ୍ମୃତିସ୍ତମ୍ଭର ମଝିରେ ରହିଛି ଏକ ପ୍ରସ୍ତର ଫଳକ । ଏହି ଫଳକ ମଧ୍ୟରେ ରହିଛି ୩୨ଜଣ ଗାନ୍ଧୀବାଦୀ ସଂଗ୍ରାମୀଙ୍କ ନାମ । ଏହି ଗ୍ରାମର ଜଣେ ଦସ୍ୟୁ ଯେକି ଚମ୍ବଲ ଉପତ୍ୟକାରେ ରହି ବିଭୀଷିକା ସୃଷ୍ଟି କରୁଥିଲା, ସେ ବିନୋବାଜୀଙ୍କ ପାଦତଳେ ଆତ୍ମସମର୍ପଣ କଲେ । ଗାନ୍ଧୀବାଦୀ ଶଙ୍କର ରାଓ ଦେବ, ଗୋପବନ୍ଧୁ ଚୌଧୁରୀ, ରମା ଦେବୀ, ନବକୃଷ୍ଣ ଚୌଧୁରୀ, ମାଳତୀ ଦେବୀ, ହରେକୃଷ୍ଣ ମହତାବ, ଅନ୍ନପୂର୍ଣ୍ଣା ମହାରଣା, ଶରତ ମହାରଣା ଓ ମନମୋହନ ଚୌଧୁରୀ ପ୍ରମୁଖ ପାଣିମୋରା ଗ୍ରାମକୁ ଗସ୍ତକରି ସେଠାରେ ଗାନ୍ଧୀବାଦ ଉଜ୍ଜୀବିତ ଥିବାର ଦେଖି ସନ୍ତୋଷ ପ୍ରକାଶ କରିଥିଲେ । ଗ୍ରାମବାସୀଙ୍କର ଆର୍ଥିକ ଅବସ୍ଥାର ଉନ୍ନତି ଆଣିବା ଲାଗି ଉତ୍କଳ ଖଦି ମଣ୍ଡଳର ଏକ ସ୍ଥାୟୀ ଶାଖା ସେଠାରେ ପ୍ରତିଷ୍ଠିତ ହୋଇଥିଲା । ୧୯୯୨ମସିହା ପର୍ଯ୍ୟନ୍ତ ଖଦି କାର୍ଯ୍ୟ ସୂଚାରୁ ରୂପେ ସଂପାଦିତ ହୋଇଥିଲା । ଏହାପରେ ଖଦି କାର୍ଯ୍ୟ ବନ୍ଦ ହୋଇଗଲା ଓ ଏହା ପାଇଁ ଉଦ୍ଦିଷ୍ଟ ଗୃହ ଆଜି ପରିତ୍ୟକ୍ତ ଅବସ୍ଥାରେ ପଡି ରହିଛି । ଗାନ୍ଧୀବାଦ ପ୍ରତି ସର୍ବଦା ଅନୁରକ୍ତ ପ୍ରକାଶକରି ଆସୁଥିବା ପାଣିମୋରା ଗ୍ରାମକୁ ଅନେକ ରାଜ୍ୟ ତଥା ଜାତୀୟ ସ୍ତରର ଗାନ୍ଧୀବାଦୀ ବ୍ୟକ୍ତି ପରିଦର୍ଶନରେ ଆସିଛନ୍ତି । ପାଣିମୋରା ଗ୍ରାମରେ ସଂଗ୍ରାମୀମାନଙ୍କର ସ୍ମୃତି ଉଦ୍ଦେଶ୍ୟରେ ଗଠିତ ସ୍ମୃତି କମିଟି ଆନୁକୂଲ୍ୟରେ ୨୦୦୨ ମସିହା ଅକ୍ଟୋବର ୩୦ ଓ ୩୧ ତାରିଖ ଦୁଇଦିନ ଧରି ପଶ୍ଚିମ ଓଡ଼ିଶାର ସ୍ୱାଧୀନତା ସଂଗ୍ରାମୀମାନଙ୍କର ମହାସମାବେଶ ଅନୁଷ୍ଠିତ ହୋଇଥିଲା । ପାଣିମୋରା ଗ୍ରାମ ଗାନ୍ଧିଜୀଙ୍କ ଚିନ୍ତା, ଚେତନା, ଦର୍ଶନ ଓ ଆଦର୍ଶକୁ ନିଷ୍ଠା, ଆଗ୍ରହ, ସମ୍ମାନ ଓ ଶ୍ରଦ୍ଧାର ସହିତ ପାଳନ କରି ଆସୁଅଛି । ଗାନ୍ଧୀବାଦର ବାସ୍ତବ ଓ ସାର୍ଥକ ପ୍ରୟୋଗଶାଳା ପାଣିମୋରା ଗ୍ରାମ । ଏହି ଗ୍ରାମ ଗାନ୍ଧୀ ମଣିଷଙ୍କ ଗାଁ ରୂପେ ସମ୍ମାନିତ ।

ଇତିହାସ ବିଭାଗ
ସନାତନ ହରିଚନ୍ଦନ ମହାବିଦ୍ୟାଳୟ
ମଦନପୁର, ଖୋର୍ଦ୍ଧା–୭୫୨୦୫୪

# ଶ୍ରୀଜଗନ୍ନାଥଙ୍କର ପଦ୍ମବେଶ

**ପଣ୍ଡିତ ରାମକୃଷ୍ଣ ମିଶ୍ର**

ଶ୍ରୀମନ୍ଦିରରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ବର୍ଷସାରା ଅନୁଷ୍ଠିତ ହେଉଥିବା ବିଭିନ୍ନ ବେଶ ମଧ୍ୟରେ ପଦ୍ମବେଶ ଅନ୍ୟତମ । କେତେକ ଗବେଷକଙ୍କ ମତ ଅନୁଯାୟୀ ସପ୍ତଦଶ ଶତାବ୍ଦୀରେ ବଡ଼ଛତା ମଠର ସନ୍ଥ ରଘୁବର ଦାସ ଏହି ବେଶର ପ୍ରବର୍ତ୍ତକ ଥିଲେ । ପ୍ରଚଳିତ ପରମ୍ପରା ଅନୁଯାୟୀ ମାଘମାସ ଅମାବାସ୍ୟାଠାରୁ ଶ୍ରୀପଞ୍ଚମୀ ମଧ୍ୟରେ ବୁଧବାର କିମ୍ବା ଶନିବାର ଦିନ ବଡ଼ସିଂହାର ବେଶରେ ଶ୍ରୀବିଗ୍ରହମାନେ ପଦ୍ମବେଶ ହୋଇଥାନ୍ତି । ତତ୍‌ପରଦିନ ପ୍ରାତଃ ମଙ୍ଗଳ ଆରତି ପରେ ଏହି ବେଶ ମଇଲମ କରାଯାଇ ଥାଏ । ଏଣୁ ପରଦିନ ମଙ୍ଗଳ ଆରତି ସମୟରେ ଭକ୍ତମାନେ ଏହି ବେଶ ଦର୍ଶନ କରିଥାନ୍ତି । ପଦ୍ମବେଶ ପରେ ପ୍ରଭୁଙ୍କୁ ଖିରି ଓ ଅମାଲୁ ଭୋଗ କରାଯାଏ ।

ଶୋଲ, ଜରି, କଦଳୀପଟ, କନା, କଇଥ ଅଠା ଓ ରଙ୍ଗ ଦ୍ୱାରା ପଦ୍ମପୁଷ୍ପ ଓ କଡ଼ିମାନ କୁଶଳୀ ପାରମ୍ପରିକ କାରିଗରମାନଙ୍କ ଦ୍ୱାରା ନିର୍ମିତ ହୋଇ ଚତୁର୍ଦ୍ଧା ମୂର୍ତ୍ତିଙ୍କୁ ଲାଗି କରାଯାଇଥାଏ । ଚୂଳ ଓ କିରୀଟ ଲାଗିଥିବା ଶୋଲରେ ନିର୍ମିତ ପଦ୍ମପାଖୁଡ଼ାର ତିନୋଟି ମୁଖା ଏହି ବେଶରେ ବ୍ୟବହୃତ ହୋଇଥାଏ । ଶ୍ରୀଜୀଉଙ୍କର ହସ୍ତରେ କଦମ୍ବ ଫୁଲର କରପଲ୍ଲବ ଶୋଭାପାଏ । ପ୍ରତିବର୍ଷ ସିଂହଦ୍ୱାର ସଂଲଗ୍ନ ବଡ଼ଛତା ମଠ ତରଫରୁ ସମସ୍ତ ଖର୍ଚ୍ଚ ବହନ କରାଯାଇଥାଏ ।

ଏହି ବେଶ ସମ୍ପର୍କରେ ଏକ କିମ୍ବଦନ୍ତୀ ମଧ୍ୟ ରହିଛି । ଜଣେ ହିନ୍ଦୀଭାଷୀ ସାଧୁ ମନୋହର ଦାସ ପଦବ୍ରଜରେ ଶହ ଶହ କୋଶ ଅତିକ୍ରମ କରି ଶ୍ରୀକ୍ଷେତ୍ରକୁ ଶ୍ରୀଜଗନ୍ନାଥଙ୍କ ଦର୍ଶନ ନିମନ୍ତେ ଆଗମନ କରିଥିଲେ । ଭୀଷଣ କ୍ଲାନ୍ତ ଓ ତୃଷିତ ଅବସ୍ଥାରେ ସେ ଏକ ପୁଷ୍କରିଣୀରେ ପଦ୍ମଫୁଲ ଫୁଟିଥିବା ଦେଖି ଆଶ୍ଚର୍ଯ୍ୟ ହୋଇ ଶ୍ରୀଜଗନ୍ନାଥଙ୍କ ଇଚ୍ଛାରେ ଏହା ଘଟିଛି ବୋଲି ଭାବି ଶ୍ରଦ୍ଧାରେ କିଛି ପଦ୍ମଫୁଲ ପ୍ରଭୁଙ୍କ ଉଦ୍ଦେଶ୍ୟରେ ତୋଳି ନିଜର ଏକ ମଇଳା ଗାମୁଛାରେ ବାନ୍ଧି ଶ୍ରୀକ୍ଷେତ୍ର ଅଭିମୁଖେ ବାହାରିଲେ । ମାଘମାସ ଅମାବାସ୍ୟା ଦିନ ଶ୍ରୀମନ୍ଦିରରେ ପହଞ୍ଚି ଫୁଲଗୁଡ଼ିକ ପ୍ରଭୁଙ୍କୁ ଲାଗି କରିବା ପାଇଁ ପଣ୍ଡାମାନଙ୍କୁ ବିନତି କଲେ । ମଇଳା ଗୁମୁଛାରେ ଶୁଷ୍କଫୁଲ ଗୁଡ଼ିକ ଦେଖି ପ୍ରଭୁଙ୍କୁ ଏହା ଲାଗି ହୋଇପାରିବ ନାହିଁ କହି ସାଧୁ ମନୋହରଙ୍କୁ ପଣ୍ଡାମାନେ ତିରସ୍କାର କରିବାରୁ ସେ ମ୍ରିୟମାଣ ହୋଇ ବଡ଼ଛତା ମଠ ନିକଟକୁ ଆସି ପ୍ରଭୁଙ୍କୁ ସ୍ମରଣ କରି ମୂର୍ଚ୍ଛିତ ହୋଇପଡ଼ିଲେ । ସେହିଦିନ ରାତ୍ରିରେ ମହାପ୍ରଭୁ ଗଜପତି ମହାରାଜାଙ୍କୁ ସ୍ୱପ୍ନାଦିଷ୍ଟ ହୋଇ ତାଙ୍କ ଭକ୍ତର ମନୋବାଞ୍ଛା ପୂରଣ କରିବା ପାଇଁ କହିଲେ ।

ଗଜପତି ସେବକମାନଙ୍କୁ ଡାକି ପ୍ରଭୁଙ୍କ ନିର୍ଦ୍ଦେଶ ଜଣାଇ ରାତ୍ର ବଡ଼ସିଂହାର ବେଶରେ ସେହି ପୁଷ୍ପଲାଗି କରିବା ପାଇଁ କହିବା ସହ ଖିରି ଭୋଗ କରି ସାଧୁଙ୍କୁ ସେବନ କରାଇ ତାଙ୍କର ଜୀବନ ରକ୍ଷା କରିବା ପାଇଁ ଆଦେଶ ଦେଲେ । ସେବକମାନେ ସେହି ଶୁଷ୍କ ପଦ୍ମପୁଷ୍ପଗୁଡ଼ିକୁ ପ୍ରଭୁଙ୍କୁ ଲାଗି କରିବା ପରେ ଫୁଲଗୁଡ଼ିକ ସତେଜ ହୋଇ ସଦ୍ୟ ପ୍ରସ୍ଫୁଟିତ ହେବା ପରି ଶୋଭା ପାଇଲା । ଗଜପତି ଓ ସେବକମାନେ ପ୍ରଭୁଙ୍କର ଭକ୍ତସାଧୁ ମନୋହରଙ୍କୁ ରତ୍ନସିଂହାସନ ନିକଟକୁ ପାଛୋଟି ନେଲେ । ମନୋହର ପ୍ରଭୁଙ୍କର ସୁନ୍ଦର ପଦ୍ମବେଶ ଦେଖି ଅତ୍ୟନ୍ତ ବିମୋହିତ ହେବା ସହ ଖିରି ମହାପ୍ରସାଦ ସେବନ କରି ମହାନନ୍ଦରେ ଗୃହକୁ ପ୍ରତ୍ୟାବର୍ତ୍ତନ କରିଥିଲେ ।

ପଦ୍ମପୁଷ୍ପ ଅଭାବରୁ ଅନେକ ବର୍ଷ ଧରି ଶୋଲର ପଦ୍ମପୁଷ୍ପରେ ପଦ୍ମବେଶ ହେଉଥିଲା । ୨୦୧୧ ମସିହାରେ ଏକ ଭକ୍ତ ଶ୍ରୀଯୁକ୍ତ ଚିନ୍ତାମଣି ଦାଶ, ଶିକ୍ଷକ, ଭୁବନେଶ୍ୱର ଏହି ବେଶ ପାଇଁ ପଦ୍ମପୁଷ୍ପ ଯୋଗାଇ ଥିବାରୁ ପ୍ରାକୃତିକ ପଦ୍ମପୁଷ୍ପରେ ଏହି

ବେଶ ହୋଇଥିଲା । ସେ ୨୦୧୧ ମସିହାରେ ଚତୁର୍ଦ୍ଧା ମୂର୍ତ୍ତିଙ୍କ ପାଇଁ ୧୦୦୮ ପଦ୍ମପୁଷ୍ପ ଓ ୨୦୧୨ ମସିହାରେ ୩୦୦୮ ପଦ୍ମପୁଷ୍ପ ପ୍ରଦାନ କରିଥିଲେ । ୨୦୧୩ ମସିହାରେ ଚତୁର୍ଦ୍ଧା ମୂର୍ତ୍ତିଙ୍କ ପାଇଁ ୩୦୦୮ ପଦ୍ମ ପୁଷ୍ପ ଦେବା ସହ ବିମଳାଙ୍କ ପାଇଁ ୧୦୮, ବାଟମଙ୍ଗଳାଙ୍କ ପାଇଁ ୫୪, କମଳାମ୍ବିକାଙ୍କ ପାଇଁ ୧୦୮ ଓ ପଦ୍ମାଳୟା ମହାଲକ୍ଷ୍ମୀଙ୍କ ପାଇଁ ୧୦୮ ପଦ୍ମପୁଷ୍ପ ପ୍ରଦାନ କରିଥିଲେ । ଏଥିପାଇଁ ସେ ଧନ୍ୟବାଦାର୍ହ ।

ଏ.ଏଲ୍. ୫୩, ବୀର ସୁରେନ୍ଦ୍ରସାଏ ନଗର
ଭୁବନେଶ୍ୱର

# ସୁନାର ଭାରତ

**ସ୍ନେହଲତା ମହାନ୍ତି**

ଇଏ ପରା ମୋର ସୁନାର ଭାରତ
ମୋ ଜନମ ମାଟି ସ୍ୱର୍ଗ ମୋର ।
ତା' କୋଳେ ଜନମୀ ହୋଇଛି ମୁଁ ଧନ୍ୟ
କେତେ ମିଠା ସତେ ନାଁ ଟି ତା'ର ।
କୁମାରୀକାଠାରୁ କାଶ୍ମୀର ଯାଏଁ
କେତେ ରାଇଜ ତା' କୋଳରେ ଶୋହେ ।
କୁଳୁ କୁଳୁ ନାଦେ କେତେ ଯେ ତଟିନୀ
ନାଚି ନାଚିକା ତା' ଦେହରେ ବହେ ।
ଉତ୍ତରରେ ଅଛି ହିମାଳୟ ଗିରି
ହିମ ରାଇଜରେ ହିମ ପ୍ରାଚୀର ।
ଆଉ ତିନିପାଖେ ମୋ ଦେଶକୁ ବେଢ଼ି
ରହିଛି କେମିତି ତିନି ସାଗର ।
କୋଟି କୋଟି ଲୋକଭରା ମୋ ଦେଶରେ
କିଏ ହିନ୍ଦୁ କିଏ ମୁସଲମାନ ।
କିଏ ଶିଖ୍ କିଏ ଜୈନ ଖ୍ରୀଷ୍ଟିଆନ
ହେଲେ ସଭିଙ୍କର ଗୋଟିଏ ମନ ।

ଫିରିଙ୍ଗିଙ୍କୁ ତଡିବା ପାଇଁ କି
ମୋ ଦେଶର ପୁଅ କରିଲେ ପଣ ।
ଗାନ୍ଧୀ ଗୋପବନ୍ଧୁ ନେହେରୁ ସୁଭାଷ
ପ୍ରାଣପଣ ରଖି କରିଲେ ରଣ ।
ହାରିଲା ବିଦେଶୀ ଛାଡିଲା ଦେଶକୁ
ସ୍ୱାଧୀନ ଆଜି ମୋ ମାଟି ମାଆ ।
ଆଜି ସେହିଦିନ ମନେ ପଡିଗଲେ
ଭାବେ ସେ ବିଦେଶୀ କରିଛି ଯାହା ।
ତ୍ରିରଙ୍ଗା ନୁହେଁ ସେ ବିଜୟର ଟୀକା
ମୋ ଜାତି ଇତିହାସ ଗଉରବ ।
ଉଡୁଥାଉ ସଦା ଏମିତି ସିଏ
ଛୁଟାଇ ତାହାର ଯେତେ ସଉରଭ ।

ପ୍ରଧାନ ଶିକ୍ଷୟିତ୍ରୀ
ରାଘବପୁର ପ୍ରାଥମିକ ବିଦ୍ୟାଳୟ
ସାଲେପୁର, କଟକ






# ମୁମ୍ବାଇରେ ଶ୍ରୀଜଗନ୍ନାଥ ସଂସ୍କୃତି

**ସୁରେନ୍ଦ୍ର ନାଥ ପଣ୍ଡା**

ଶ୍ରୀଜଗନ୍ନାଥ ସଂସ୍କୃତି ଏବଂ ଓଡ଼ିଶୀ ନୃତ୍ୟ ପାଇଁ ଆମ ରାଜ୍ୟ ଓଡ଼ିଶା ସାରା ପୃଥିବୀରେ ସୁପରିଚିତ । ଓଡ଼ିଶାର ସାହିତ୍ୟ, ସଂସ୍କୃତି, କଳା ଯୁଗେ ଯୁଗେ ଆମକୁ ପୃଥିବୀରେ ଏକ ସ୍ୱତନ୍ତ୍ର ସ୍ଥାନ ପ୍ରଦାନ କରିଛି । ଓଡ଼ିଶାର ସ୍ଥାପତ୍ୟ ମଧ୍ୟ ସାରା ପୃଥିବୀରେ ସ୍ୱାତନ୍ତ୍ର୍ୟତା ବହନ କରି ଚିର ଜାଜ୍ୱଲ୍ୟମାନ ହୋଇଛି । ବର୍ତ୍ତମାନ ଓଡ଼ିଆ ଭାଷାକୁ ଶାସ୍ତ୍ରୀୟ ମାନ୍ୟତା ମିଳିଛି । ଏଣୁ ଯୁଗେ ଯୁଗେ ଓଡ଼ିଶାର ସ୍ଥିତି ଏବଂ ପ୍ରଗତି ସାରା ବିଶ୍ୱକୁ ବିଶ୍ୱ ଭ୍ରାତୃତ୍ୱର ବାର୍ତ୍ତା ପ୍ରଦାନ କରିଛି ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଭାରତର ଚାରିଧାମ ମଧ୍ୟରୁ ଶ୍ରୀକ୍ଷେତ୍ର ପୁରୀ ହେଉଛି ଅନ୍ୟତମ । ଜଗତର ନାଥ ଶ୍ରୀଜଗନ୍ନାଥ ଓଡ଼ିଆ ପ୍ରାଣର ଦେବତା ଏଠାରେ ପୂଜା ପାଉଛନ୍ତି । ସାରା ପୃଥିବୀରେ ହିନ୍ଦୁମାନଙ୍କର ତଥା ଅନ୍ୟାନ୍ୟ ଧର୍ମାବଲମ୍ବୀମାନଙ୍କ ସେ ପ୍ରାଣର ଦେବତା । ଓଡ଼ିଶାର ପୁରପଲ୍ଲୀ ତଥା ଛୋଟବଡ଼ ସହରମାନଙ୍କରେ ପ୍ରଭୁ ଶ୍ରୀଜଗନ୍ନାଥ ପୂଜା ପାଉଛନ୍ତି । ବିଭିନ୍ନ ରାଜ୍ୟ ତଥା ସୁଦୂର ବିଦେଶୀ ରାଷ୍ଟ୍ରମାନଙ୍କରେ ମଧ୍ୟ ଶ୍ରୀଜଗନ୍ନାଥ ପୂଜା ପାଉଛନ୍ତି । ବିଭିନ୍ନ ରାଜ୍ୟ ତଥା ସୁଦୂର ବିଦେଶୀ ରାଷ୍ଟ୍ରମାନଙ୍କରେ ମଧ୍ୟ ଶ୍ରୀଜଗନ୍ନାଥ ମନ୍ଦିର ପ୍ରତିଷ୍ଠିତ ହୋଇ ଜଗତର ନାଥ ଶ୍ରୀଜଗନ୍ନାଥ ପୂଜା ପାଉଛନ୍ତି । ବିଭିନ୍ନ ସ୍ଥାନରେ ଶ୍ରୀଜଗନ୍ନାଥ ମନ୍ଦିର ପ୍ରତିଷ୍ଠିତ ହେବା ଏକ ଶୁଭ ସୂଚନା । ସାରା ବିଶ୍ୱରେ ସନାତନ ଧର୍ମର ପ୍ରଚାର ଏବଂ ପ୍ରସାର ପାଇଁ ଏହା ଉଦ୍ଦିଷ୍ଟ । ନିକଟରେ ଏହି ଲେଖକ ମୁମ୍ବାଇ, ନାସିକ, ସିରିଡ଼ି, ତ୍ରୟମ୍ବକେଶ୍ୱର ଏବଂ ଶନି ସିଗ୍ନାପୁର ଭ୍ରମଣରେ ଯାଇଥିଲା । ଏହି ସମସ୍ତ ସ୍ଥାନମାନଙ୍କରେ ଜଗନ୍ନାଥ ସଂସ୍କୃତିର ଝଲକ ଦେଖି ମନରେ ଅଶେଷ ଆନନ୍ଦ ଉପଲବ୍ଧ ହୋଇଥିଲା । ଜୁନ୍ ୮ ତାରିଖ ଦିନ ମୁମ୍ବାଇ ମେଟ୍ରୋ ରେଳ ସେବା ଆରମ୍ଭ ହେଲା । ମେଟ୍ରୋରେ ଯିବା ଏବଂ ଏହାର ଆନନ୍ଦ ଉପଲବ୍ଧି କରିବା ମନରେ କୌତୁହଳ ଜାତ କଲା । ଏଣୁ ତା’ ପରଦିନ ମୁମ୍ବାଇର ଘାଟକପରରୁ ମୋର ଜଣେ ସମ୍ପର୍କୀୟ ରହୁଥିବା ସାକିନାକାକୁ ମେଟ୍ରୋରେ ଯାତ୍ରା କଲି । ମେଟ୍ରୋ ଯାତ୍ରା ମନୋରମ । ସାରା ମେଟ୍ରୋ ଟ୍ରେନ୍‌ଟି ଶୀତତାପ ନିୟନ୍ତ୍ରିତ । ଷ୍ଟେସନଗୁଡ଼ିକ ଆସିଲେ ମେଟ୍ରୋର କବାଟ ଆପେ ଆପେ ଖୋଲିଯାଏ । ଲୋକ ଚଢ଼ିବା ପରେ ଆପେ ଆପେ ବନ୍ଦ ହୁଏ । ମେଟ୍ରୋ ଯାତ୍ରାର ଖୁସି କହିଲେ ନସରେ । ଆମ୍ଭର ଷ୍ଟେସନ ଥାଏ ସାକିନାକା । ସାକିନାକାଠାରେ ମୁମ୍ବାଇର ସୁପ୍ରତିଷ୍ଠିତ ଶ୍ରୀଜଗନ୍ନାଥ ମନ୍ଦିର ରହିଛି । ଷ୍ଟେସନରେ ପହଞ୍ଚି ଜଗନ୍ନାଥ ମନ୍ଦିରକୁ ଅଗ୍ରସର ହେବା ବେଳେ ରାସ୍ତାର ଉଭୟ ପାର୍ଶ୍ୱରେ ଥିବା ଦୋକାନମାନଙ୍କରେ ଓଡ଼ିଆ ଅକ୍ଷରରେ ଦୋକାନ ମାନଙ୍କର ନାମ ଫଳକ, ବ୍ୟକ୍ତିବିଶେଷଙ୍କ ନାମ ଫଳକ ଆମମାନଙ୍କ ମନରେ ଉତ୍ସାହ ଭରିଦେଉଥିଲା । ସାକିନାକାର ଶ୍ରୀଜଗନ୍ନାଥ ମନ୍ଦିର ସାହିରେ ପ୍ରବେଶ କରିବା କ୍ଷଣି ମୁଁ ଓଡ଼ିଶାରେ ରହିଲା ଭଳି ଉପଲବ୍ଧି କଲି । ଅଧିକାଂଶ ଲୋକ ଓଡ଼ିଶାର ବାସିନ୍ଦା । ଓଡ଼ିଶାର ଗ୍ରାମ୍ୟ ଜୀବନରେ ଏକ ଝଲକ ସେଠାରେ ମିଳିଲା । ଲୋକମାନେ ନିଜ ନିଜ ଭିତରେ ଓଡ଼ିଆ ଭାଷାରେ କଥାବାର୍ତ୍ତା ହୋଇ ଅତି ଖୁସି ମିଜାଜରେ ସମୟ କାଟୁଥିବା ଦେଖି ମୁଁ ଏବଂ ମୋର ପରିବାରବର୍ଗ ଖୁବ୍ ଆନନ୍ଦିତ ହେଲୁ । ସାକିନାକାରେ ଓଡ଼ିଆ ଦୋକାନ, ଓଡ଼ିଆ ହୋଟେଲ, ପରିବା ଦୋକାନ, ପାନଦୋକାନ, ବିଦ୍ୟୁତ୍ ସରଞ୍ଜାମ ଦୋକାନ, ଇଲେକ୍ଟ୍ରୋନିକ୍ସ ଦୋକାନ ଖୁନ୍ଦି ହୋଇ ରହିଛି । ଏସବୁ ଦେଖି ଦେଖି ଯିବା ପରେ ଆମେ ଶ୍ରୀଜଗନ୍ନାଥ ମନ୍ଦିରରେ ପହଞ୍ଚିଲୁ । ସେଠାକାର ପରିବେଶ ମଧ୍ୟ ଖୁବ୍ ଆକର୍ଷଣୀୟ । ଶ୍ରୀଜଗନ୍ନାଥ ମନ୍ଦିରର ବିଭିନ୍ନ ପାର୍ଶ୍ୱ ଦେବାଦେବୀ ମଧ୍ୟ ଖୁବ୍ ସୁନ୍ଦର ଭାବେ ନିର୍ମିତ ହୋଇଛି । ମନ୍ଦିର ବେଢ଼ାରେ ପ୍ରବେଶ କରିବା ମାତ୍ରେ ଏକ ଆଧ୍ୟାତ୍ମିକ ଭାବ ଆପେ ଆପେ ମନକୁ ଆସିଯାଏ । ସେଠାରେ ପହଞ୍ଚିବା ପରେ ଦୁଇଜଣ ସେବାୟତଙ୍କ ସହ ଆମର

ସାକ୍ଷାତ ହେଲା । ଜଣେ ହେଉଛନ୍ତି ହିଞ୍ଜିଳିକାଟୁ ନିକଟସ୍ଥ ବୁରୁପଡ଼ା ଗ୍ରାମର ଏବଂ ଅନ୍ୟଜଣେ ପୁରୁଷୋତ୍ତମପୁର ସହର ନିକଟସ୍ଥ ଷୋଳଘର ଗ୍ରାମର । ସେମାନଙ୍କ ସହ ବାର୍ତ୍ତାଳାପ ସମୟରେ ଜାଣିବାକୁ ପାଇଲୁ ଯେ, ପୁରୀ ଶ୍ରୀଜଗନ୍ନାଥଙ୍କ ରୀତିନୀତି ଅନୁଯାୟୀ ସେଠାରେ ମଧ୍ୟ ସମସ୍ତ ପର୍ବପର୍ବାଣି ଅନୁଷ୍ଠିତ ହୁଏ । ଜଗନ୍ନାଥଙ୍କ ବାର ମାସରେ ତେର ଯାତ୍ରା ସେଠାରେ ମଧ୍ୟ ଅତି ଉତ୍ସାହର ସହ ପାଳନ କରାଯାଏ । ମୁମ୍ବାଇ ଓଡ଼ିଆ ସମାଜର କର୍ମକର୍ତ୍ତାଙ୍କ ସହ ସମସ୍ତ ଓଡ଼ିଆ ଲୋକ ଏବଂ ଅନ୍ୟାନ୍ୟ ଭାଷାଭାଷୀ ଲୋକ ମଧ୍ୟ ବିଭିନ୍ନ ପର୍ବପର୍ବାଣି ଦିନରେ ଆସି ରୁଣ୍ଡ ହୋଇ ଜଗନ୍ନାଥ ସଂସ୍କୃତିକୁ ପ୍ରଚାର ଓ ପ୍ରସାର କରନ୍ତି । ବିବାହ, ବ୍ରତୋପନୟନ ଇତ୍ୟାଦି କାର୍ଯ୍ୟକ୍ରମ ମଧ୍ୟ ସେଠାରେ ଲୋକମାନେ ସମ୍ପନ୍ନ କରାନ୍ତି । କାର୍ତ୍ତିକ ମାସରେ ସଂକୀର୍ତ୍ତନ ଏଠାକାର ଏକ ମୁଖ୍ୟ ଆକର୍ଷଣ । ରଥଯାତ୍ରାରେ ଲକ୍ଷ ଲକ୍ଷ ଭକ୍ତ ଯୋଗ ଦେଇ ରଥଟଣାରେ ଭାଗ ନିଅନ୍ତି । ମୁମ୍ବାଇର ସାକିନାକାକୁ ଏକ ମିନି ଓଡ଼ିଶା କହିଲେ ଅତ୍ୟୁକ୍ତି ହେବ ନାହିଁ । ମୁମ୍ବାଇର ଅନ୍ୟାନ୍ୟ କେତେକ ସ୍ଥାନରେ ମଧ୍ୟ ଶ୍ରୀଜଗନ୍ନାଥ ମନ୍ଦିର ରହିଛି ।

ମୁମ୍ବାଇର ନେହେରୁ ପ୍ଲାନେଟୋରିୟମ ଏବଂ ସାଇନ୍ସ ହାଉସ୍ ଅନ୍ୟ ଏକ ମୁଖ୍ୟ ଆକର୍ଷଣ । ସେଠାରେ ମୁଖ୍ୟ ଦ୍ୱାରରେ କୋଣାର୍କ ଚକ୍ର ସ୍ଥାନ ପାଇଛି । ଏହା ଦେଖି ଆମ୍ଭେମାନେ ଖୁବ୍ ଆନନ୍ଦିତ ହୋଇ ପଡ଼ିଲୁ । ଅତି ନିଖୁଣ ଭାବେ କୋଣାର୍କ ଚକ୍ରକୁ ମୁଖ୍ୟ ଦ୍ୱାରରେ ସ୍ଥାନ ଦିଆଯାଇଛି । ଖୁବ୍ ପରିଷ୍କାର ପରିଚ୍ଛନ୍ନ ବ୍ୟବସ୍ଥା ମଧ୍ୟରେ ଏହି ଚକ୍ରଟି ଅତୀବ ମନଲୋଭା ହୋଇଛି । ମୁମ୍ବାଇର ଅନ୍ୟ ଏକ ଆକର୍ଷଣ ହେଉଛି ଛତ୍ରପତି ଶିବାଜୀ ମ୍ୟୁଜିୟମ । ମ୍ୟୁଜିୟମ ଭିତରେ ବିଭିନ୍ନ ଯୁଗର କାରୁକାର୍ଯ୍ୟମାନ ଖୁନ୍ଦି ହୋଇ ରହିଥିବା ବେଳେ ଶ୍ରୀଜଗନ୍ନାଥଙ୍କର ଏକ ପଟ୍ଟଚିତ୍ର ମଧ୍ୟ ସେଥିରେ ସ୍ଥାନପାଇଛି । ସେଥିରେ ପ୍ରଭୁ ଶ୍ରୀଜଗନ୍ନାଥ, ବଡ଼ଭାଇ ବଳଭଦ୍ର, ଭଉଣୀ ସୁଭଦ୍ରା ଏବଂ ସୁଦର୍ଶନଙ୍କ ରୂପ ଲାବଣ୍ୟ ଦେଖି ଆମ୍ଭେମାନେ ଖୁବ୍ ଆନନ୍ଦିତ ହେଲୁ ଏବଂ ମନେ ମନେ ଜଗନ୍ନାଥ ସଂସ୍କୃତିର ପ୍ରଭାବ କିଭଳି ଭାବେ ରହିଛି ତାହା ଅନୁଭବ କଲୁ ।

ମୁମ୍ବାଇରେ ଅନେକ ଡାକ୍ତରଖାନା ରହିଛି । ସେମାନଙ୍କ ମଧ୍ୟରୁ ସର୍ବୋଦୟ ହସ୍ପିଟାଲ ଏକ ପ୍ରମୁଖ ସ୍ଥାନ ନେଇଛି । ଏଠାରେ ଉତ୍ତମ ସ୍ୱାସ୍ଥ୍ୟ ସେବା ଯୋଗାଇ ଦିଆଯାଏ । ସର୍ବୋଦୟ ହସ୍ପିଟାଲ ମଧ୍ୟରେ ପ୍ରବେଶ କରିବା ବେଳେ ଦେଖାଯାଏ ଯେ ଜୈନମାନଙ୍କର ଚବିଶି ତୀର୍ଥଙ୍କରଙ୍କ ମନ୍ଦିର ଶୋଭା ପାଉଛି । ଅନ୍ୟମାନଙ୍କ ମଧ୍ୟରେ ଶ୍ରୀକୃଷ୍ଣ, ଶଙ୍କର ଭଗବାନ ଇତ୍ୟାଦିଙ୍କ ମନ୍ଦିର ନିର୍ମାଣ ହୋଇ ପୂଜା ପାଇବା ସହିତ ଖୁବ୍ ନିର୍ମଳ ପରିବେଶ ମଧ୍ୟରେ ଏସବୁ ରହିଛି । ଖୁସି ତଥା ଆନନ୍ଦର କଥା ଭାରତର ଚାରିଧାମ ମଧ୍ୟରୁ କେବଳ ପୁରୀ ଜଗନ୍ନାଥ ଧାମଙ୍କ ଶ୍ରୀଜଗନ୍ନାଥ ମନ୍ଦିର ହିଁ ସର୍ବୋଦୟ ହସ୍ପିଟାଲ ମଧ୍ୟରେ ପ୍ରତିଷ୍ଠିତ ହୋଇଛି । ଏହା ଦେଖି ଆମ୍ଭେମାନେ ଖୁବ୍ ଆନନ୍ଦିତ ହେଲୁ ଏବଂ ଜଗନ୍ନାଥ ସଂସ୍କୃତିର ଗାରିମା କିଭଳି ଭାବେ ମୁମ୍ବାଇ ମହାନଗରୀରେ ବିଦ୍ୟମାନ ତାହା ଚିନ୍ତା କରି ଆନନ୍ଦିତ ହେଲୁ ।

ସିରିଡ଼ି ସହର ସାଇବାବାଙ୍କ ପାଇଁ ପ୍ରସିଦ୍ଧି ଲାଭ କରିଛି । ସାଇବାବାଙ୍କ ମନ୍ଦିର ବେଢ଼ା ମଧ୍ୟରେ ଭକ୍ତମାନେ ପ୍ରବେଶ କରିବା ପାଇଁ ଶୃଙ୍ଖଳିତ ବ୍ୟବସ୍ଥା ମଧ୍ୟ ରହିଛି । ଭକ୍ତମାନେ କର୍ଡନ ମଧ୍ୟରେ ଧାଡ଼ିରେ ଯାଇ ବାବାଙ୍କ ଦର୍ଶନ କରିଥାନ୍ତି । ଏହି କର୍ଡନରେ ଯିବା ସମୟରେ ପୁରୀ ଶ୍ରୀଜଗନ୍ନାଥଙ୍କ ପଟ୍ଟଚିତ୍ର ଦେଖିବାକୁ ମିଳିଲା । ସିରିଡ଼ି ଦର୍ଶନ, ବାବାଙ୍କ ଭୋଜନାଳୟ, ସୁନିୟନ୍ତ୍ରିତ ପ୍ରସାଦ ସେବନ ଏବଂ ମନ୍ଦିର ଟ୍ରଷ୍ଟ ଦ୍ୱାରା ନିର୍ମିତ ଦ୍ୱାରବତୀ ଭକ୍ତ ନିବାସର ରହଣି ସବୁଦିନ ପାଇଁ ଅପାଶୋରା ହୋଇରହିବ । ଭକ୍ତନିବାସରେ ରହିବା ବ୍ୟବସ୍ଥା ଖୁବ୍ ଶୃଙ୍ଖଳିତ । ପରିଷ୍କାର ଓ ପରିଚ୍ଛନ୍ନତା ମଧ୍ୟରେ ଏହି ଭକ୍ତନିବାସ ରହିଛି । ଭକ୍ତ ନିବାସରେ ଆମେ ରହିବା ସମୟରେ ଅନେକ ଓଡ଼ିଆ ବ୍ୟକ୍ତିଙ୍କ ସହ ମିଶିବାର ସୁଯୋଗ ମିଳିଲା । ଆଳାପ ଆଲୋଚନା ମଧ୍ୟରେ ଆମ ଦିନଗୁଡ଼ିକ କଟିଗଲା ।

ନାସିକର ବ୍ରହ୍ମଗିରି ପାହାଡ଼ରୁ ପବିତ୍ର ଗୋଦାବରୀ ନଦୀ ଉତ୍ପନ୍ନ । ଏହାର ମୂଳରେ ପ୍ରଭୁ ତ୍ରୟମ୍ବକେଶ୍ୱର ବିଦ୍ୟମାନ । ବାରଗୋଟି ଜ୍ୟୋତିର୍ଲିଙ୍ଗ ମଧ୍ୟରୁ ତ୍ରୟମ୍ବକେଶ୍ୱର ଅନ୍ୟତମ । ଏହି ମନ୍ଦିର ଗୋଟିଏ କଳା ମୁଗୁନି ପଥରରେ ନିର୍ମିତ । ଏଠାରେ ମଧ୍ୟ ଠାକୁରଙ୍କ ଦର୍ଶନ ବ୍ୟବସ୍ଥା ଖୁବ୍ ଶୃଙ୍ଖଳିତ । ବିଭିନ୍ନ ରୁଦ୍ରାକ୍ଷ ଏଠାରେ ଉପଲବ୍ଧ । ରୁଦ୍ରାକ୍ଷଗୁଡ଼ିକ ଅତି ଲୋଭନୀୟ । ପ୍ରତ୍ୟେକ ଦିନ ହଜାର ହଜାର ଭକ୍ତ ତ୍ରୟମ୍ବକେଶ୍ୱର ଦର୍ଶନ କରି ଧର୍ମ ଅର୍ଜନ କରନ୍ତି ।

ନାସିକର ଅନ୍ୟ ଏକ ଦର୍ଶନୀୟ ସ୍ଥାନ ହେଉଛି ରାମକୁଣ୍ଡ । ଏଠାରେ ପବିତ୍ର କୁମ୍ଭମେଳା ଅନୁଷ୍ଠିତ ହୁଏ । ପବିତ୍ର ଗୋଦାବରୀ ନଦୀର ଜଳରେ ଜନସାଧାରଣ ବୁଡ଼ ପକାଇ ମୁକ୍ତିଲାଭ କରିବାର ବିଶ୍ୱାସ ରହିଛି । ସବୁଠାରୁ ଆଶ୍ଚର୍ଯ୍ୟର ବିଷୟ ହେଉଛି ଏହି ରାମକୁଣ୍ଡରେ ସଦାସର୍ବଦା ଜଳ ପ୍ରବାହିତ ହେଉଥିଲେ ମଧ୍ୟ ପାହାଚମାନଙ୍କରେ ଶିଉଳି ପଡ଼ିବାର ଦେଖାଯାଏ ନାହିଁ । ପିତୃପୁରୁଷଙ୍କୁ ଦୀପ ଏବଂ ପିଣ୍ଡଦାନ କଲେ ସେମାନଙ୍କର ଅମର ଆତ୍ମା ଶାନ୍ତି ପାଏ ବୋଲି ହିନ୍ଦୁମାନଙ୍କର ବିଶ୍ୱାସ ରହିଛି । ଏଠାରେ

ଭାରତବର୍ଷର ସମସ୍ତ ଦେବଦେବୀଙ୍କ ପ୍ରତିମୂର୍ତ୍ତି ପୂଜା ପାଉଛନ୍ତି । ଅତି ନିଖୁଣ ଭାବେ ଏହି ମନ୍ଦିର ନିର୍ମିତ । ଦ୍ୱାଦଶ ଜ୍ୟୋତିର୍ଲିଙ୍ଗଙ୍କୁ ଏକ ସ୍ୱତନ୍ତ୍ର ସ୍ଥାନରେ ସ୍ଥାନିତ କରାଯାଇଛି । ସେହିଭଳି ଭାରତର ଚାରିଧାମର ଆରାଧ୍ୟ ଠାକୁରଙ୍କୁ ମଧ୍ୟ ଏହି ମୁକ୍ତିଧାମରେ ରଖାଯାଇଛି । ପୁରୀର ଶ୍ରୀଜଗନ୍ନାଥ ଧାମ ଏକ ମନଲୋଭା ପରିବେଶ ମଧ୍ୟରେ ରହିଛି । ମୁକ୍ତିଧାମର ଶ୍ରୀଜଗନ୍ନାଥ, ବଡ଼ଭାଇ ବଳଭଦ୍ର, ଭଉଣୀ ସୁଭଦ୍ରା ଏବଂ ଚକ୍ରରାଜ ସୁଦର୍ଶନ ଓଡ଼ିଶାର କଳା ଓ ସଂସ୍କୃତିକୁ ପରିପ୍ରକାଶ କରେ । ସେହିଭଳି ଜଗନ୍ନାଥ ସଂସ୍କୃତିର ଗୁରୁତ୍ୱ ଏଠାରେ ଉପଲବ୍ଧି କରିହେଉଛି । ସେ ଯାହା ହେଉ ମୁମ୍ବାଇର ନାସିକ ଏବଂ ସିରିଡ଼ିରେ ଜଗନ୍ନାଥଙ୍କ ଐଶୀ ଆଶୀର୍ବାଦ ପାଇ ଆମେ ସମସ୍ତେ ଖୁବ୍ ଉତ୍ସାହିତ ହେଲୁ ଏବଂ ଶ୍ରୀଜଗନ୍ନାଥ ସଂସ୍କୃତି କିଭଳି ଭାବେ ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ସମସ୍ତେ ଉପଲବ୍ଧି କରିଛନ୍ତି, ତାହା ଜାଣିବାକୁ ପାଇଲୁ ।

ମହାରାଷ୍ଟ୍ରର ଆରାଧ୍ୟ ଠାକୁର ପ୍ରଭୁ ଶ୍ରୀ ଗଜାନନ ସମସ୍ତ ଗଳିକନ୍ଦିରେ ପୂଜା ପାଆନ୍ତି । ପ୍ରଭୁ ଜଗନ୍ନାଥ ମଧ୍ୟ ଜ୍ୟେଷ୍ଠ ପୂର୍ଣ୍ଣିମା ଦିନ ଗଜାନନ ବେଶରେ ଭକ୍ତଙ୍କୁ ଦର୍ଶନ ଦିଅନ୍ତି । ଏଣୁ ଗଜାନନ ଯେ ପ୍ରଭୁ ଶ୍ରୀଜଗନ୍ନାଥ ଏବଂ ତାଙ୍କରି ମହିମା ସବୁଆଡ଼େ ସୁବିଦିତ ଏହା ସ୍ୱୀକାର୍ଯ୍ୟ ।

ଶେଷରେ ଏତିକି କୁହାଯାଇପାରେ ଯେ ଶ୍ରୀଜଗନ୍ନାଥ ସଂସ୍କୃତି ସାରା ବିଶ୍ୱର ସଂସ୍କୃତି ଏବଂ ଶ୍ରୀଜଗନ୍ନାଥଙ୍କ ମାନବଲୀଳା ସର୍ବଜନବିଦିତ । ଏଣୁ ପ୍ରଭୁ ଶ୍ରୀଜଗନ୍ନାଥଙ୍କ ମହିମା କେବଳ ଅନୁଭବୀ ହିଁ ଜାଣିପାରିବ । ତେଣୁ ଆସନ୍ତୁ ପ୍ରଭୁ ଶ୍ରୀଜଗନ୍ନାଥଙ୍କ ଆଶୀର୍ବାଦ ଭିକ୍ଷା କରି ନିଜକୁ ଧନ୍ୟ ମନେକରିବା ।

ଆଇନ୍‌ଜୀବୀ, ଆସିକା

# ନୂଆ ବରଷ

ଅଜିତ୍ କୁମାର ସାବତ

ସ୍ୱାଗତ କରୁଛି ମୁଁ ତୁମକୁ
ଆସ ଆଜି ନୂଆ ବରଷ
ନୂଆ ଉନ୍ମାଦନା, ନୂଆ ସମୟ ନେଇ
ଭରିଦିଅ ସବୁରି ମନରେ ହରଷ ।
ନୂତନ ବରଷରେ ନୂତନ ଆଶାର
ସବୁଆଡେ ହେଉ ଆଜି ସଂଚାର
ନୂଆ ନୂଆ କଥା ନିତି ହେଉଥାଉ
କୋଣେ କୋଣେ ଖୁସି ଭରିଯାଉ ଅପାର ।
ନୂଆ ନୂଆ ଜୀବନ ହେଉ, ନୂଆ ହେଉ ଚିନ୍ତନ
ନୂଆ ନୂଆ ବିଧି ହେଉ, ନୂଆ ହେଉ ବିଧାନ ।
ନୂଆ ନୂଆ ଆଶା ହେଉ, ନୂଆ ହେଉ ମନ
ନୂଆ ନୂଆ ଜ୍ଞାନୀ ଆସ, ନୂଆ ହେଉ ଜ୍ଞାନ ।
ନୂଆ ନୂଆ ଚାଲି ହେଉ, ନୂଆ ହେଉ ଠାଣି
ନୂଆ ନୂଆ ଶବ୍ଦ ହେଉ, ନୂଆ ହେଉ ବାଣୀ ।
ନୂଆ ନୂଆ ଢଙ୍ଗ ହେଉ, ନୂଆ ହେଉ ରଙ୍ଗ
ନୂଆ ନୂଆ ସାଥୀ ମିଳୁ, ନୂଆ ହେଉ ସଙ୍ଗ ।
ନୂଆ ନୂଆ ରୂପ ହେଉ, ନୂଆ ହେଉ ବେଶ
ନୂଆ ନୂଆ ଯୁବକ ଆସ, ଗଢ଼ିବା ନୂତନ ଦେଶ ।
ନୂଆ ବରଷ ହେଉ, ନୂଆ ହେଉ ମାସ
ଭୀରୁତା କଟିଯାଉ, ଭରିଯାଉ ସାହସ ।
ସ୍ନେହ ମମତାର ଧ୍ୱଜା ଉଡୁ ଆଜି
ଶାନ୍ତି ମୈତ୍ରୀର ହେଉ ଗୁଣଗାନ
ହିଂସା, ଈର୍ଷା, ଦ୍ୱେଷ ଦୂରେଇ ଯାଉ
ଅଧର୍ମୀ ଓ ଅଧର୍ମର ହେଉ ଅବସାନ ।
ନୂଆ ନୂଆ ଜାତି ପ୍ରେମ ଜାଗୁ
ନୂଆ ମନରେ ଜାଗୁ ନୂଆ ସରସ
ନୂତନ ଆଶା ଓ ଉନ୍ମାଦନା ନେଇ
ଆସ ପାଳିବା ଆଜି ନୂଆ ବରଷ ।

ସ୍କୁଲ ଓ ଗଣଶିକ୍ଷା ବିଭାଗ
ବ୍ରହ୍ମପୁର

# ଶ୍ରୀଚୈତନ୍ୟ ଦେବ

**ଜାନକୀ ବଲ୍ଲଭ ପଟ୍ଟନାୟକ**

ଜାଗତିକ ଦୃଷ୍ଟିରେ ଶ୍ରୀଚୈତନ୍ୟ ଦେବ ସମଗ୍ର ବିଶ୍ୱର ଏକ ବିସ୍ମୟକର ବ୍ୟକ୍ତିତ୍ୱ । ପାରମାର୍ଥୀକ ଦୃଷ୍ଟିରେ ସେ ଜଣେ ଧର୍ମ ସଂସ୍କାରକ, ଭକ୍ତିଧାରାର ବଡ଼ ଆଚାର୍ଯ୍ୟ, ବୈଷ୍ଣବ ରୂପେ ଜଣା ପଡୁଥିଲେ ମଧ୍ୟ ସେ ଥିଲେ ସନାତନ ଧର୍ମର ଅଧିଦେବତା । ଏହା ଲେଖକର ନିଜ ମତ ନୁହେଁ ଏହା ଶାସ୍ତ୍ରର କଥା । ଭବିଷ୍ୟ ପୁରାଣ, ବାୟୁ ପୁରାଣ, ଇଶାନସଂହିତା, କୃଷ୍ଣଯାମଳ ଏବଂ ଶ୍ରୀମଦ୍ ଭାଗବତାଦି ଅନ୍ୟ କେତେକ ଶାସ୍ତ୍ରରୁ ଏହା ଜଣାପଡେ, ମାତ୍ର ପ୍ରୋକ୍ତ ପ୍ରବନ୍ଧରେ ତାହା ଆଲୋଚନା କରାଯାଉ ନାହିଁ । ତାଙ୍କ ଜନ୍ମଠାରୁ, ବାଲ୍ୟ, ପୌଗଣ୍ଡାଦି ସବୁଥିରେ ବହୁ ଅଲୌକିକତା ତ ଥିଲା । ସେ ଥିଲେ ମୋଧାବୀ, ପଣ୍ଡିତ, ଜଣେ ଉତ୍ତମ ଅଧ୍ୟାପକ, ସଂଗଠକ, ନିର୍ଭୀକ, ଭକ୍ତିମାନ୍ ଏ ସମସ୍ତ ଜାଗତିକ ଗୁଣରେ ଗୁଣି । କେଶବ କାଶ୍ମିର, ସାର୍ବଭୌମଭଟ୍ଟାଚାର୍ଯ୍ୟ, କାଶୀର ଅଦ୍ୱୈତବାଦୀ ପ୍ରକାଶାନଂଦ, ବହୁ ବୌଦ୍ଧ, ଜୈନ ପଣ୍ଡିତଙ୍କୁ ସେ ପରାସ୍ତ କରିଥିଲେ ମଧ୍ୟ କାହା ମନରେ ଦୁଃଖ ଦେଇ ନାହାନ୍ତି । କଥା ଥିଲା ତାଙ୍କର ଯୁକ୍ତିଯୁକ୍ତ ଓ ମଧୁର । ବିନୟ ବ୍ୟବହାରରେ ସେ ସମସ୍ତଙ୍କ ମନ କିଣି ନେଉଥିଲେ । ତାଙ୍କ ଆତିଥ୍ୟତା ପ୍ରେମ କେବଳ ମାନବ ସମାଜ ପାଇଁ ନୁହେଁ, ପଶୁପକ୍ଷୀ, ସ୍ଥାବର, ଜଙ୍ଗମ ସମସ୍ତ ବସ୍ତୁ ପାଇଁ ଥିଲା ଅପୂର୍ବ । ପୁରୀରୁ ବୃନ୍ଦାବନ ଯିବା ବାଟରେ ଝାରିଖଣ୍ଡ ବନ ପଥରେ ସେ ବାଘ, ଭାଲୁ, ହାତୀ, ମୃଗ, ମୟୂର, ସର୍ପାଦି ସହ ବୃକ୍ଷଲତାଙ୍କୁ କୃଷ୍ଣ ପ୍ରେମରେ ଏକାଠି ନଚାଇ ଥିଲେ । କେତେ ଜାଗାରେ ତାଙ୍କ ପ୍ରେମ ପଦ ସ୍ପର୍ଶରେ ପାଷାଣ ମଧ୍ୟ ତରଳି ଯାଇଥିଲା । ଯୌବନରେ ସେ ନବଦ୍ୱୀପର ଅତ୍ୟାଚାରୀ ଶାସକ ଚାନ୍ଦକାଜୀଙ୍କ ବିରୁଦ୍ଧରେ ଆନ୍ଦୋଳନ କରି ତାଙ୍କର ଏବଂ ବଙ୍ଗ ନବାବ ହୁସେନ୍ ଶାହାଙ୍କ ମନକୁ ପରିବର୍ତ୍ତନ କରାଇଥିଲେ ଯାହା ତାଙ୍କ ନିର୍ଭୀକତାର ପ୍ରମାଣ ଦିଏ । ଦସ୍ୟୁ ସ୍ୱଭାବ ଜଗାଇ ମାଧାଇ ଦୁହିଁକି ଭକ୍ତରେ ପରିଣତ କଲେ । ପ୍ରେମ ଦ୍ୱାରା ସେ ସମଗ୍ର ଜଗତକୁ ଜିଣିଥିବାରୁ କେହି କେହି ତାଙ୍କୁ ପ୍ରେମ ପୁରୁଷୋତ୍ତମ ବୋଲି କହୁଥିଲେ । ପାରମାର୍ଥୀକ ସାମ୍ୟବାଦ ଦ୍ୱାରା ସେ ଧନୀ, ଦରିଦ୍ର, ଶିକ୍ଷିତ, ଅଶିକ୍ଷିତ, ପତିତ, ଜାତିଚ୍ୟୁତ, ଜାତିବର୍ଣ୍ଣ ନିର୍ବିଶେଷରେ ସେ ହରିନାମ କୀର୍ତ୍ତନ ରୂପକ ଗୋଟିଏ ବେଦିରେ ସମସ୍ତଙ୍କୁ ଠିଆ କରାଇଥିଲେ ।



ପରବର୍ତ୍ତୀ ସମୟରେ ସେ ସଦ୍‌ଗୁରୁ ବରଣ କରି ସନ୍ନ୍ୟାସୀ ହୋଇ ପୁରୀକୁ ଆସି ସେଠାରେ କ୍ରମାଗତ ୧୨ ବର୍ଷ ରହିଥିଲେ । ସେହିଠାରୁ ସେ ୬ ବର୍ଷ ଭାରତ ଭ୍ରମଣରେ ବହିର୍ଗତ ହୋଇଥିଲେ । କୃଷ୍ଣଭକ୍ତି, ପ୍ରେମରେ ଶେଷରେ ତାଙ୍କର ବାହ୍ୟଜ୍ଞାନ ରହୁନଥିଲା । ନିଜ ଦେହ ଅଛି ବୋଲି ସେ ଜାଣିପାରୁ ନଥିଲେ । ସେ ନବଦ୍ୱୀପ ମାୟାପୁରରେ ୧୪୮୬ ଦୋଳପୂର୍ଣ୍ଣିମୀ ଚନ୍ଦ୍ରଗ୍ରହଣ ସମୟରେ ମାତା ଶଚୀ ଦେବୀ ଓ ପିତା ଜଗନ୍ନାଥ ମିଶ୍ରଙ୍କୁ ଆଶ୍ରୟ କରି ଜନ୍ମ ହୋଇଥିଲେ ଏବଂ

ମାତ୍ର ୪୮ ବର୍ଷ ବୟସରେ ପୁରୀରେ ଅପ୍ରକଟ ହୋଇଥିଲେ ୧୫୩୩ ଖ୍ରୀଷ୍ଟାବ୍ଦରେ ପ୍ରେମ ଭକ୍ତିର ଆତିଶଯ୍ୟରେ ସେ ଶ୍ରୀଜଗନ୍ନାଥଙ୍କ ଶ୍ରୀଅଙ୍ଗରେ ଲୀନ ହୋଇଯାଇଥିଲେ । ତାଙ୍କ ଦେହାନ୍ତ ସମ୍ବନ୍ଧେ ବର୍ତ୍ତମାନର କଳ୍ପିତ 'ବୈଷ୍ଣବ ଲୀଳାମୃତ'ରେ ନାନା କଥା ଶୁଣାଗଲେ ମଧ୍ୟ ଓଡ଼ିଶାର ତ୍ରିକାଳଦର୍ଶୀ ମହାତ୍ମା ତାଙ୍କ ସମସାମୟିକ ଶ୍ରୀ ଅଚ୍ୟୁତାନନ୍ଦ ମହାପୁରୁଷଙ୍କ ଶୂନ୍ୟ ସଂହିତାର ତଥ୍ୟ ଯୁକ୍ତିଯୁକ୍ତ ଯେଉଁଥିରେ କୁହାଯାଇଛି ଯେ ସେ ଶ୍ରୀଜଗନ୍ନାଥଙ୍କ ଠାରେ ବିଲୀନ ହୋଇଛନ୍ତି । ରଥଯାତ୍ରା ସମୟରେ ରଥାଗ୍ରେ ସେ ସାତଟି ସଂକୀର୍ତ୍ତନ ଦଳ ମଧ୍ୟରେ ସାତ ମୂର୍ତ୍ତିରେ ପ୍ରକଟ ହୋଇ ସଂକୀର୍ତ୍ତନ ରାସ କରିଥିଲେ । ଓଡ଼ିଶାର ଶ୍ରୀଜଗନ୍ନାଥଙ୍କ ଭକ୍ତ କହ୍ନେଇ ଖୁଣ୍ଟିଆ ରଥ ସମୟରେ ଶ୍ରୀଜଗନ୍ନାଥ ଓ ଶ୍ରୀଚୈତନ୍ୟଙ୍କ ମଧ୍ୟରେ ପ୍ରକଟିତ ମହାଭାବ ସ୍ୱୟଂ ଦର୍ଶନ କରି 'ମହାଭାବପ୍ରକାଶ' ନାମକ ଗ୍ରନ୍ଥ ରଚନା କରିଛନ୍ତି । ବହୁ ଭକ୍ତଙ୍କୁ ସେ ଭଗବାନଙ୍କର ବିଭିନ୍ନ ଅବତାରର ରୂପ ପ୍ରଦର୍ଶନ କରିଥିଲେ ମଧ୍ୟ ବାସୁଦେବ ସାର୍ବଭୌମଙ୍କୁ ଦେଖାଇଥିବା ଷଡ଼ଭୂଜ ମୂର୍ତ୍ତି ଏବଂ ଗରୁଡ଼ଙ୍କ ପଶ୍ଚାଦ୍ ଭାଗରେ ତାଙ୍କ ପଦ ସ୍ପର୍ଶରେ ତରଳି ଯାଇ ପଦଚିହ୍ନ ରହିଥିବା ପାଦପଦ୍ମ ଶ୍ରୀମନ୍ଦିର ମଧ୍ୟରେ ଚନ୍ଦନ ତୁଳସୀ ଦ୍ୱାରା ନିତ୍ୟ ଅର୍ଚ୍ଚିତ ହେଉଛନ୍ତି । ତାଙ୍କ ଷଡ଼ଭୂଜ ରୂପ ପ୍ରଦର୍ଶନ କଥା ମାଦଳାପାଞ୍ଜିରେ ଉଲ୍ଲେଖ ଅଛି । ଓଡ଼ିଆ ପଞ୍ଚସଖାମାନେ ତାଙ୍କ ଭଗବତ୍ତା ସ୍ୱୀକାର କରିଛନ୍ତି ।

ପିଲାଦିନରୁ ତାଙ୍କର ଅନେକ ନାମ ନିମାଇଁ, ଗୌରାଙ୍ଗ, ବିଶ୍ୱମ୍ଭର, ଗୌରହରି ମହାପ୍ରଭୁ ସନ୍ନ୍ୟାସ ନାମ ଶ୍ରୀକୃଷ୍ଣ ଚୈତନ୍ୟ ଇତ୍ୟାଦି । ପୁରୀ ଶ୍ରୀମନ୍ଦିର ଶ୍ରୀଜଗନ୍ନାଥ ପୀଠ ବିଶ୍ୱର ସବୁଠାରୁ ପ୍ରାଚୀନ ବିଷ୍ଣୁ ଶ୍ରୀକ୍ଷେତ୍ର । ଏଠାରେ ଶ୍ରୀଚୈତନ୍ୟଙ୍କ ଭଗବତ୍ତା ପରୀକ୍ଷା କରାଯାଇ ଶ୍ରୀମନ୍ଦିର ଭିତର ଓ ବାହାର ବେଢ଼ାରେ ତାଙ୍କୁ ଅବତାର ପୁରୁଷ ଭାବେ ପୂଜା କରାଯାଉଛି । ଏବେ ସମଗ୍ର ବିଶ୍ୱରେ ତାଙ୍କର ବିଗ୍ରହ ପୂଜା, କୀର୍ତ୍ତନାଦି ହେଉଥିଲେ ମଧ୍ୟ ବଂଗ ଓ ଉତ୍କଳରେ ଅଷ୍ଟପ୍ରହରୀ ନାମ ଯଜ୍ଞରେ ତାଙ୍କ ପୂଜା ଓ ନାମ ସଂକୀର୍ତ୍ତନ ହୋଇଥାଏ । କୌଣସି ସାଧୁ, ମହାପୁରୁଷଙ୍କୁ ଦେଶକାଳ ଗଣ୍ଡି ମଧ୍ୟରେ ଆବଦ୍ଧ କରିବା ଠିକ୍ ନୁହେଁ, ପରମାର୍ଥ ବିଚାରରେ ବଙ୍ଗଳାର ମାୟାପୁର(ନବଦ୍ୱୀପ) ରେ ଜନ୍ମ ହୋଇଥିଲେ ମଧ୍ୟ ତାଙ୍କୁ ପ୍ରବାସୀ ଓଡ଼ିଆ କହିବା ଭୁଲ ହେବ ନାହିଁ । ଜଣେ ଓଡ଼ିଆ ଭାବେ ଓଡ଼ିଶାକୁ ଭଲ ପାଇବା, ଓଡ଼ିଶା (ପୁରୀ)କୁ କର୍ମ (ସାଧନ) ଭୂମି ଏବଂ ଶ୍ରୀଜଗନ୍ନାଥଙ୍କୁ ଏକମାତ୍ର ସର୍ବେଶ୍ୱର ସ୍ୱରାଟ ଅବତାରୀ ଶ୍ରୀକୃଷ୍ଣ ଭାବେ ଆରାଧନା ଓ ଜଗନ୍ନାଥ ସଂସ୍କୃତିକୁ ସମଗ୍ର ବିଶ୍ୱରେ ପ୍ରଚାର ତଥା ଜଗନ୍ନାଥଙ୍କୁ କି ପ୍ରକାରେ ଭକ୍ତି କରାଯାଏ, ତା'ର ଶିକ୍ଷା ସେ ସ୍ୱୟଂ ଆଚରଣ କରି ଶିକ୍ଷା ଦେଇ ଯାଇଛନ୍ତି, ସେ ସମସ୍ତ ଅବଶ୍ୟ ଏଠାରେ ଆଲୋଚନା କରାଯାଉ ନାହିଁ ।

ଶ୍ରୀଚୈତନ୍ୟ ଚରିତକାରମାନଙ୍କ ମଧ୍ୟରୁ ଶ୍ରୀ ଜୟାନଂଦ ତାଙ୍କ ଚୈତନ୍ୟ ମଙ୍ଗଳରେ ପ୍ରଥମେ ହିଁ ଏକଥା ଉଲ୍ଲେଖ କଲେ, ଶ୍ରୀଚୈତନ୍ୟ ଦେବଙ୍କ ପୂର୍ବପୁରୁଷ ଓଡ଼ିଶାର ଯାଜପୁର ନିକଟ କପିଳେଶ୍ୱର ଗ୍ରାମର । ଯାଜପୁର ନିବାସୀ ବୈଦିକ ବାତ୍ସାୟନ ଗୋତ୍ରୀୟ ବ୍ରାହ୍ମଣ ଥିଲେ ବିଶୁଦ୍ଧ ମିଶ୍ର । ବିଶୁଦ୍ଧଙ୍କ ପୁତ୍ର ମଧୁକର ମିଶ୍ର ୧୪୫୧ ରେ ରାଜାଙ୍କ ସହ ମତଭେଦ ହେତୁ ଏବଂ ସଂସ୍କୃତ ଅଧ୍ୟୟନ ପାଇଁ ସିଲହଟ୍‌ରେ ଯାଇ ରହିଲେ । ତାଙ୍କର ଉପେନ୍ଦ୍ର, ରଙ୍ଗଦ, କୀର୍ତ୍ତିଦା, କୃତ୍ତିବାସ ନାମରେ ଚାରିପୁତ୍ର । ଉପେନ୍ଦ୍ର ମିଶ୍ରଙ୍କର ସାତ ପୁତ୍ର ସେମାନେ ହେଲେ– (୧) କଂସାରୀ (୨) ପରମାନନ୍ଦ (୩) ପଦ୍ମନାଭ (୪) ସର୍ବେଶ୍ୱର (୫) ଜଗନ୍ନାଥ (୬) ଜନାର୍ଦ୍ଦନ (୭) ତ୍ରୈଲୋକ୍ୟନାଥ । ଶ୍ରୀଜଗନ୍ନାଥ ମିଶ୍ର ସଂସ୍କୃତରେ ଅଗାଧ ପାଣ୍ଡିତ୍ୟ ଯୋଗୁଁ ପୁରନ୍ଦର ଉପାଧି ପାଇ ସଂସ୍କୃତ ବିଦ୍ୟାର ଚର୍ଚ୍ଚା ନିମନ୍ତେ ନବଦ୍ୱୀପ ମାୟାପୁରରେ ଯାଇ ୧୪୬୬ ଖ୍ରୀଷ୍ଟାବ୍ଦରୁ ବାସ କରି ନଦୀୟା ବେଲ ପୋଖରୀର ପ୍ରବାସୀ ଓଡ଼ିଆ ନୀଳାମ୍ବର ଚକ୍ରବର୍ତ୍ତୀଙ୍କ ଝିଅ ଶଚୀଦେବୀଙ୍କୁ ବିବାହ କରନ୍ତି । ଓଡ଼ିଶାରେ ଚକ୍ରବର୍ତ୍ତୀ ବ୍ରାହ୍ମଣ ଥିବାର ଶ୍ରୀ ଅନନ୍ତ ବାସୁଦେବ ମନ୍ଦିର ଶିଳାଲିପିରୁ ଜଣାପଡ଼େ । ଶ୍ରୀ ଜଗନ୍ନାଥ ମିଶ୍ରଙ୍କର ବିଶ୍ୱରୂପ ଓ ବିଶ୍ୱମ୍ଭର ଦୁଇ ପୁତ୍ର । ବିଶ୍ୱମ୍ଭର ମିଶ୍ର ହିଁ ଶ୍ରୀଚୈତନ୍ୟ ଦେବ । ଶ୍ରୀଚୈତନ୍ୟଙ୍କ ବଂଶଧର ଜନୈକ ଶ୍ରୀ ପ୍ରଦ୍ୟୁମ୍ନ ମିଶ୍ର– ଶ୍ରୀଚୈତନ୍ୟ ଉଦୟାବଳୀରେ ଏ ସମ୍ପର୍କରେ ତଥ୍ୟ ଦେଇଥିବା ସଂବାଦରେ ମଧ୍ୟ ପ୍ରକାଶିତ ହୋଇଥିଲା । ଶ୍ରୀଚୈତନ୍ୟ ଭାଗବତ ଅନ୍ତ୍ୟଖଣ୍ଡ ୨ୟ ଅଧ୍ୟାୟରେ ସନ୍ନ୍ୟାସ ଗ୍ରହଣ କରି ପୁରୀ ଆସିବା ବାଟରେ ଯାଜପୁରଠାରେ ସଂଗୀ ଭକ୍ତମାନଙ୍କୁ ଛାଡ଼ି ଶ୍ରୀଚୈତନ୍ୟ ଦେବ ଉଭାନ୍ ହୋଇ ଯାଇଥିଲେ ଏବଂ ତା' ଆରଦିନ ସକାଳୁ ଫେରିଲେ, ଏହି ସମୟରେ ସେ ନିଜର ପିତୃପୁରୁଷଙ୍କ ସ୍ଥାନ ଏକାକୀ ଭ୍ରମଣ କରିଥିଲେ ।

ଅନୁସନ୍ଧାନରୁ ଜଣାପଡ଼େ, ଶ୍ରୀଚୈତନ୍ୟ ଦେବଙ୍କ ମୁଖ୍ୟ ପାର୍ଷଦ ଶ୍ରୀ ଅଦ୍ୱୈତାଚାର୍ଯ୍ୟଙ୍କର ଘର ପୁରୀରେ ଥିଲା, ଯାହାକି ବର୍ତ୍ତମାନ କୋଠ ଭୋଗ ମଠ ନାମରେ ପ୍ରସିଦ୍ଧ । ସେହିପରି ମାଧବ ମିଶ୍ରଙ୍କ ପୁତ୍ର ଗୌର ପାର୍ଷଦ ଗଦାଧର ପଣ୍ଡିତଙ୍କ ପିତୃପୁରୁଷଙ୍କ ସ୍ଥାନ ଥିଲା ପୁରୀର ଟୋଟାଗୋପୀନାଥ ମନ୍ଦିର । ଶ୍ରୀ ଗଦାଧର ଭବନେ ମୋହନ ଗୋପୀନାଥ ବାକ୍ୟରୁ ଏହା ଜଣାପଡ଼େ । ଓଡ଼ିଆ ଶିବାନନ୍ଦ ସେଣ ବାଣିଜ୍ୟ ଉଦ୍ଦେଶ୍ୟରେ ବଙ୍ଗଳାରେ ରହି ସେନ୍ ହୋଇଯାଇଥିଲେ । ସେ ପ୍ରତିବର୍ଷ ବଙ୍ଗୀୟ ଭକ୍ତମାନଙ୍କୁ ସାଙ୍ଗରେ ଆଣି ରଥଯାତ୍ରା ସମୟରେ ପୁରୀ ଆସୁଥିଲେ । ଓଡ଼ିଶା ଓ ବଙ୍ଗଳା ମଧ୍ୟରେ ବାଟ ଘାଟ ତାଙ୍କୁ ବେଶ୍ ଜଣାଥିଲା । ଭଗବଦ୍ ଅବତାର ହେଲେ ମଧ୍ୟ ଶ୍ରୀଚୈତନ୍ୟ ଦେବ ନିଜକୁ ସର୍ବଦା ଲୁଚାଇ ରଖୁଥିଲେ। ଦୈନ୍ୟ ଥିଲା ତାଙ୍କର ଭୂଷଣ । ତୃଣାଦପୀ ସୁନୀଚ, ତରୁପରି

ସହିଷ୍ଣୁ ହୋଇ କୃଷ୍ଣ ନାମ କୀର୍ତ୍ତନ କରିବାକୁ ସେ ସମସ୍ତଙ୍କୁ କହୁଥିଲେ । ଆଜିକାଲିର ବାବାମାନେ ନିଜକୁ ଆତ୍ମ ଘୋଷିତ ଭଗବାନ୍ କହୁଥିବା ବେଳେ ଶ୍ରୀଚୈତନ୍ୟଙ୍କୁ କେହି ଭଗବାନ କହିଲେ ସେ ଅତ୍ୟନ୍ତ ବ୍ୟସ୍ତ ହୋଇ କହୁଥିଲେ ସାଧାରଣ ଜୀବକୁ ଭଗବାନ କହିବା ଅପରାଧ । ଜୀବା ଧମେ ବିଷ୍ଣୁ ଜ୍ଞାନ କଭୁ ନା କରିବା ।

ଜଣେ ସନ୍ନ୍ୟାସୀ ଭାବରେ ଜଗନ୍ନାଥଙ୍କ ଭକ୍ତଭାବ ଅଭିନୟ କରି ସେ ଓଡ଼ିଶାରେ ଶ୍ରୀଜଗନ୍ନାଥଙ୍କୁ ମଣିମା– ମଣିମା ବୋଲି ଡ଼ାକୁଥିଲେ ଏବଂ ଓଡ଼ିଆ ଜଗମୋହନ ପରିମୁଣ୍ଡା ଯାଉଁ ଭଜନ ଗାନ, ଗୀତଗୋବିନ୍ଦ ଶ୍ରବଣାଦି ସହ ଶ୍ରୀଜଗନ୍ନାଥଙ୍କ ମହାପ୍ରସାଦକୁ ସମ୍ମାନ ଦେଇ ଭଲ ପାଉଥିଲେ । ନିତ୍ୟ ପାଣିଶଂଖ ବାଜିଲେ ଭୋରରୁ ଜଗନ୍ନାଥ ଦର୍ଶନ, ମହାପ୍ରଭୁଙ୍କ ଅଗ୍ରେ ନୃତ୍ୟ କୀର୍ତ୍ତନ କରୁଥିଲେ । ରାଜଗୁରୁ କାଶୀ ମିଶ୍ରାଳୟ ଗମ୍ଭୀରା ବା ବର୍ତ୍ତମାନର ରାଧାକାନ୍ତ ମଠରେ ସେ ରହୁଥିଲେ । ଏଠାରେ ତାଙ୍କ ପାଦୁକା କନ୍ଥା, କମଣ୍ଡଳୁ ଅଦ୍ୟାପି ପୂଜା ପାଉଛି । ଓଡ଼ିଆ ପଞ୍ଚସଖା ତାଙ୍କର ପାର୍ଷଦ ଥିଲେ । ସେ ସେମାନଙ୍କୁ ଭଲ ପାଉଥିଲେ ବୋଲି ପଞ୍ଚସଖାଙ୍କ ଲେଖାରୁ ଜଣାଯାଏ । ରାଗମାର୍ଗୀୟ ଭକ୍ତ ରାୟ ରାମାନଂଦ ପଟ୍ଟନାୟକ, ଶିଖି ମହାନ୍ତି, ତାଙ୍କ ଭଉଣୀ ମାଧବୀ ଦେବୀ, ଗଜପତି ମହାରାଜ ପ୍ରତାପରୁଦ୍ର ଦେବ, କହ୍ନେଇ ଖୁଣ୍ଟିଆ ଆଦି ଅନେକ ଓଡ଼ିଆ ଭକ୍ତ ତାଙ୍କର ଅତ୍ୟନ୍ତ ଅନ୍ତରଙ୍ଗ ଥିଲେ । ଜଗନ୍ନାଥେ ଦେଖେ ସାକ୍ଷାତ ବ୍ରଜେନ୍ଦ୍ର ନନ୍ଦନ । ଅର୍ଥାତ୍ ଶ୍ରୀଜଗନ୍ନାଥଙ୍କୁ ସେ ସାକ୍ଷାତ ଶ୍ରୀ ନନ୍ଦନନ୍ଦନ ଶ୍ରୀକୃଷ୍ଣ ଭାବେ ଦର୍ଶନ କରୁଥିଲେ । ପଞ୍ଚସଖାମାନଙ୍କ ସହ ଓଡ଼ିଶାର ବିଭିନ୍ନ ସ୍ଥାନ ଭ୍ରମଣ କରି କୃଷ୍ଣ ଜଗନ୍ନାଥଙ୍କ ମହିମା ଆଚାର ଦ୍ୱାରା ପ୍ରଚାର କରୁଥିଲେ ।

ବଙ୍ଗଳା ଅପେକ୍ଷା ଓଡ଼ିଶାରେ ଅଧିକ ଏବଂ ପ୍ରାଚୀନ ଚୈତନ୍ୟ ମନ୍ଦିର ଦେଖାଯାଏ । ପ୍ରାୟ ୩୦ ହଜାରରୁ ଅଧିକ ଶ୍ରୀଚୈତନ୍ୟ ଭଜନ ଓଡ଼ିଆ ଭାଷାରେ ଲେଖାଯାଇଛି । ଓଡ଼ିଶାରେ ଏପରି ଗ୍ରାମ ନାହିଁ ଯେଉଁଠି ଶ୍ରୀଜଗନ୍ନାଥ ଦାସଙ୍କ ଭାଗବତ ଗାଦି ଘର ଏବଂ ଶ୍ରୀଚୈତନ୍ୟଙ୍କ ଖୋଳ କରତାଳ, ସଂକୀର୍ତ୍ତନ ଗୋଷ୍ଠୀ ନାହାନ୍ତି । ଓଡ଼ିଶାର ସଂକୀର୍ତ୍ତନ ଦଳ ରାଣୀହାଟି ସଂକୀର୍ତ୍ତନ ଆରମ୍ଭରେ ଆହା ମମ ପ୍ରାଣ ଗୌରାଙ୍ଗ ହେ' ବୋଲି ସମ୍ବୋଧନ କରିଥାଆନ୍ତି । ତାଙ୍କ ପ୍ରବର୍ତ୍ତିତ ଅଷ୍ଟପ୍ରହର ନାମ ଯଜ୍ଞ ତ ଗ୍ରାମେ ଗ୍ରାମେ ସହର ସହରେ ଅନୁଷ୍ଠିତ ହେଉଛି । ବର୍ହିମୁଖତାର ବଶବର୍ତ୍ତୀ ହୋଇ କେତେକ ତାଙ୍କୁ ଓଡ଼ିଶାର ଅଧପତନର କାରଣ ଦର୍ଶାଇଥିଲେ, ଏହା କିନ୍ତୁ ସର୍ବାନ୍ତକରଣରେ ଗ୍ରହଣ କରି ହୁଏନି । ଏହି ମତକୁ – ଅଧ୍ୟାପକ ପ୍ରଭାତ ମୁଖାର୍ଜୀ ଇତ୍ୟାଦି ଏହାକୁ ଖଣ୍ଡନ କରିଛନ୍ତି । ବରଂ ତାଙ୍କ ଉତ୍କଳାଗମନ ଦ୍ୱାରା ଓଡ଼ିଶାର କଳା, ସଂସ୍କୃତି ସାହିତ୍ୟାଦି ପୂର୍ବଠାରୁ ଅଧିକ ଋଦ୍ଧିମନ୍ତ ହୋଇଛି । ଓଡ଼ିଶାରେ ୩୫ ହଜାରରୁ ଅଧିକ କାରୁକଳାଯୁକ୍ତ ବିଷ୍ଣୁମନ୍ଦିର ନିର୍ମାଣ, କଟକର ବାଲିଯାତ୍ରାଦି ଏବଂ କେତେ ଯେ ଭକ୍ତି ସାହିତ୍ୟ ଗ୍ରନ୍ଥ ପ୍ରଣୀତ ହୋଇଛି, ତା'ର ସଠିକ୍ ହିସାବ ଏ ପର୍ଯ୍ୟନ୍ତ କରାଯାଇନାହିଁ । ବିଦଗ୍ଧ ଚିନ୍ତାମଣି ଯେଉଁଥିରେ ଉପମା, ଅର୍ଥ ଗୌରବ, ପଦଲାଳିତ୍ୟ ଥିବା ପରି ଅପୂର୍ବ ଗ୍ରନ୍ଥ ଭାରତବର୍ଷର ଅନ୍ୟ କୌଣସି ରାଜ୍ୟରେ ପରିଦୃଷ୍ଟ ହୁଏ ନାହିଁ । ଶ୍ରୀଚୈତନ୍ୟ ଦେବ ଯେ ସମଗ୍ର ମାନବଜାତିକୁ ସମଦୃଷ୍ଟିରେ ଦେଖୁଥିଲେ ଓଡ଼ିଆଙ୍କୁ ପ୍ରାଣ ଦେଇ ଭଲ ପାଉଥିଲେ ଏ ବିଷୟରେ ଅଧିକ ଗବେଷଣା କରାଗଲେ ତାଙ୍କ ମହା ବଦାନ୍ୟତାର କଥା ଅଧିକ ଉଦ୍‌ଘାଟିତ ହେବ । ବର୍ତ୍ତମାନ ଓଡିଶାର କେନ୍ଦ୍ରାପଡ଼ାର ଛୋଟି ଗ୍ରାମର ଶ୍ରୀ କେଦାରନାଥ ଦତ୍ତ ଭକ୍ତି ବିନୋଦ ଠାକୁର ଯିଏ କି ଓଡ଼ିଶାର ପ୍ରଥମ 'ଲ ଗ୍ରାଜୁଏଟ୍ କେନ୍ଦ୍ରାପଡ଼ା, ଭଦ୍ରକ ହାଇସ୍କୁଲ, କଟକ ଭକ୍ତମଧୁ ବିଦ୍ୟାପୀଠର ପ୍ରାକ୍ତନ ପ୍ରଧାନଶିକ୍ଷକ, ପୁରୀର ତତ୍‌କାଳୀନ ଡ଼େପୁଟି କଲେକ୍ଟର ଯାହାଙ୍କୁ ଗୌର ନିଜ ଜନ ସପ୍ତମ ଗୋସ୍ୱାମୀ କୁହାଯାଏ, ଯାହାଙ୍କର ପୁତ୍ର ଆଦି ପ୍ରଭୁପାଦ ଶ୍ରୀ ଭକ୍ତି ସିଦ୍ଧାନ୍ତ ସରସ୍ୱତୀ ଠାକୁର (ପୁରୀରେ ପ୍ରକଟିତ) ଏବଂ ତାଙ୍କ ଶିଷ୍ୟ ଇସ୍କନ୍ ପ୍ରତିଷ୍ଠାତା ଭକ୍ତି ବେଦାନ୍ତ ସ୍ୱାମୀଙ୍କ ଦ୍ୱାରା ଶ୍ରୀଚୈତନ୍ୟଙ୍କ ବିମଳ ଶିକ୍ଷାମୃତ ଓ ଜଗନ୍ନାଥ ସଂସ୍କୃତି ସମଗ୍ର ବିଶ୍ୱରେ ପରିବ୍ୟାପ୍ତ ହେଲାଣି । ଏହା କ'ଣ ଓଡ଼ିଶା ପାଇଁ ଗୌରବର କଥା ନୁହେଁ କି? ଠାକୁର ନିଗମାନନ୍ଦଙ୍କ ଅନୁଗା ନାରାୟଣୀ ଦେବୀ କହିଛନ୍ତି ଶ୍ରୀଚୈତନ୍ୟ ଦେବ ଆମର ଜାତୀୟ ସମ୍ପତ୍ତି । ଘରର ପରମ ଧନ । ଶ୍ରୀଚୈତନ୍ୟ ଦେବଙ୍କ ଦର୍ଶନର ନାମ ଅଚିନ୍ତ୍ୟ ଭେଦାଭେଦବାଦ । ଯାହାକି ଶଙ୍କରାଚାର୍ଯ୍ୟଙ୍କ ବହୁ ପୂର୍ବରୁ ଥିଲା । ଏସବୁରୁ ଜଣାଯାଏ ଓଡ଼ିଆମାନେ ମଧ୍ୟ ତାଙ୍କୁ ଭଲ ପାଉଥିଲେ । ଶଚୀମାତା ତାଙ୍କୁ କହିଥିଲେ ନବଦ୍ୱୀପ ଓ ନୀଳାଚଳ ତୁମର ଦୁଇଟି ଘର । ଏଣୁ ବୃନ୍ଦାବନ ନ ଯାଇ ପୁରୀରେ ହିଁ ରହ । ସେ ଓଡିଶାକୁ ଅନ୍ତରର ସହ ଭଲ ପାଇ ଉତ୍କଳର ସାଂସ୍କୃତିକ ରାଜଧାନୀ ପୁରୀରେ ହିଁ ରହିଥିଲେ ।

ବୁଢ଼ୀବଗିଚା, ଖୋର୍ଦ୍ଧା

❖ ❖ ❖



# ଓଡ଼ିଶାର କେତୋଟି ବୌଦ୍ଧ ପର୍ଯ୍ୟଟନ ସ୍ଥଳୀ

ରମେଶ ପାତ୍ର

ମାନବ ସମାଜର ଇତିହାସରେ ବୁଦ୍ଧଦେବଙ୍କ ଜୀବନ କାହାଣୀ ଏକ ବାଧ୍ୟତା ମୂଳକ ଅଧ୍ୟାୟ । ଆମ ଦେଶରେ ଅନେକ ରାଜ୍ୟର ବୌଦ୍ଧ ପର୍ଯ୍ୟଟନ ସ୍ଥଳୀର ବିକାଶ ନିମନ୍ତେ ଅନେକ ଥର ଦାବି ହୋଇ ଆସିଛି । ନୂଆଦିଲ୍ଲୀର ବୌଦ୍ଧ ପର୍ଯ୍ୟଟନ ସମ୍ମିଳନୀରେ ଆମ ଓଡ଼ିଶାର ପର୍ଯ୍ୟଟନ ମନ୍ତ୍ରୀଙ୍କ ଦାବି ଏକ ସ୍ୱାଗତଯୋଗ୍ୟ ପଦକ୍ଷେପ ।



ଆସୋସିଏଟେଡ୍ କମ୍ବର୍ସ ଅଫ୍ କମର୍ସ ଆଣ୍ଡ ଇଣ୍ଡଷ୍ଟ୍ରୀଜ୍ ଅଫ୍ ଇଣ୍ଡିଆ (ଆସୋଚାମ୍) ପକ୍ଷରୁ ବୌଦ୍ଧ ପର୍ଯ୍ୟଟନ ଉପରେ ଏକ ଆନ୍ତର୍ଜାତିକ ସମ୍ମିଳନୀ ଅନୁଷ୍ଠିତ ହୋଇଯାଇଛି । ଏଥିରେ ଓଡ଼ିଶାର ପର୍ଯ୍ୟଟନ ଓ ସଂସ୍କୃତି ମନ୍ତ୍ରୀ ଅଶୋକ ଚନ୍ଦ୍ର ପଣ୍ଡା ଯୋଗ ଦେଇ ଓଡ଼ିଶାର ବୌଦ୍ଧ ପର୍ଯ୍ୟଟନ ସ୍ଥଳୀର ବିକାଶ ପାଇଁ କେନ୍ଦ୍ର ସରକାର ସ୍ୱତନ୍ତ୍ର ଭାବେ ଧ୍ୟାନ ଦେବା ପାଇଁ ଦାବି କରିଥିଲେ । ଶ୍ରୀ ପଣ୍ଡା ଓଡ଼ିଶା ମନ୍ତ୍ରିମଣ୍ଡଳରେ ପର୍ଯ୍ୟଟନ ମନ୍ତ୍ରୀ ହେଲା ପରେ ଓଡ଼ିଶାର ପର୍ଯ୍ୟଟନ କ୍ଷେତ୍ରରେ ଅନେକ ବିକାଶମୂଳକ କାର୍ଯ୍ୟକ୍ରମରେ ମନ ବଳାଇଛନ୍ତି । ଓଡ଼ିଶାରେ ଏକାଧିକ ଗୁରୁତ୍ୱପୂର୍ଣ୍ଣ ବୌଦ୍ଧ ପର୍ଯ୍ୟଟନସ୍ଥଳୀ ରହିଛି । ଏହାର ବିକାଶ ଏବଂ ପ୍ରଚାର ଓ ପ୍ରସାର ପାଇଁ କେନ୍ଦ୍ର ସରକାର ଯଥେଷ୍ଟ ଗୁରୁତ୍ୱ ଦେବା ଉଚିତ । ପର୍ଯ୍ୟଟନ ମନ୍ତ୍ରୀ ଭାବେ ସେ ଦାୟିତ୍ୱ ଗ୍ରହଣ କରିବା ପରେ ଓଡ଼ିଶାରେ ପର୍ଯ୍ୟଟନ କ୍ଷେତ୍ରରେ ବିକାଶ ହେବ ବୋଲି ଓଡ଼ିଶାର ଜନସାଧାରଣ ଆଶା କରିଛନ୍ତି । କେନ୍ଦ୍ର ସରକାରଙ୍କ ଦ୍ୱାରା ପ୍ରସ୍ତୁତ ଟ୍ୟୁରିଜିମ୍ ରୋଡ୍ ମ୍ୟାପ୍‌ରେ ଓଡ଼ିଶାର ବୌଦ୍ଧସ୍ଥଳୀଗୁଡ଼ିକ ବିଷୟରେ ଦର୍ଶାଯାଇ ନାହିଁ ଉଲ୍ଲେଖ କରି କେନ୍ଦ୍ର ସରକାର ଓଡ଼ିଶା ପ୍ରତି ଦୃଷ୍ଟି ଦେବାକୁ ସେ ଦାବି କରିଛନ୍ତି ।

ବିହାରର ବୌଦ୍ଧଗୟା, ରାଜଗିର, ବୈଶାଳୀ, ନାଳନ୍ଦା, ଉତ୍ତର ପ୍ରଦେଶର ସାରନାଥ କୁଶୀନଗର, ଶ୍ରଭସ୍ତି, ମଧ୍ୟପ୍ରଦେଶର ସାଞ୍ଚି, ଭାରୁତ, ମହାରାଷ୍ଟ୍ରର ଅଜନ୍ତା ଏଲୋରା, ଆନ୍ଧ୍ରପ୍ରଦେଶର ନାଗାର୍ଜୁନ, କୋଣ୍ଡା, ଅମରାବତୀ, ଛତିଶଗଡର ଶିରପୁର, କର୍ଣ୍ଣାଟକର ଅଶୋଲେ, ବାଦାମୀ, ସାରନାଥ୍ ପରି ଅନ୍ୟ ରାଜ୍ୟରେ ଅନେକ ବୌଦ୍ଧ ପର୍ଯ୍ୟଟନସ୍ଥଳୀ ଅଛି । ଆସନ୍ତୁ ଦେଖିବା ଆମ ଓଡ଼ିଶାର ବୌଦ୍ଧସ୍ଥଳୀଗୁଡ଼ିକ ବିଷୟରେ ଇତିହାସରେ ସବୁଠାରୁ ପ୍ରମୁଖ ଓ ପୂର୍ବ–କ୍ରୀୟାଶୀଳ ବୌଦ୍ଧ ଧର୍ମର ହେଉଛନ୍ତି ସମ୍ରାଟ ଅଶୋକ ଯେ ୨୬୧ ବି.ସି.ଇରେ କଳିଙ୍ଗ ଯୁଦ୍ଧରେ ଚଣ୍ଡାଶୋକରୁ ଧର୍ମାଶୋକକୁ ପରିବର୍ତ୍ତନ ହୋଇଥିଲେ । ଧଉଳିର ସେ ଦୟାନଦୀ କୂଳର ରକ୍ତଛିଟା ଆଜି ରତ୍ନଗିରି, ଉଦୟଗିରି, ଲଳିତଗିରି ଓ ଲାଙ୍ଗୁଡ଼ିର ବୌଦ୍ଧ ପର୍ଯ୍ୟଟନରେ ପରିବର୍ତ୍ତିତ । ଭୁବନେଶ୍ୱରରୁ କେବଳ ଆଠ କିଲୋମିଟର ଦୂର ଧଉଳି ସମ୍ରାଟ ଅଶୋକଙ୍କ ପ୍ରସ୍ତର ନିର୍ମିତ ଅନୁଶାସନ ଓ ସୁନ୍ଦର ବୌଦ୍ଧମୂର୍ତ୍ତି । ଭୁବନେଶ୍ୱରଠାରୁ ଶହେ କିଲୋମିଟର ଦୂରରେ ରତ୍ନଗିରି–ଉଦୟଗିରି–ଲଳିତଗିରି ଏବଂ ଅତି ଆଧୁନିକ ଲାଙ୍ଗୁଡ଼ିର ପ୍ରତ୍ନତାତ୍ତ୍ୱିକ ଖୋଦେଇ ସହର । ଆମ

ରାଜ୍ୟ ସରକାର ଏହି ଅତି ପ୍ରାଚୀନ କାଳର ସ୍ଥଳୀଗୁଡିକୁ ହୀରକ ବୌଦ୍ଧ ତ୍ରିଭୁଜ ଭାବେ ଗୋଟିଏ ଛତା ତଳେ ଯୋଡି ଦେଇଛନ୍ତି । ଯେଉଁମାନେ ବିମାନରେ ଆସିବେ, ସେମାନଙ୍କ ପାଇଁ ଭୁବନେଶ୍ୱର ବିମାନବନ୍ଦର ଓ ଟ୍ରେନ୍‌ରେ ଭୁବନେଶ୍ୱର ଷ୍ଟେସନ ।

**ରତ୍ନଗିରି :** ରତ୍ନଗିରି ବିଶାଳ ସମବେତ ହୋଇଥିବା ଦୁଇଟି ପୁରାତନ ବୌଦ୍ଧ ବସତିସ୍ଥାନ । ପ୍ରାଚୀନ ଇତିହାସର ଦୁଇଟି ବିଶାଳ ମଠ, ଗୋଟାଏ ବିଶାଳ ସ୍ତୁପ ଓ ଅସଂଖ୍ୟ ଆରାଧନାସ୍ଥଳ, ଭାସ୍କର୍ଯ୍ୟ, ସଙ୍କଳ୍ପର ପୂର୍ଣ୍ଣତା ପାଇଁ ଅନେକ ସ୍ତୁପର ସମଷ୍ଟି । ରତ୍ନଗିରି ଏକ ପ୍ରାଥମିକ ବୌଦ୍ଧ ଶିକ୍ଷା କେନ୍ଦ୍ର । ଏହା ପ୍ରାୟ ବହୁ ପ୍ରାଚୀନ ଷଷ୍ଠ ଶତାବ୍ଦୀ ସିଇ ଯେତେବେଳେ ଗୁପ୍ତ ବଂଶର ରାଜାମାନେ ଯଥା ନରସିଂହ ଗୁପ୍ତା ଶାସନ କରୁଥିଲେ । ସେ ୧୨ଶ ଶତାବ୍ଦୀ ସି.ଇ ପର୍ଯ୍ୟନ୍ତ ଶାସନ କରୁଥିଲେ । ସେଠାରେ ଚତୁର୍ଦ୍ଦିଗକୁ ଦେଖିଲେ ଜଣାଯାଏ ବିଭିନ୍ନ ସ୍ତୁପମାନଙ୍କ ଉପରେ ପ୍ରଚୁର ପରିମାଣରେ ରୂପକଳ୍ପ କାଳଚକ୍ରର ବ୍ୟବହାର କରାଯାଇଛି ଏବଂ ବହୁ କୁଶଳ କଳାର କାରୁକାର୍ଯ୍ୟ ଗୁପ୍ତ ସମ୍ରାଟ କାଳରୁ କରାଯାଇଥିଲା ।

**ଲଳିତଗିରି :** ଭୁବନେଶ୍ୱରରୁ ୯୦ କିଲୋମିଟର ଦୂରରେ ଲଳିତଗିରି ବୌଦ୍ଧ ମଠ ସଂକ୍ରାନ୍ତ ବିରାଟ ସ୍ଥାନ ଇଟାର ଭଗ୍ନସ୍ତୁପମାନଙ୍କରେ ପ୍ରାଚୀନ ଐତିହ୍ୟ ପରିପୂର୍ଣ୍ଣ । ୨ୟ ଶତାବ୍ଦୀ ସିଇ ସମୟର ଖୋଦନ ଅନେକଗୁଡିଏ ମଥୁରା ସ୍କୁଲ ଅଫ୍ ଆର୍ଟର ସହିତ ବନ୍ଧନ କୁଶାଣ ବୁଦ୍ଧ କଳାର କୁହାଯାଏ ।

**ଉଦୟଗିରି :** ଏହା ରତ୍ନଗିରିଠାରୁ ୫ କିଲୋମିଟର ଦୂରରେ ଥିବା ଇଟା ନିର୍ମିତ ଭଗ୍ନ ବୌଦ୍ଧ ମଠ ସବୁ ସ୍ତୁପ ଓ ସପ୍ତମ ଦ୍ୱାଦଶ ଶତାବ୍ଦୀ ସିଇ ମଧ୍ୟରେ ନିର୍ମିତ କାରୁକାର୍ଯ୍ୟ ପାଉଚ ଥିବା କୂପ ଓ ଇଟା ନିର୍ମିତ ସ୍ତୁପ । ଏଠାରେ ବିଚ୍ଛିନ୍ନ ଭାବେ ପଡିଥିବା ଇଟାର ଭଗ୍ନ ସ୍ତୁପ ଓ କାନ୍ଥ ସବୁକୁ ଦେଖିଲେ ଏହା ମାଧବପୁରା ମହାବିହାର କଳା ସଦୃଶ୍ୟ ମନେ ହୁଏ । ପଥର ଇଟା ଅର୍ଦ୍ଧ ଭଗ୍ନର ପ୍ରସ୍ତର କାରୁକାର୍ଯ୍ୟ ସବୁ ଅତି ପ୍ରାଚୀନ କଳାର ପ୍ରମାଣ ।

**ଲାଙ୍ଗୁଡି :** ଲାଙ୍ଗୁଡି ପର୍ବତର ଚାରିଆଡେ ପର୍ବତ । ବର୍ତ୍ତମାନ ଖୋଳାଯାଇଥିବା ଏକ ସୌନ୍ଦର୍ଯ୍ୟ ଭରା ବୌଦ୍ଧ ଭଗ୍ନସ୍ତୁପର ସମଷ୍ଟି । ୩୪ଗୋଟି ପ୍ରସ୍ତର କଟା ବୌଦ୍ଧ ସ୍ତୁପ । ବୁଦ୍ଧଙ୍କର ଦୁଇଟି ପ୍ରତିମୂର୍ତ୍ତି ପଞ୍ଚ ଧ୍ୟାନୀ ବୁଦ୍ଧଙ୍କର ମୁର୍ତ୍ତି । ୨ୟ ଓ ତୃତୀୟ ଶତାବ୍ଦୀ ସିଇର ନିର୍ମିତ ପଥର ସ୍ତୁପରେ ଅତି ବିସ୍ମୟକର କାରୁକାର୍ଯ୍ୟ ଏଠାରେ ଖୋଦନ କରାଯାଇପାରିଛି । ଏଠାରେ ଯେଉଁ ଅଶୋକ ସ୍ତମ୍ଭ ଦେଖାଯାଇଛି, ତାହା ଅନ୍ୟ କେଉଁଠାରେ ଦେଖାଯାଇ ନଥିଲା । ଏହାକୁ ଏହି ପ୍ରକାର କାରୁକାର୍ଯ୍ୟର ପ୍ରଥମ ଅଶୋକ ସ୍ତୁପ କୁହାଯାଏ । ଅଶୋକଙ୍କୁ ନେଇ ମିଳିଥିବା କାରୁକାର୍ଯ୍ୟ ଖୋଦନରେ ଲାଙ୍ଗୁଡି ପ୍ରଥମ । ସମ୍ରାଟ ଅଶୋକଙ୍କୁ ନେଇ ଅନ୍ୟ କୌଣସି ସ୍ଥାନରେ ଏତେସବୁ କାରୁକାର୍ଯ୍ୟ ଭଗ୍ନାଂଶ ମିଳି ନଥିଲା । ଏହାକୁ ଅତି ପ୍ରାଚୀନ ପୁଷ୍ପଗିରି ସହିତ ସମ୍ପର୍କ ଥିବା ଜଣାଯାଏ । ପୁଷ୍ପଗିରି ବିଶ୍ୱବିଦ୍ୟାଳୟ ସହ ଜଡିତ ଥିବା ପ୍ରତ୍ନତାତ୍ତ୍ୱିକମାନେ କହନ୍ତି । ଐତିହାସିକମାନେ କହନ୍ତି କେବଳ ଦୁଇ ଗୋଟି ବିରଳ ଅଶୋକଙ୍କ ପ୍ରତିମୂର୍ତ୍ତି ଏଠାରେ ଖୋଳାଯାଇଛି । ଏହିସବୁ କଳା ଓ ଭାସ୍କର୍ଯ୍ୟରେ ଭରପୂର ଆନନ୍ଦ ପାଇ ପ୍ରାଚୀନ କଳା, ଭାସ୍କର୍ଯ୍ୟର ଐତିହ୍ୟମାନଙ୍କୁ ବର୍ଣ୍ଣନା କରି ବହୁ ଗବେଷକ ତାଙ୍କ ଗବେଷଣା ସାହିତ୍ୟରେ ଦର୍ଶାଇଛନ୍ତି । ଆମ ରାଜ୍ୟର ପଡୋଶୀ ରାଜ୍ୟ ବିହାରରେ ମଧ୍ୟ ଓଡ଼ିଶା ପରି ଅନେକ ବୌଦ୍ଧ ପର୍ଯ୍ୟଟନସ୍ଥଳୀ ରହିଛି, ଯେଉଁଠାକୁ ବର୍ଷର ବିଭିନ୍ନ ସମୟରେ ପର୍ଯ୍ୟଟକମାନେ ଦେଖିବାକୁ ଆସିଥାନ୍ତି । ଗମନା ଗମନ ପାଇଁ କେନ୍ଦ୍ର ସରକାର ଆମ ରାଜ୍ୟରେ ବିଧିବଦ୍ଧ ଭାବରେ ମହା ପରିନିର୍ବାଣ ବୌଦ୍ଧ ଟ୍ରେନ୍ ଚଳାଇବା କେନ୍ଦ୍ର ସରକାର ଉଚିତ ବୋଲି ଆମ ରାଜ୍ୟର ମନ୍ତ୍ରୀ ଶ୍ରୀ ପଣ୍ଡା ଦର୍ଶାଇଛନ୍ତି । ଏଥିପାଇଁ ଓଡ଼ିଶା ଓ ବିହାର ମିଳିତ ଭାବେ କାର୍ଯ୍ୟ କରିବା ଉପରେ ଶ୍ରୀ ପଣ୍ଡା ଗୁରୁତ୍ୱଆରୋପ କରିଥିଲେ ।

ଅନ୍ୟାନ୍ୟ ରାଜ୍ୟରେ ବୌଦ୍ଧ ପର୍ଯ୍ୟଟନସ୍ଥଳୀର ଯେମିତି ବିକାଶ ହୋଇ ପାରିଛି, ସେପରି ବିହାରର ବୋଧଗୟା ବିଶ୍ୱ ଐତିହ୍ୟରେ ସ୍ଥାନ ହୋଇପାରିଛି । ଏଠାରେ ବୋଧି ବୃକ୍ଷ ମୂଳରେ ରାଜ କୁମାର ସିଦ୍ଧାର୍ଥ ତାଙ୍କର ଜ୍ଞାନ ପାଇଥିଲେ । ଦଶମ ଶତାବ୍ଦୀରେ ପ୍ରସ୍ତୁତ ହୋଇଥିବା ବୁଦ୍ଧଙ୍କର ମୂର୍ତ୍ତି ଏଠାରେ ତପସ୍ୱୀ ଅବସ୍ଥାରେ ଯୁଗ ଯୁଗ ଧରି ରହିଛି, ସମ୍ରାଟ ଅଶୋକଙ୍କ ଦ୍ୱାରା ନିର୍ମିତ ଯେଉଁଠାକୁ ଅନେକ ପର୍ଯ୍ୟଟକ ଯାଇଥାନ୍ତି । ରାଜଗିର ଏକ ପର୍ଯ୍ୟଟନସ୍ଥଳୀ ବୈଶାଳୀ ଯେଉଁଠାରେ ବୁଦ୍ଧ ତାଙ୍କ ଶେଷ ପ୍ରଚାର କରିଥିଲେ । ନାଳନ୍ଦା ୧୧୯୩ରେ ଜ୍ଞାନୀ, ଗୁଣି, ବିଦ୍ୱାନ, ଶିକ୍ଷକ ଓ ପର୍ଯ୍ୟଟକମାନଙ୍କ ପ୍ରାଚୀନ ବିଶ୍ୱର ଆକର୍ଷଣୀୟ ଚୁମ୍ବକ ଶକ୍ତିର କେନ୍ଦ୍ର ଥିଲା । ତେଣୁ ଆମ ରାଜ୍ୟର ପର୍ଯ୍ୟଟନ ମନ୍ତ୍ରୀ ଶ୍ରୀପଣ୍ଡା ଆମ ରାଜ୍ୟ ସହିତ ବିହାର ମିଳିତଭାବେ କାର୍ଯ୍ୟ କରିବା ଉପରେ ନିକଟରେ ହୋଇଥିବା ସମ୍ମିଳନୀରେ ଯେଉଁ ଗୁରୁତ୍ୱାରୋପ କରିଛନ୍ତି, ତାହା ଆମ ରାଜ୍ୟର ସ୍ୱାର୍ଥ ଦୃଷ୍ଟିରୁ ପର୍ଯ୍ୟଟନ କ୍ଷେତ୍ରରେ ଆମ ଅବହେଳିତ ପର୍ଯ୍ୟଟନ କେନ୍ଦ୍ରଗୁଡିକୁ ବିକଶିତ କରିବାରେ ସାହାଯ୍ୟ କରିବ ଓ ଏହା ରାଜ୍ୟର ପର୍ଯ୍ୟଟନ କ୍ଷେତ୍ରରେ ଅନେକ ଉନ୍ନତି ଆଣିପାରିବ ।

୩୩୬, ଲିଙ୍ଗରାଜ ନଗର
ପୁରୁଣା ଭୁବନେଶ୍ୱର, ଭୁବନେଶ୍ୱର

# ଭାରତର ବିଜ୍ଞାନ, ପ୍ରଯୁକ୍ତିବିଦ୍ୟା ଓ ଶିଳ୍ପକୁ କୋରାପୁଟର ଅବଦାନ

ବସନ୍ତ କୁମାର ଦାସ

ଐତିହାସିକ ଦୃଷ୍ଟିରୁ ବିଚାର କଲେ କୋରାପୁଟ ଜିଲ୍ଲା ଚାରିଶହରୁ ପାଞ୍ଚଶହ ଖ୍ରୀଷ୍ଟାବ୍ଦ ମଧ୍ୟରେ ଏହାର ଆଦିମ ଅଧିବାସୀ ତଥା ଆଦିବାସୀ ସଂସ୍କୃତିକୁ ବିଭିନ୍ନ ଦୃଷ୍ଟିରୁ ପ୍ରଭାବିତ କରିଥିଲା । ଭାରତର ଭୂ-ସର୍ବେକ୍ଷଣ ସଂଗଠନ (ଜିଓଲୋଜିକାଲ ସର୍ଭେ ଅଫ ଇଣ୍ଡିଆ) ତରଫରୁ କରାଯାଇଥିବା ସର୍ବେକ୍ଷଣ ଅନୁସାରେ ଅବିଭକ୍ତ କୋରାପୁଟର ମାଲକାନଗିରି ଅଞ୍ଚଳରେ ଭାରତର ସର୍ବାଧିକ ପରିମାଣର ଖଣିଜ ପଦାର୍ଥ ଗଚ୍ଛିତ ରହିଛି । କୋରାପୁଟର ଖଣି, ଶିଳ୍ପ, ବିଜ୍ଞାନ ଓ ବୈଜ୍ଞାନିକ ପରମ୍ପରା ନିଆରା ଓ ବହୁ ପ୍ରାଚୀନ । ପୃଥିବୀର ପ୍ରଥମ ଧାନଚାଷ କୋରାପୁଟ ଅଞ୍ଚଳରେ ହୋଇଥିଲା । କୃଷି ବିଜ୍ଞାନୀଗଣ ଏହି ଅଞ୍ଚଳ ପଟାଙ୍ଗୀ ଓ ଜୟପୁର ବୋଲି ଦାବି କରନ୍ତି । ଏଣୁ ଧାନଚାଷର ଜୈବ ବିବିଧତା ଓ ପ୍ରାଚୀନତା ଦୃଷ୍ଟିରୁ କୋରାପୁଟ ପୃଥିବୀର ବିଜ୍ଞାନ ଦୃଶ୍ୟପଟ୍ଟରେ କେତେ ଯେ ଆଗୁଆ ଏକଥା କ୍ୱଚିତ୍ ଜାଣିଥିବେ । କୋରାପୁଟ ଧାନଚାଷର ଏକୁଡ଼ିଶାଳ ଓ ଏଠାରେ ପ୍ରାୟ ୩୪୦ ପ୍ରକାର ଦେଶୀ କିସମର ଧାନଚାଷ କରାଯାଏ । ଏହି ଅଞ୍ଚଳରେ ଚାଷ କରାଯାଉଥିବା କଳାଜିରା ଧାନର ବାସ୍ନା ନିଆରା ।

କୋରାପୁଟ ଜିଲ୍ଲାର ପଞ୍ଚପଟ୍ଟମାଳୀ ହେଉଛି ଏସିଆ ମହାଦେଶର ସବୁଠୁଁ ବଡ଼ ବକ୍ସାଇଟ୍ ଖଣି । ଏହି ବକ୍ସାଇଟ୍ ହେଉଛି ନାଲ୍କୋର ମୁଖ୍ୟ ଭିତ୍ତିଭୂମି । ଏହାକୁ ପ୍ରମୁଖ ଆୟୁଧ କରି ଗଢ଼ି ଉଠିଛି ଖଣି ଓ ପରିଶୋଧନ ପ୍ରକଳ୍ପ ଓ ଅନୁଗୁଳସ୍ଥିତ ଆଲୁମିନିୟମ ତଥା କ୍ୟାପ୍‌ଟିଭ ପାୱାର ପ୍ଲାଣ୍ଟ (ସିପିପି) । ଏହାର ଆଲୁମିନା ଓ ଆଲୁମିନିୟମ୍‌ର ମାନ ସମଗ୍ର ବିଶ୍ୱ ବାଣିଜ୍ୟ ଦରବାରରେ ଅନନ୍ୟ, ଅନୁପମ ଓ ଅଦ୍ୱିତୀୟ । ଗତ ୩୨ ବର୍ଷରୁ ଊର୍ଦ୍ଧ୍ୱ ସମୟ ଧରି ନାଲ୍କୋ ଦେଶର ଅର୍ଥନୀତିକୁ ଦୃଢ଼ କରି ତୋଳିବା ସଂଗେ ସଂଗେ ଉତ୍ପାଦନ, ଗୁଣବତ୍ତା ଓ ପରିବେଶ ସୁରକ୍ଷା ନିମନ୍ତେ ଅନେକ ଜାତୀୟ ତଥା ଅନ୍ତର୍ଜାତୀୟ ପୁରସ୍କାର ଓ ସ୍ୱୀକୃତି ଲାଭ କରିଛି । ଏଠାରେ ସବୁଠାରୁ ଉନ୍ନତ ମାନର ଦୀର୍ଘତମ ଡବଲ୍ ରୋଲ ଟୁଥ୍ କ୍ରସର ଓ ଦୀର୍ଘ ୧୪.୬ କିମି ଲମ୍ବା କନ୍‌ଭେୟର ବେଲ୍‌ଟ ରହିଛି । ଏହି ସିଙ୍ଗଲ କନ୍‌ଭେୟର ବେଲ୍ଟ ଭାରତର ଦୀର୍ଘତମ ଓ ପୃଥିବୀର ଦ୍ୱିତୀୟ ଦୀର୍ଘତମ ବେଲ୍ଟ ଅଟେ । ସବୁ କାମ ଏଠାରେ କମ୍ପ୍ୟୁଟର ଦ୍ୱାରା ସମ୍ପାଦିତ ଓ ପରିଚାଳିତ ହୋଇଥାଏ । ବକ୍ସାଇଟ୍ ଖଣିରୁ ବକ୍ସାଇଟ୍ ପରିବହନଠାରୁ ଆରମ୍ଭ କରି କାରଖାନାର ଗୁରୁତ୍ୱପୂର୍ଣ୍ଣ କାମଗୁଡ଼ିକ ଉପଗ୍ରହ ସେବା ବ୍ୟବସ୍ଥା, ଇଣ୍ଟରନେଟ୍ ସେବା ଓ ଡିଜିଟାଲ ସେବା ବ୍ୟବସ୍ଥା ଦ୍ୱାରା ସମାହିତ ହୋଇଥାଏ । ମଣିଷଠାରୁ ଯନ୍ତ୍ର ଏଠାରେ ବେଶ୍ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥାଏ । ଲାଲ କର୍ଦ୍ଦମ ଓ ପାଉଁଶକୁ ଖୁବ୍ ନିରାପଦ ଭାବେ ବିରାଟ ପୋଖରୀରେ ବନ୍ଧଦ୍ୱାରା ବାନ୍ଧି ରଖାଯାଇଛି । ନାଲ୍କୋ ତା'ର ନିକଟସ୍ଥ ପରିବେଶକୁ ବେଶ୍ ସବୁଜ, ସୁନ୍ଦର ଓ ସୁରକ୍ଷିତ ରଖିଛି । ଖଣିର ସୁଉଚ୍ଚ ପର୍ବତ ଶିଖରରେ ବର୍ଷା ଜଳ ସଂରକ୍ଷଣ, ବନୀକରଣ, ମୃତ୍ତିକା ସଂରକ୍ଷଣ ଓ ପରିବେଶ ସୁରକ୍ଷା ଦର୍ଶକମାନଙ୍କ ମନ ମୋହିନିଏ । ନାଲ୍କୋ ଟାଉନସିପ୍‌ରେ ବିଜ୍ଞାନ ପାର୍କ ନାଲ୍କୋ ଦ୍ୱାରା ପ୍ରତିଷ୍ଠା କରାଯାଇ ବୈଜ୍ଞାନିକ ଦୃଷ୍ଟିକୋଣର ପ୍ରସାର କରାଯାଉଛି । ସାବରୀ ଲେକ୍‌ଠାରେ ଡାଇନୋସର ପାର୍କ ବାହାରୁ ଆସୁଥିବା ଦର୍ଶକଙ୍କର ମନମୁଗ୍ଧ କରେ । ପକ୍ଷୀଘର, ପୁଷ୍ପ ଉଦ୍ୟାନ ଓ ଦର୍ଶକ ସ୍ତମ୍ଭ ଦର୍ଶକମାନଙ୍କ ମନରେ ପୁଲକ ଆଣିଦେଇଥାଏ ।

ସେହିପରି ମିଗ୍ ନଗରୀ ସୁନାବେଡ଼ାସ୍ଥିତ (ହାଲ୍) ମିଗ୍ ବିମାନ ଓ ସୁଖୋଇ ବିମାନ ଇଞ୍ଜିନ୍ ତିଆରି କରିବାରେ ଏକ ସ୍ୱତନ୍ତ୍ର ସ୍ଥାନ ଓ ମର୍ଯ୍ୟାଦା ହାସଲ କରିଛି । ବହୁ ସୁନାମଧନ୍ୟ କାରିଗର, ସ୍ଥପତି, ଇଞ୍ଜିନିୟର, ଯୁଦ୍ଧ ବିମାନ ତିଆରି କରି ଭାରତର ପ୍ରତିରକ୍ଷା ଓ ପ୍ରଯୁକ୍ତିବିଦ୍ୟା ମାନଚିତ୍ରରେ ସୁନାବେଡ଼ାକୁ ସୁନାପରି

ସୁନ୍ଦର ଭାବେ ସ୍ଥାନ ଦେବାରେ ସକ୍ଷମ ହୋଇଛନ୍ତି । ଜାତୀୟ ଓ ଅନ୍ତର୍ଜାତୀୟ କ୍ଷେତ୍ରରେ ନାମ କରୁଥିବା ଇଞ୍ଜିନିୟର ଓ ପ୍ରଯୁକ୍ତିବିଦ୍ୟା ବିଶାରଦମାନଙ୍କ ମାନସପଟରେ ସୁନାବେଢ଼ା ଏକ ସ୍ୱତନ୍ତ୍ର ସ୍ଥାନ ରଖିପାରିଛି । ସୁନାବେଢ଼ାର ହରିଣ ପାର୍କ ଦର୍ଶକମାନଙ୍କଠାରେ ବେଶ୍ ଉତ୍କଣ୍ଠା ଓ ଉଦ୍ଦୀପନା ଆଣିଦିଏ । ଏଠାରେ ଥିବା କାଟଲ ବ୍ରିଡିଂ ଫାର୍ମ ଗୋପାଳନ, ପ୍ରଜନନ, ଗବେଷଣା ଓ ଦୁଗ୍ଧ ଉତ୍ପାଦନ କ୍ଷେତ୍ରରେ କେନ୍ଦ୍ର ସରକାରଙ୍କ 'କାର' ସଂସ୍ଥାର ଏକ ଉନ୍ନତ ପ୍ରତିଷ୍ଠାନ ରହିଛି । ଓୟୁଏଟି ଅଧୀନରେ ସେମିଳିଗୁଡ଼ା କୃଷି ବିଜ୍ଞାନ କେନ୍ଦ୍ର ଫଳ ଚାଷ ସମନ୍ୱିତ ଚାଷ ପ୍ରଣାଳୀ, ଅର୍ଥକରୀ ଫସଲ ଉତ୍ପାଦନ, ପଶୁପାଳନ ଓ ରୋଗନିଦାନ ନିମନ୍ତେ କୃଷି ଓ କୃଷକମାନଙ୍କର ସାଧନର ସଙ୍ଗମସ୍ଥଳୀ ଅଟେ । କେବିକେ ଅଞ୍ଚଳ ପାଇଁ ଏହା ଏକ ଆଲୋକବର୍ତ୍ତିକା ରୂପେ ଦୀର୍ଘ ୫୦ ବର୍ଷରୁ ଊର୍ଦ୍ଧ୍ୱ ହେବ କାର୍ଯ୍ୟ କରିଆସୁଛି । ମସଲା ଚାଷ, ଫଳଚାଷ, ପନିପରିବା ଚାଷ ଓ ଗବେଷଣା ପାଇଁ ପଟ୍ଟାଙ୍ଗୀସ୍ଥିତ କୃଷି ଫାର୍ମ ସମଗ୍ର ରାଜ୍ୟରେ ଓ ଜାତୀୟ ସ୍ତରରେ ସୁନାମ ଅର୍ଜନ କରିଛି । ସୁରୁଚି ଓ ସୁପ୍ରଭା କିସମର ହଳଦୀ ଚାଷ ଏହି ଅଞ୍ଚଳର କୃଷି ଗବେଷଣାର ବିଜୟଧ୍ୱଜା ଉଡ଼ାଇଥାଏ । ସ୍ୱର୍ଗତ (ଡକ୍ଟର) ବିଶ୍ୱନାଥ ସାହୁଙ୍କ ଭଳି ଭାରତ ପ୍ରସିଦ୍ଧ କୃଷି ବିଜ୍ଞାନୀ ଅନ୍ତର୍ଜାତୀୟ ସ୍ତରରେ ସୁନାମ ଅର୍ଜନ କରିଛନ୍ତି । କୃଷିକ୍ଷେତ୍ରରେ କୋରାପୁଟ ଜିଲ୍ଲାର ଗୁରୁତ୍ୱ ଉପଲବ୍ଧି କରି ଡକ୍ଟର ଏମ୍.ଏସ୍.ସ୍ୱାମୀନାଥନ୍ ଜୟପୁରଠାରେ ସ୍ୱାମୀନାଥନ୍ ରିସର୍ଚ୍ଚ ଫାଉଣ୍ଡେସନ (ଏମ୍‌ଏସ୍‌ଏସ୍‌ଆର୍‌ଏଫ୍) ସମଗ୍ର ବିଶ୍ୱରେ କୃଷିଭିତ୍ତିକ ପରମ୍ପରାରେ କୋରାପୁଟ ଜିଲ୍ଲାକୁ ସ୍ଥାନ ଦେଇଛନ୍ତି । ଯାହାକି ଓଡ଼ିଶା ଓ ଭାରତ ପାଇଁ ଗର୍ବ ଓ ଗୌରବର ବିଷୟ । ଆପଣମାନେ ଜାଣି ଆଶ୍ଚର୍ଯ୍ୟ ହେବେ ଯେ, ସାରା ପୃଥିବୀରେ ପେରୁ, ଚିଲି, ଫିଲିପାଇନ୍‌ସ, ଟ୍ୟୁନିସିଆ, ମରକ୍କୋ, ଆଲ୍‌ଜେରିଆ, ଚାଇନା, ଇରାନ, କେନିଆ, ତାଞ୍ଜାନିଆ, ଜାପାନ, ଇଟାଲୀ, ଶ୍ରୀଲଙ୍କା ଓ ଭାରତ ଭଳି ୧୪ଟି ଦେଶର ୧୮ ଅଞ୍ଚଳ ବିଶ୍ୱସ୍ତରୀୟ ଗୁରୁତ୍ୱପୂର୍ଣ୍ଣ କୃଷିଭିତ୍ତିକ ପରମ୍ପରା ପଦ୍ଧତି (ଜିଆଇଏଏଚ୍‌ଏସ୍) ଜାତିସଂଘ (ୟୁଏନ୍‌ଓ), ଖାଦ୍ୟ ଓ କୃଷି ସଂଗଠନ (ଏଫ୍‌ଏଓ) ତରଫରୁ ସ୍ୱୀକୃତି ଓ ମାନ୍ୟତା ପାଇଛି । ପଦ୍ମଶ୍ରୀ ଡଃ ଅଜୟ କୁମାର ପରିଡ଼ା ଏମ୍‌ଏସ୍‌ଏସ୍‌ଆର୍‌ଏଫ୍‌ର ନିର୍ଦ୍ଦେଶକ ରହିଛନ୍ତି ଓ ବିଶ୍ୱର ଶ୍ରେଷ୍ଠ ଧାନ ଗବେଷକ ହିସାବରେ ପ୍ରସିଦ୍ଧି ଲାଭ କରିଛନ୍ତି ।

ପାରମ୍ପରିକ କୃଷି ପଦ୍ଧତି (ଟ୍ରାଡିସନାଲ ଏଗ୍ରିକଲ୍ଚର ସିଷ୍ଟମ) ପାଇଁ କୋରାପୁଟ ଜିଲ୍ଲା ୨୦୧୨ ମସିହାରେ ୟୁଏନ୍‌ର ଫାଓ ତରଫରୁ ଏହି ପୁରସ୍କାର ପାଇଛି । ୨୦୧୨ ମସିହା ୯୯ତମ ଭାରତୀୟ ବିଜ୍ଞାନ କଂଗ୍ରେସ (ଆଇଏସ୍‌ସି) ଅଧିବେଶନରେ କୋରାପୁଟର ଆଦିମ ଅଧିବାସୀଙ୍କୁ ପ୍ରତିନିଧିତ୍ୱ କରୁଥିବା ରଇତା ମୁଦୁଲି ଓ ଚନ୍ଦ୍ର ପ୍ରଧାନଙ୍କୁ ଭାରତର ପ୍ରଧାନମନ୍ତ୍ରୀ ଡକ୍ଟର ମନମୋହନ ସିଂହ ପୁରସ୍କୃତ କରିଛନ୍ତି (ତା ୩.୧.୨୦୧୨) । ଏପରି ଘଟଣା ଭାରତ ପାଇଁ ସର୍ବପ୍ରଥମ । ଏହି ଜିଲ୍ଲାର କୃଷି ଜୈବ ବିବିଧତା ଜ୍ଞାନ ପଦ୍ଧତି, ଖାଦ୍ୟ ଓ ଜୀବିକାର ନିରାପତ୍ତା ଓ ସଂସ୍କୃତିର ବିଶ୍ୱବ୍ୟାପୀ ପ୍ରଚାର ଦିଗରେ ସମଗ୍ର ବିଶ୍ୱବାସୀଙ୍କ ଦୃଷ୍ଟି ଆକର୍ଷଣ କରିଛି । ଏହି ଅଞ୍ଚଳରେ ଚାଷ କରାଯାଉଥିବା ଦେଶୀ ଧାନ ମଧ୍ୟରୁ ୨୪ଟି ସୁଗନ୍ଧିଯୁକ୍ତ, ୨୭ଟି ବନ୍ୟା ପ୍ରତିରୋଧୀ, ୨ଟି ଗଭୀର ଜଳ ପ୍ରତିରୋଧୀ ଓ ଗୋଟିଏ ମରୁଡ଼ି ପ୍ରତିରୋଧୀ (ଡ୍ରଟ୍ ରେଜିଷ୍ଟାଣ୍ଟ) । ବହୁ କିସମର କୀଟପତଙ୍ଗ ଆକ୍ରଣକୁ ସହିବାର କ୍ଷମତା ରହିଛି । ସ୍ଥାନୀୟ ଅଧିବାସୀ ଆଠ ପ୍ରକାର ମାଣ୍ଡିଆ ଜାତୀୟ ଶସ୍ୟ, ୯ ପ୍ରକାର ଡାଲି ଜାତୀୟ ଶସ୍ୟ, ୫ ପ୍ରକାର ତୈଳବୀଜ, ୩ ପ୍ରକାର ତନ୍ତୁ ଜାତୀୟ ଉଦ୍ଭିଦ ଓ ୭ ପ୍ରକାର ପନିପରିବାକୁ ଆଜିଯାଏ ବଞ୍ଚେଇ ରଖିପାରିବା ସବୁଠୁ ଆଶ୍ଚର୍ଯ୍ୟର ବିଷୟ । ସେହିପରି ୨୦୦୨ ମସିହାରେ କୋରାପୁଟ ଆଦିବାସୀଙ୍କୁ ଦକ୍ଷିଣ ଆଫ୍ରିକାର ଜୋହାନ୍‌ସବର୍ଗଠାରେ କୃଷିବିଜ୍ଞାନ କ୍ଷେତ୍ରରେ ଉତ୍କର୍ଷତା ନିମନ୍ତେ ଇକ୍ୟୁଏଟର ଇନ୍‌ସିଏଟିଭ ପୁରସ୍କାର ଦିଆଯାଇଛି । ସୁନାବେଢ଼ାସ୍ଥିତ ସେଣ୍ଟ୍ରାଲ ସଏଲ ଆଣ୍ଡ ୱାଟର କନ୍‌ଜରଭେସନ ରିସର୍ଚ୍ଚ ଆଣ୍ଡ ଟ୍ରେନିଙ୍ଗ ଇନଷ୍ଟିଚ୍ୟୁଟରେ ମୃତ୍ତିକା ଓ ଜଳ ସଂରକ୍ଷଣ କ୍ଷେତ୍ରରେ ଦେଶର ଅଦ୍ୱିତୀୟ ପ୍ରତିଷ୍ଠାନ ଯାହାକି ଭାରତୀୟ କୃଷି ଗବେଷଣା ପରିଷଦ (ଆଇସିଏଆର୍)ର ଦକ୍ଷ ବୈଜ୍ଞାନିକମାନଙ୍କ ଦ୍ୱାରା ପରିଚାଳିତ ପ୍ରତିଷ୍ଠାନ ଓ ଏହା ଦେଶର ତଥା ଉତ୍ତର ପୂର୍ବ ରାଜ୍ୟମାନଙ୍କର କେବଳ ମାତ୍ର ପ୍ରତିଷ୍ଠାନ ଓ ଏଠାରୁ ମିଳୁଥିବା ଗବେଷଣା ଲବ୍ଧ ଜ୍ଞାନ ସାରା ଦେଶ ପାଇଁ ମୁଖ୍ୟ ସୂଚକ ରୂପେ କାର୍ଯ୍ୟ କରିଥାଏ । ସେହିପରି ଓପିଜିସି, ଏନ୍‌ପିଜିସି, ଭିସିଆର୍‌ସି, ଆଇସିଏମ୍‌ଆର୍ ଅଧୀନସ୍ଥ ମଶା ଗବେଷଣା ପ୍ରତିଷ୍ଠାନ, ସେବା କାଗଜ କଳ, ଆକାଶବାଣୀ ଜୟପୁର, ଅପରକୋଲାବ ଡ୍ୟାମ୍ ଓ ବିଦ୍ୟୁତ୍ ଶକ୍ତି ଉତ୍ପାଦନ କେନ୍ଦ୍ର ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟା କ୍ଷେତ୍ରରେ ଅନେକ କିଛି ଉନ୍ନତିମୂଳକ କାର୍ଯ୍ୟ ସମଗ୍ର ଜିଲ୍ଲା, ରାଜ୍ୟ ଓ ଦେଶ ପାଇଁ ଯୋଗାଇ ଦେଇଛି । କୋରାପୁଟର ବହୁ ବୈଜ୍ଞାନିକ, ଗବେଷକ, ଡାକ୍ତର ଓ ଇଞ୍ଜିନିୟର ଦେଶ ବିଦେଶରେ ସୁନାମ ଅର୍ଜନ କରିଛନ୍ତି ।

ଆମ ରାଜ୍ୟର ତଥା ସମଗ୍ର ପୂର୍ବ ଭାରତରେ ୧୯୮୬ ମସିହା ପ୍ରଥମ କିଡ୍‌ନୀ ପ୍ରତିରୋପଣ, କୋରାପୁଟ ଜିଲ୍ଲାର ଜୟପୁରରେ ଜନ୍ମିତ ପ୍ରଫେସର ଡାକ୍ତର ଲକ୍ଷ୍ମୀକାନ୍ତ ସାହୁଙ୍କ ଦ୍ୱାରା ସଫଳତାର ସହ ସମ୍ଭବ ହୋଇପାରି ଥିଲା । ସେ କୋରାପୁଟ

ସରକାରୀ ଉଚ୍ଚବିଦ୍ୟାଳୟରେ ପାଠ ପଢ଼ୁଥିଲେ ଓ ବର୍ତ୍ତମାନ କଟକରେ ଅବସ୍ଥାନ କରୁଛନ୍ତି । ମ୍ୟାଲେରିଆ ଜ୍ୱରର ଜୀବାଣୁ ପ୍ଲାଜମୋଡିୟମ ମେଲେରିଏ କେବଳ କୋରାପୁଟ ଅଞ୍ଚଳରେ ଦେଖାଯାଆନ୍ତି, ଯାହାକି ସମଗ୍ର ବିଶ୍ୱରେ ନବେ ଦଶକରେ ଚର୍ଚ୍ଚାର ବିଷୟ ପାଲଟିଥିଲା (ଅନ୍ୟ ତିନି ପ୍ରକାର ଜୀବାଣୁ ଓ ସେଲ୍, ଭାଇଭାକ୍ସ ଓ ଫାଲସିପାରମ୍) । ସବୁଠୁ ଗର୍ବର କଥା ହେଉଛି ମ୍ୟାଲେରିଆ ଜ୍ୱରର ନିରାକରଣ ନିମନ୍ତେ ଇଞ୍ଜେକ୍ସନ ପ୍ରସ୍ତୁତ କରିବାରେ ସକ୍ଷମ ହୋଇଛନ୍ତି ୧୯୬୫ ମସିହା ଜୁଲାଇ ୫ ତାରିଖରେ ଜନ୍ମଲାଭ କରିଥିବା ବିଶ୍ୱପ୍ରସିଦ୍ଧ ବୈଜ୍ଞାନିକ ଡକ୍ଟର କୈଳାସ ପ୍ରସାଦ ପାତ୍ର । ତାଙ୍କୁ କୋରାପୁଟର ରୋନାଲ୍ଡରସ୍ କହନ୍ତି । ମଥଲେରିଆ ପାରାସାଇଟ୍‌ର ଏକ ନୂଆ ଜିନ୍‌କୁ ଚିହ୍ନଟ କରି ସେ ସମଗ୍ର ବିଶ୍ୱରେ ମ୍ୟାଲେରିଆ ପାଇଁ ମହୌଷଧି ଆବିଷ୍କାର କରିଥିବା ଯୋଗୁଁ ଆମେରିକାର 'ବିଲ୍‌ଓ୍ୱେବ୍ ମେଲିଣ୍ଡା ଗେଟ୍‌ସ ଫାଉଣ୍ଡେସନ' ପୁରସ୍କୃତ କରିଛି । ସେ କାଲିଫର୍ଣ୍ଣିଆ ବିଶ୍ୱବିଦ୍ୟାଳୟର ସାନ୍‌ଡିଏଗୋଠାରେ ମ୍ୟାଲେରିଆ ଲେପଟସ୍ପାରା ଓ ବ୍ରୁସେଲୋସିସ୍ ରୋଗ ସମ୍ପର୍କରେ ଗବେଷଣା ଜାରି ରଖିଛନ୍ତି । କୋରାପୁଟ ଅଞ୍ଚଳର ଆହୁରି ଅନେକ ବ୍ୟକ୍ତି ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟା କ୍ଷେତ୍ରରେ ଦେଶ ବିଦେଶରେ କାର୍ଯ୍ୟରତ । ସେସବୁକୁ ଏଠାରେ ତାଲିକାଭୁକ୍ତ କରିବା ସମ୍ଭବ ନୁହେଁ । କିନ୍ତୁ ଏହି ଅଞ୍ଚଳର ଜୟପୁର, କୋରାପୁଟ, ସୁନାବେଡ଼ା, ସେମିଳିଗୁଡ଼ା ଓ ଦାମନଯୋଡ଼ି ଅଞ୍ଚଳକୁ ନେଇ ଖୁବ୍ ଶୀଘ୍ର ଗଢ଼ି ଉଠିବ । ଯେଉଁଠାରେ କି ଏମ୍‌ଏସ୍‌ଏସ୍‌ଆର୍‌ଏଫ୍, ବିଜୁ ପଟ୍ଟନାୟକ ଔଷଧୀୟ ବୃକ୍ଷ କେନ୍ଦ୍ର, ବିଦ୍ୟୁତ୍ ଶକ୍ତି ଉତ୍ପାଦନ କେନ୍ଦ୍ର, ଚିକିତ୍ସାଳୟ, ମେଡିକାଲ କଲେଜ, ସରକାରୀ ମହାବିଦ୍ୟାଳୟ, ଆଇଜିଏନ୍‌ଓ୍ୱୟୁ, ଇଞ୍ଜିନିୟରିଂ କଲେଜ, କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ, ସେରିକଲ୍ଚର ସେଣ୍ଟର, ନାଡ୍, ହାଲ୍, ଏସ୍‌ସିଆଇଟିଏମ୍, ନାଲ୍‌କୋ, ଓ୍ୱୟୁଏଟି ଓ ଜଙ୍ଗଲ ବିଭାଗ ପ୍ରଭୃତି ବିଜ୍ଞାନ, ପ୍ରଯୁକ୍ତି ବିଦ୍ୟା ଓ ଶିଳ୍ପର ପ୍ରଚାର ପ୍ରସାର ଦିଗରେ ସମଗ୍ର ରାଜ୍ୟ ତଥା ଦେଶ ବିଦେଶକୁ ବତୀଘର ସଦୃଶ ଆଲୋକର ମଶାଲ ଧରି ଠିଆହେବ ଏଥିରେ ତିଳେମାତ୍ର ସନ୍ଦେହ ନାହିଁ ।

ଦେଓମାଳୀ ପର୍ବତର ଗୁଳ୍ମ ଓ ଉଦ୍ଭିଦ, ମାଣ୍ଡିଆ, ଅଦା, ହଳଦୀ, କଫି, ଫଳଚାଷ, କଫି ଚାଷ, ଗୋଲମରିଚ ଚାଷ, କୁକ୍କୁଟ ପ୍ରଜନନ କେନ୍ଦ୍ର, ବେହେରାଗୁଡ଼ାର ଇକୋ ଫ୍ରେଣ୍ଡ୍‌ଲି ବିଲ୍‌ଡିଂ, ଉଚ୍ଚ ପାର୍ବତ୍ୟାଞ୍ଚଳର ମାଛଚାଷ, କୃଷି, ଜଳସଂରକ୍ଷଣ, କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟର ଗ୍ରୀନ୍ ଟେକ୍ନୋଲୋଜି ବିଲ୍‌ଡିଂ, ପଟ୍ଟାଙ୍ଗୀ ଅଞ୍ଚଳର ରତ୍ନପଥର, ଇଉକାଲୀ ପଟାସ୍, ସିଲ୍‌ଭର ଓକ୍ ଓ କୃତ୍ରିମ ଜଂଗଲ ସୃଷ୍ଟି ହେଉଛି କୋରାପୁଟର ସ୍ୱତନ୍ତ୍ରତା ଓ ବୈଚିତ୍ର୍ୟତା । ପଦ୍ମଶ୍ରୀ ଇଂ ନିହାର ରଞ୍ଜନ ମହାନ୍ତି ଅଧକ୍ଷ ହାଲ୍‌ଙ୍କ ତତ୍ତ୍ୱାବଧାନ ତଥା ଅଳ୍ପ ଖର୍ଚ୍ଚ ଓ ସ୍ୱଦେଶୀ ଜ୍ଞାନକୌଶଳରେ ନିର୍ମିତ ଯୁଦ୍ଧ ହେଲିକପ୍‌ଟର, ଉଡ଼ାଜାହାଜ ନିର୍ମାଣ କୌଶଳ ସ୍ୱତନ୍ତ୍ର ଓ ନିଆରା । ଆହୁରି ଅନେକ, ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟା ଆଲେଖ୍ୟ କୋରାପୁଟ ଉପରେ ଅଛି, ଯାହାକି ସୀମିତ ଅଳ୍ପ କେତେ ପୃଷ୍ଠାରେ ଲେଖିବା କଷ୍ଟ ।

କ୍ୱାର୍ଟର ନଂ.ବି–୧୧୩, ସେକ୍ଟର–୧
ନାଲ୍‌କୋ ଟାଉନ୍‌ସିପ୍
ଦାମନଯୋଡ଼ି–୭୬୩୦୦୮, କୋରାପୁଟ



# ବିଜ୍ଞାନଭିତ୍ତିକ ବ୍ୟବସାୟିକ ବିଜ୍ଞାପନ

ଇଂ ନଳିନୀକାନ୍ତ ପଣ୍ଡା

'କହିବୋଲି ଜାଣିଲା ଯିଏ, ପଚା ଚିଙ୍ଗୁଡ଼ି ବିକିଲା ସିଏ' । ଏହା ଗୋଟିଏ ବହୁ ପ୍ରଚଳିତ 'ଢ଼ଗ' । ଏହାର ସାଧାରଣ ଭାବରେ ଅର୍ଥ ହେଲା ଯଦି ଜଣେ ବିକ୍ରେତା ଗୋଟିଏ ଦ୍ରବ୍ୟ ବିଷୟରେ ସୁନ୍ଦର ଭାବରେ କ୍ରେତା ଆଗରେ ଉପସ୍ଥାପନ କରିପାରେ, ଦ୍ରବ୍ୟଟି ପଚା ଚିଙ୍ଗୁଡ଼ି ପ୍ରାୟ ହୋଇଥିଲେ ମଧ୍ୟ ଉଚ୍ଚ ଦରରେ ବିକ୍ରି ହୋଇପାରେ । ବର୍ତ୍ତମାନ ଜଗତୀକରଣ ଯୁଗରେ କ୍ରେତା, ବିକ୍ରେତା, ବଜାର ଓ ସର୍ବୋପରି ବାଣିଜ୍ୟର ସଂଜ୍ଞା ଏବଂ ସ୍ୱରୂପ ବଦଳି ଯାଇଛି । କ୍ରେତା ବା ଗ୍ରାହକ ବ୍ରାଣ୍ଡ ଆନୁଗତ୍ୟକୁ ପ୍ରାଧାନ୍ୟ ନଦେଇ ଧୀରେ ଧୀରେ ଦ୍ରବ୍ୟ ବା ସେବାର ଗୁଣାବଳୀ ଉପରେ ପ୍ରାଧାନ୍ୟ ଦେବା ଆରମ୍ଭ କଲେଣି। ଅର୍ଥାତ କୌଣସି ବ୍ୟବସାୟ ପାଇଁ ଖାଉଟିର ଆବଶ୍ୟକତା ବା ଗ୍ରହଣୀୟତା ହିଁ ମୂଳ ଆଧାର। ଗତ ନବେ ଦଶକରେ ଆମ ଦେଶ ମୁକ୍ତ ଅର୍ଥନୀତିକୁ ଆପଣେଇବା ଦ୍ୱାରା ଆମ ବଜାରରେ ବିଭିନ୍ନ ବିଦେଶୀ ସାମଗ୍ରୀ ଅନାୟସରେ ମିଳି ପାରୁଛି ଏବଂ ଗ୍ରାହକମାନଙ୍କ ପାଖରେ ଅନେକଗୁଡ଼ିଏ ବିକଳ୍ପ ଦ୍ରବ୍ୟ ବା ସେବା ଉପଲବ୍ଧ ହେଉଛି । ସର୍ବୋପରି ଅଧିକାଂଶ ଉତ୍ପାଦକମାନଙ୍କର ଏକଚାଟିଆ ମନୋଭାବ ହ୍ରାସ ପାଇଛି । ଅନ୍ୟ ପକ୍ଷରେ ଆମ ଦେଶରେ ସାକ୍ଷରତା ହାର ବୃଦ୍ଧି ପାଇବା ସହ ଜନ ସଚେତନତା ବୃଦ୍ଧି ପାଇଛି । ଟିଭି, ଖବର କାଗଜ, ଇଣ୍ଟରନେଟ୍‌ର ବହୁଳ ପ୍ରସାର ଫଳରେ ସାଧାରଣ ଖାଉଟିର ସଚେତନତା ବହୁଗୁଣିତ ହେବା ସହ ସ୍ୱାସ୍ଥ୍ୟ ସଚେତନତା ମଧ୍ୟ ବଢ଼ିଛି । ପ୍ରତ୍ୟେକ ବ୍ୟବସାୟର ଅଭିବୃଦ୍ଧି ତଥା କ୍ରେତା ନିକଟରେ ପହଞ୍ଚିବା ପାଇଁ ବିଜ୍ଞାପନ ନିତାନ୍ତ ଜରୁରୀ । ବର୍ତ୍ତମାନ ଉତ୍ପାଦନକାରୀମାନେ ଖୁବ୍ କମ୍ ସମୟ ମଧ୍ୟରେ ଭିନ୍ନଭିନ୍ନ ଦ୍ରବ୍ୟ ଏବଂ ସେବାମାନ ଉପଲବ୍ଧ କରାଇବା ପାଇଁ ପ୍ରୟାସ ଜାରି ରଖିଥିବାରୁ ବ୍ୟବସାୟିକ ବିଜ୍ଞାପନର ପ୍ରାସଙ୍ଗିକତା ବିଶେଷ ଉପଲବ୍ଧ ହେଉଛି । ଗୋଟିଏ ସମୟ ଥିଲା ବିଜ୍ଞାପନଦାତାମାନେ ଧର୍ମଭିତ୍ତିକ, ସାମାଜିକ ପରଂପରାଭିତ୍ତିକ, ବ୍ୟବହାରଭିତ୍ତିକ କିମ୍ବା ସଂଚୟଭିତ୍ତିକ ବିଜ୍ଞାପନ ଉପରେ ଗୁରୁତ୍ୱ ଦେଉଥିଲେ । ଯଥା ଈଶ୍ୱରଙ୍କୁ ପାଇବା ପାଇଁ ଅମୁକ ବ୍ରାଣ୍ଡର ଅଗରବତୀ ବ୍ୟବହାର କରନ୍ତୁ ରଜ ପାଇଁ ସମ୍ବୁକ ଶାଢ଼ୀ ବ୍ୟବହାର କରନ୍ତୁ କିମ୍ବା ଜଣେ ଚିତ୍ରତାରକା ବା କ୍ରିକେଟତାରକା କହୁଥିଲେ ମୁଁ ଏହି ତେଲ ବ୍ୟବହାର କରୁଛି, ଆପଣ ବି କରନ୍ତୁ କିମ୍ବା ମାତ୍ର ୫୦ଟଙ୍କାରେ ଏହାକୁ ପୂରା ପରିବାର ବ୍ୟବହାର କରିପାରିବେ ଇତ୍ୟାଦି ।

କିନ୍ତୁ ବର୍ତ୍ତମାନ ବିଜ୍ଞାପନଦାତାମାନେ ବିଜ୍ଞାନଭିତ୍ତିକ ବିଜ୍ଞାପନ ଦେବା ଏକ ନୂଆ ପରଂପରା ସୃଷ୍ଟି କରିବାକୁ ଯାଉଛନ୍ତି । ଏହା ଦ୍ୱାରା ଦ୍ରବ୍ୟଟି ଆଧୁନିକ ଯୁବଗୋଷ୍ଠୀ ତଥା ଶିକ୍ଷିତ ସାମାଜମାନଙ୍କ ଦ୍ୱାରା ବହୁଳ ଆଦୃତ ହୋଇପାରିବ ଏବଂ ଗ୍ରହଣୀୟ ମଧ୍ୟ ହୋଇପାରିବ । ଉଦାହରଣ ସ୍ୱରୂପ ଗୋଟିଏ ଖାଇବା ତେଲର ବିଜ୍ଞାପନ କେବଳ ସ୍ୱାଦଭିତ୍ତିକ ନହୋଇ ଏହା କୋଲେଷ୍ଟ୍ରୋଲ୍ ମୁକ୍ତ, ଭିଟାମିନ୍ ଡ଼ି, ସି ଯୁକ୍ତ, ସ୍ନେହସାର ବିହିନ ଏବଂ ଏହା ହାର୍ଟକୁ ବିପଦମୁକ୍ତ ରଖୁଛି ବୋଲି ଦର୍ଶାଯାଉଛି । ଏହିଭଳି ବ୍ୟାଖ୍ୟାର ବୈଧତା କେତେ ବା କେଉଁ ପରୀକ୍ଷାଗାରରୁ ଏହା ପ୍ରମାଣିତ ତାହା ଦର୍ଶାଯାଉନାହିଁ। ତେଣୁ କେବଳ ଆକର୍ଷିତ କରିବା ପାଇଁ ଏବଂ ଉଚ୍ଚ ମୂଲ୍ୟକୁ ଯୁକ୍ତିସଂଗତ କରିବା ପାଇଁ ହିଁ ବିଜ୍ଞାନଭିତ୍ତିକ ଶବ୍ଦ ବ୍ୟବହାର କରାଯାଉଛି । କେଶ ସାଂପୋର ବିଜ୍ଞାପନରେ ଏହା ପ୍ରୋଟିନ୍‌ଯୁକ୍ତ ବୋଲି ଦର୍ଶାଯାଉଛି । ମାତ୍ର କେତେ ପ୍ରତିଶତ ପ୍ରୋଟିନ୍ ରହିଛି, ଏପରିକି ମନୁଷ୍ୟ ଶରୀର କେଶ ପାଇଁ କେତେ ମାତ୍ରାର ପ୍ରୋଟିନ୍ ବାହ୍ୟ ପ୍ରୟୋଗ ହୋଇପାରିବ ସେ ବିଷୟରେ ସାଧାରଣ ଗ୍ରାହକ ଜାଣିବାର ସୁଯୋଗ ନାହିଁ । ଏପରିକି ବର୍ତ୍ତମାନ ପ୍ରସାଧନ ସାମଗ୍ରୀରେ ବହୁଳ ବ୍ୟବହୃତ ହେଉଛି ରସାୟନ ବିଜ୍ଞାନର ଶବ୍ଦାବଳୀ । ଯଥା ଗ୍ଲିସେରିନ୍ ଏବଂ ବୋରିକ୍ ଏସିଡ୍‌ର ଉପସ୍ଥିତି ଆଣ୍ଟିସେପ୍‌ଟିକ୍‌ର କାମ କରିଥାଏ ବୋଲି ପ୍ରଚାର ହେଉଛି । ଅନ୍ୟ ପକ୍ଷରେ ଏହାର ବିଷ ପ୍ରକ୍ରିୟାକୁ ମଧ୍ୟ ଏଡ଼ାଇ ଦିଆଯାଇ ନପାରେ । ଏହାର ମାତ୍ରାଧିକ ବ୍ୟବହାର ସ୍ୱାସ୍ଥ୍ୟ ପାଇଁ ବିପଦ

ସୃଷ୍ଟି କରେ, ଏ ବିଷୟରେ ସାମାନ୍ୟତମ ସୂଚନା ବିଜ୍ଞାପନଦାତାମାନେ ଦେଉନାହାନ୍ତି । ବର୍ତ୍ତମାନ ମୁହଁ ଏବଂ ତ୍ୱଚାରେ ବ୍ୟବହୃତ ହେଉଥିବା କ୍ରିମ୍‌ଗୁଡ଼ିକ ପେଟ୍ରୋଲିୟମ ଜେଲିରୁ ପ୍ରସ୍ତୁତ, ଯାହାକି ଚର୍ମର ଜଳୀୟଅଂଶ ସୁରକ୍ଷିତ ରଖେ । କିନ୍ତୁ ଏହା ଲୋମକୂପକୁ ବନ୍ଦ କରି ସ୍ୱେଦଗ୍ରନ୍ଥିକୁ ପ୍ରଭାବିତ କରିବା ବିଷୟରେ ବିଜ୍ଞାପନଦାତାମାନେ ନିରବ ରହୁଛନ୍ତି, ଯାହା କି ସ୍ୱାସ୍ଥ୍ୟ ପକ୍ଷେ ଅଶେଷ କ୍ଷତିକାରକ । ସବୁଠାରୁ ବଡ଼ ଆଶ୍ଚର୍ଯ୍ୟର କଥା ହେଲା ବିଜ୍ଞାପନ ଭିତ୍ତିକ ଶବ୍ଦର ବିଜ୍ଞାପିତ ଦ୍ରବ୍ୟ ସହିତ କୌଣସି ସମ୍ବନ୍ଧ ନାହିଁ, ଯଥା କାଇନେଟିକ୍ ଯାହାର କୌଣସି ଦୁଇଚକିଆ ବା ଚାରିଚକିଆ ଯାନ ସହିତ ସମ୍ବନ୍ଧ ନାହିଁ । ସେହିପରି 'ଲୁମିନସ୍'ଶବ୍ଦର ମୋବାଇଲ୍ ସହିତ କୌଣସି ସମ୍ବନ୍ଧ ନାହିଁ । ଏପରିକି ବିଭିନ୍ନ ଇଞ୍ଜିନ୍ ଲୁବ୍ରିକାଣ୍ଟରେ ବ୍ୟବହୃତ ଶବ୍ଦର କୌଣସି ଗୁଣାତ୍ମକ ମାନକୁ ପ୍ରଭାବିତ କରୁ ନଥିଲେ ମଧ୍ୟ ଶ୍ରୁତିମଧୁର ପାଇଁ ବିଶେଷ ଭାବରେ ବ୍ୟବହୃତ ହୁଏ ।

ବର୍ତ୍ତମାନର ନିର୍ମାଣ ଯୁଗରେ ସିମେଣ୍ଟର ବିଜ୍ଞାପନରେ ଏହାର କଂପ୍ରେସିଭ୍ ଷ୍ଟେଙ୍ଗଥ୍ ଯେତେ ଲେଖାଯାଉଛି, ହେଲେ ଏହାର ପ୍ରମାଣପତ୍ର ବା କେଉଁ ପରିସ୍ଥିତିରେ ଏହା ଆକଳନ କରାଯାଇଛି ଏହାର ସୂଚନା ରହୁନାହିଁ । ନିର୍ମାଣ ବ୍ୟବହୃତ ରଡ଼ର ବିଜ୍ଞାପନରେ ରଡ଼ର ନିର୍ମାଣ କୌଶଳ ନେଇ ବୈଷୟିକ ଶବ୍ଦ ଯଥା କଂପ୍ୟୁଟରାଇଜଡ଼ ନିର୍ମାଣ, ଧାରାବାହିକ ଗୁଣବତ୍ତା ନିୟନ୍ତ୍ରଣ ଉପରେ ଗୁରୁତ୍ୱ ଦିଆଯାଉଛି କିନ୍ତୁ ଏହାର ରାସାୟନିକ ଉପାଦାନ ସଂପର୍କରେ ସୂଚନା ନାହିଁ । ଯଥା କାର୍ବନ ଉପସ୍ଥିତି ଯୋଗୁଁ କେଉଁ ଗୁଣ ବୃଦ୍ଧି ହୁଏ, ଏହା କେତେ ରହିବା ଜରୁରୀ ଇତ୍ୟାଦି । ବେଳେବେଳେ ବିଜ୍ଞାପନ ଦାତାମାନେ ଅନ୍ଧ ବ୍ୟକ୍ତି ହାତୀ ଦର୍ଶନ କରାଇବା ଭଳି ବିଜ୍ଞାନଭିତ୍ତିକ ବିଜ୍ଞାପନ ଦେଉଛନ୍ତି । ବର୍ତ୍ତମାନର ବିଜ୍ଞାନଭିତ୍ତିକ ବିଜ୍ଞାପନ ଜରିଆରେ ଗ୍ରାହକମାନେ ୱାଟ୍ ଖର୍ଚ୍ଚଭିତ୍ତିରେ ବୈଦ୍ୟୁତିକ ଉତ୍ପାଦନ କିଣିବା ସହ ବିଦ୍ୟୁତ ଦେୟକୁ ହ୍ରାସ କରିବାରେ ସମର୍ଥ ହେଉଛନ୍ତି, ଏହାଛଡ଼ା ରାଷ୍ଟ୍ରର ଶକ୍ତି ସଂରକ୍ଷଣରେ ସହାୟକ ହେଉଛନ୍ତି । ଏଠାରେ ଉଲ୍ଲେଖଯୋଗ୍ୟ ଗୋଟିଏ ୟୁନିଟ୍ ଶକ୍ତି ଉତ୍ପାଦନ କରିବା ପାଇଁ ୭୦୦ଗ୍ରାମର କୋଇଲା ଦହନ କରିବାକୁ ପଡ଼େ । ଏହି କୋଇଲାର ଦହନ ବିଶ୍ୱ ତାପମାତ୍ରା ସହ ପରିବେଶକୁ ମଧ୍ୟ ପ୍ରଭାବିତ କରେ । ଅନ୍ୟ ପକ୍ଷରେ ଟୁଥ୍‌ପେଷ୍ଟର ବିଜ୍ଞାପନ ପାଇଁ ବ୍ୟବହୃତ ହେଉଥିବା ଶବ୍ଦ ସଲ୍ଟ, କ୍ୟାଲସିୟମ୍, ଫ୍ଲୋରାଇଡ୍ ଇତ୍ୟାଦିର କେତେ ମାତ୍ରାର ଉପସ୍ଥିତି ଏବଂ କ'ଣ ଏହାର ପ୍ରଭାବ ଏହା ନେଇ କୌଣସି ତଥ୍ୟ ରହୁ ନାହିଁ । ବିଜ୍ଞାପନଦାତାମାନେ ସାବୁନ୍ ଓ ହ୍ୟାଣ୍ଡୱାସ୍‌ର ବ୍ୟବହାର ସମ୍ବନ୍ଧ ବିଜ୍ଞାପନ ଦେବା ସମୟରେ ଏହାର ଅଣୁଜୀବ ପ୍ରତିରୋଧକ ତଥା ସ୍ୱାସ୍ଥ୍ୟଗତ ଦିଗକୁ ବାରମ୍ବାର ଗୁରୁତ୍ୱ ଦେବା ଦ୍ୱାରା ଗାଁଗଣ୍ଡାଠାରୁ ସହର ପର୍ଯ୍ୟନ୍ତ ସମସ୍ତେ ଶୌଚ ହେବା ପରେ ଏବଂ ଖାଇବା ପୂର୍ବରୁ ଭଲ ଭାବରେ ହାତ ସଫା କରି ଅନେକ ରୋଗକୁ ଏଡ଼ାଇ ପାରୁଛନ୍ତି । ପୂର୍ବରୁ ଗାଁ ଗହଳିରେ ବ୍ୟବହୃତ ହେଉଥିବା ବାଲି, ପାଉଁଶ ବା ଅଙ୍ଗାର ପ୍ରଭୃତିର ବ୍ୟବହାର ପ୍ରାୟ ନାହିଁ କହିଲେ ଚଳେ । ବିଜ୍ଞାପନଦାତାମାନେ ପରିବେଶ ସଚେତନତା ପାଇଁ ବିଭିନ୍ନ ଶବ୍ଦମାନ ବ୍ୟବହାର କରି ସାଧାରଣ ଖାଉଟିମାନଙ୍କ ମନରେ ସଚେତନତା ସୃଷ୍ଟି କରିବାରେ ସହାୟ ହେଉଛନ୍ତି, ଯଥା ଜୈବ ଅପଘଟନୀୟ ପ୍ୟାକିଂ, (biodegradeble packing) ସୀସାରହିତ ପେଟ୍ରୋଲ, ପାରଦମୁକ୍ତ ଉପକରଣ, ବର୍ଷାଜଳ ଅମଳ ବ୍ୟବହୃତ ଉତ୍ପାଦ, ଜୈବିକ କୃଷି ଦ୍ୱାରା ପ୍ରସ୍ତୁତ ଇତ୍ୟାଦି ।

କମ୍ପ୍ୟୁଟର ଏବଂ ସୂଚନା ପ୍ରଯୁକ୍ତି ବିଦ୍ୟାର ପ୍ରତ୍ୟେକଟି ଜିନିଷର ବିଜ୍ଞାପନ ବିଜ୍ଞାନଭିତ୍ତିକ ହେଉଛି, ଯଥା ମେମୋରି କିଲୋ ବାଇଟ୍, ମେଗା ବାଇଟ୍, ଗିଗା ବାଇଟ୍, ମେଗା ପିକ୍‌ସେଲ୍, ହାଇ ଡେଫିନେସନ୍ ଇତ୍ୟାଦି । ଏହିଗୁଡ଼ିକ କମ୍ପ୍ୟୁଟର ପେନ୍‌ଡ୍ରାଇଭ୍, ମୋବାଇଲ୍ ଫୋନ୍, ଡିଜିଟାଲ କ୍ୟାମେରା ଇତ୍ୟାଦି ପାଇଁ ବ୍ୟବହୃତ ହେଉଛି । ବିଜ୍ଞାନଭିତ୍ତିକ ବିଜ୍ଞାପନ ଯୋଗୁଁ ଲୋକମାନେ ବର୍ଜ୍ୟବସ୍ତୁର ପରିଚାଳନାରେ ସହାୟ ହେବା ପାଇଁ ପ୍ରୟାସ କରୁଛନ୍ତି, ଯଥା– ତାପଜ ବିଦ୍ୟୁତ୍ କେନ୍ଦ୍ରର ପାଉଁଶରେ ପ୍ରସ୍ତୁତ ସିମେଣ୍ଟ, ସ୍ଲାଗ୍ (ଇସ୍ପାତ କାରଖାନାର ବର୍ଜ୍ୟବସ୍ତୁ) ସିମେଣ୍ଟ, ଆଲୁମିନା ଶିଳ୍ପର ବର୍ଜ୍ୟବସ୍ତୁ ଲାଲ କାଦୁଅ (ରେଡ୍ ମଡ୍) ପ୍ରସ୍ତୁତ ଟାଇଲ୍, ପାଉଁଶ ଇଟା ଇତ୍ୟାଦି । ଏହି ଦ୍ରବ୍ୟଗୁଡ଼ିକ ଅପେକ୍ଷାକୃତ କମ୍ ମୂଲ୍ୟ ଏବଂ ପରିବେଶ ପ୍ରଦୂଷଣ ରୋକି ପାରୁଛି । ଏପରିକି ଅନେକ ଗୃହସଜା ଉପକରଣଗୁଡ଼ିକ ବର୍ଜ୍ୟବସ୍ତୁରୁ ପ୍ରସ୍ତୁତ ବୋଲି ବିଜ୍ଞାପିତ ହେବା ଦ୍ୱାରା ସାଧାରଣ ଜନତା ମଧ୍ୟ ପରିବେଶ ସଂରକ୍ଷଣ ଏବଂ ବର୍ଜ୍ୟବସ୍ତୁ ପରିଚାଳନାରେ ସାମିଲ ହେବା ପାଇଁ ଉକ୍ତ ଦ୍ରବ୍ୟଗୁଡ଼ିକୁ ବିଶେଷ ଭାବରେ କ୍ରୟ କରୁଛନ୍ତି । ବ୍ୟବସାୟିକ ବିଜ୍ଞାପନ ଗ୍ରାହକ ବା କ୍ରେତା ନିକଟରେ ବିଭିନ୍ନ ପସନ୍ଦଯୋଗ୍ୟ ଉତ୍ପାଦର ଚାହିଦା ସୃଷ୍ଟି କରେ । ଏହି ବିଜ୍ଞାପନ ବିଜ୍ଞାନଭିତ୍ତିକ ହେଲେ ଉତ୍ପାଦ ନିର୍ମାତା ସହଜରେ ଗ୍ରାହକ ନିକଟରେ ପହଞ୍ଚିପାରେ ଏବଂ ଉପଯୁକ୍ତ ବିଚାରଧାରା ପ୍ରୟୋଗ କରି ଖାଉଟି ତା'ର ଆବଶ୍ୟକ ଦ୍ରବ୍ୟ ବା ସେବା ପସନ୍ଦ କଲେ ହିଁ ନିଜର କଷ୍ଟ ଅର୍ଜିତ ଅର୍ଥର ଉପଯୁକ୍ତ ଏବଂ ସୁରକ୍ଷିତ ବିନିଯୋଗ ହୋଇପାରିବ । ବିଜ୍ଞାନଭିତ୍ତିକ ବିଜ୍ଞାପନ ଦ୍ୱାରା ଖାଉଟିମାନେ ସଚେତନ ହୁଅନ୍ତୁ, କିନ୍ତୁ ଅଗ୍ନିକୁ ପତଙ୍ଗ ପରି ଆକର୍ଷିତ ନ ହୁଅନ୍ତୁ । ସେଇଥିପାଇଁ ତ କୁହାଯାଇଛି, ସଚେତନ ଖାଉଟି, ସୁରକ୍ଷିତ ଖାଉଟି ।

ଓର୍ଷକା, ଭାଗବତପୁର
ବାଲିଆ, କେନ୍ଦ୍ରାପଡ଼ା

# ଓଡ଼ିଶାରେ କ୍ଷେତ୍ର ପରମ୍ପରା ଓ ମହାବୀର କ୍ଷେତ୍ର ଦଶପଲ୍ଲା

ଲକ୍ଷ୍ମୀଧର ଦାଶ

ପ୍ରାକୃତିକ ଶୋଭା ସଂପଦରେ ପରିପୂର୍ଣ୍ଣ ଦେବଭୂମି ଭାରତବର୍ଷ । ଗିରିରାଜ ହିମାଳୟର ବରଫାଚ୍ଛାଦିତ ତୁଙ୍ଗଶୃଙ୍ଗ, ତିନି ପାର୍ଶ୍ୱରେ ଦିଗନ୍ତ ବିସ୍ତାରୀ ସାଗର, ବ୍ରହ୍ମପୁତ୍ର, ଗଙ୍ଗା, ଯମୁନା, ଗୋଦାବରୀ, ମହାନଦୀ ଆଦି ପୁଣ୍ୟତୋୟା ନଦନଦୀ, ହ୍ରଦ, ଝରଣା, ଜଳପ୍ରପାତ, ବିସ୍ତୃତ ପ୍ରାନ୍ତର, ଶସ୍ୟକ୍ଷେତ୍ର, ଜନବସତି, ଧର୍ମାନୁଷ୍ଠାନ ସମସ୍ତର ସମାହାର ଭାରତକୁ ଏକ ପୁଣ୍ୟଭୂମି ରୂପେ ବିଶ୍ୱବକ୍ଷରେ ପ୍ରତିପାଦିତ କରାଇଛି ।



ସନାତନ ବୈଦିକ ସଂସ୍କୃତିର ସ୍ଥାପନା, ପ୍ରଚାର ପ୍ରସାର,ବେଦ ଉପନିଷଦ ପୁରାଣ ମାଧ୍ୟମରେ ବିଭିନ୍ନ ଧାମ, କ୍ଷେତ୍ର ପୀଠ ଇତ୍ୟାଦିର ମହତ୍ତ୍ୱ ପ୍ରତିପାଦନ କରିବାରେ ବହୁ ମହାପୁରୁଷ ରାମ, କୃଷ୍ଣ, ବୁଦ୍ଧ, ମହାବୀର ତଥା ଅନେକ ସାଧୁସନ୍ଥ ମୁନିଋଷି ଆଚାର୍ଯ୍ୟ, ଆଚାର୍ଯ୍ୟାଙ୍କର ନିଃସ୍ୱାର୍ଥ ଅବଦାନ ଭାରତବର୍ଷରେ ଅତୁଳନୀୟ ।

ଆଦି ଶଙ୍କରାଚାର୍ଯ୍ୟଙ୍କ ଦ୍ୱାରା ଭାରତବର୍ଷର ଚାରି ଦିଗରେ ସ୍ଥାପିତ ଚାରି ଧାମ ପୂର୍ବରେ ପୁରୁଷୋତ୍ତମ ଧାମ ପୁରୀ, ପଶ୍ଚିମରେ ଶ୍ରୀ ଦ୍ୱାରିକାନାଥ ଧାମ, ଉତ୍ତରରେ ଶ୍ରୀ ବଦ୍ରିନାଥ ଧାମ ଓ ଦକ୍ଷିଣରେ ଶ୍ରୀ ରାମେଶ୍ୱର ଧାମ ବୈଦିକ ଧର୍ମ ସଂସ୍କୃତିର ଏକ ଏକ କୀର୍ତ୍ତିସ୍ତମ୍ଭ ସଦୃଶ ବିରାଜମାନ । ଏହା ବ୍ୟତୀତ ବାବା ବୈଦ୍ୟନାଥ ଧାମ, ଅକ୍ଷରଧାମ, ଚିତ୍ରକୁଟଧାମ, ବୃନ୍ଦାବନ ଧାମ, ସାକେତ ଧାମ, କାଶୀବିଶ୍ୱନାଥ ଧାମ ଇତ୍ୟାଦି ଧର୍ମ ଧାରଣା ସଂସ୍କୃତି ରକ୍ଷଣରେ ବହୁ ଜନାଦୃତ । ସ୍ୱୟମ୍ଭୁ ଦ୍ୱାଦଶ ଜ୍ୟୋତିର୍ଲିଙ୍ଗ ଭାରତବର୍ଷରେ ପ୍ରାତଃସ୍ମରଣୀୟ ଅଟନ୍ତି ।

ସେହିପରି ଭାରତବର୍ଷରେ ବିଭିନ୍ନ ଧର୍ମକ୍ଷେତ୍ର ଯଥା କୁରୁକ୍ଷେତ୍ର, ମହାକାଳେଶ୍ୱର ଉଷର କ୍ଷେତ୍ର, କର୍କକ୍ଷେତ୍ର, ପୁଷ୍କର କ୍ଷେତ୍ର, ଗୟାଗଦାଧର କ୍ଷେତ୍ର ଇତ୍ୟାଦି ପବିତ୍ର ଧାର୍ମିକ କ୍ଷେତ୍ର ରହିଅଛି । ଓଡ଼ିଶାରେ ଶ୍ରୀକ୍ଷେତ୍ର ବା ଶଙ୍ଖକ୍ଷେତ୍ର ପୁରୀ, ଶ୍ରୀ ଲିଙ୍ଗରାଜଙ୍କ ଏକାମ୍ରକ୍ଷେତ୍ର ଭୁବନେଶ୍ୱର, ଅର୍କକ୍ଷେତ୍ର କୋଣାର୍କ, ଶାବର ଶ୍ରୀକ୍ଷେତ୍ର, କୋରାପୁଟ, ବିରଜାକ୍ଷେତ୍ର, ଯାଜପୁର, ତୁଳସୀକ୍ଷେତ୍ର, କେନ୍ଦ୍ରାପଡ଼ା, ସ୍ୱର୍ଣ୍ଣକଳସ କ୍ଷେତ୍ର ଓଡ଼ଗାଁ, ଶରଣକୁଳର ଲଡୁବାବା, କଣ୍ଟିଲୋ ନୀଳମାଧବ ଓ ମହାବୀର କ୍ଷେତ୍ର ଦଶପଲ୍ଲା ସର୍ବଜନବିଦିତ ।

ଶକ୍ତି ପୂଜନ ସ୍ଥଳଗୁଡ଼ିକ ସାଧାରଣତଃ ପୀଠ ନାମରେ ନାମିତ । ପୁରୀ ବିମଳା ପୀଠ, କାକଟପୁର ମଙ୍ଗଳା, ଝଙ୍କଡ଼ ଶାରଳା, କୋଣାର୍କ ରାମଚଣ୍ଡି, ଯାଜପୁର ବିରଜା, ବାଙ୍କୀ ଚର୍ଚ୍ଚିକା, ବାଣପୁର ଭଗବତୀ, କଟକ କଟକଚଣ୍ଡୀ, ସମ୍ବଲପୁର ସମଲେଇ, ତାଳଚେର ହିଙ୍ଗୁଳା , ଭୁବନେଶ୍ୱର ଗୌରୀ, ବଡ଼ମ୍ବା ଭଟ୍ଟାରିକା, ନୟାଗଡ଼ ଦକ୍ଷିଣକାଳୀ, ଭବାନୀପାଟଣା ମାଣିକେଶ୍ୱରୀ ଇତ୍ୟାଦି ଓଡ଼ିଶାରେ ପ୍ରତିଷ୍ଠିତ । ଅଧୁନା ତାରିଣୀ ପୀଠ ବହୁ ଶ୍ରଦ୍ଧା ବିଶ୍ୱାସର ପୀଠ ଭାବରେ ପ୍ରସିଦ୍ଧ ।

### ମହାବୀର କ୍ଷେତ୍ର ଦଶପଲ୍ଲା

ସମୁଦ୍ର ପତନରୁ ୭୦୦ ଫୁଟ ଉଚ୍ଚ ୨୨ ଡିଗ୍ରୀ ଅକ୍ଷାଂଶ ଓଡ଼ିଶାର ଦକ୍ଷିଣାଞ୍ଚଳରେ ଅବସ୍ଥିତ ଦଶପଲ୍ଲା । ଓଡ଼ିଶାର ୨୬ ଗଡ଼ଜାତ ରାଜ୍ୟ ମଧ୍ୟରୁ ଏହା ଅନ୍ୟତମ । ଏହାର ଉତ୍ତରରେ ମହାନଦୀ, ନରସିଂହପୁର ଅନୁଗୁଳ ପୂର୍ବରେ ଖଣ୍ଡପଡ଼ା, ନୟାଗଡ଼ ଦକ୍ଷିଣରେ ଘୁମୁସର ଭଞ୍ଜନଗର ଓ ପଶ୍ଚିମରେ ବଉଦ ଅବସ୍ଥିତ । ଉତ୍କଳରେ ଭୌମକର ରାଜବଂଶ ଶାସନ କାଳରୁ (ଅଷ୍ଟମ ନବମ




ଶତାବ୍ଦୀ) ଖିଞ୍ଜାଲି ମଣ୍ଡଳ ଅନ୍ତର୍ଗତ ସୋନପୁର, ବଉଦ ଦଶପଲ୍ଲା କରଦ ରାଜ୍ୟ ରୂପେ ରହିଥିଲା । ନେତ୍ରଭଞ୍ଜ ଓ ଶତ୍ରୁଭଞ୍ଜଙ୍କର ଦଶପଲ୍ଲା ତାମ୍ରଲେଖରୁ ଏ ସମ୍ବନ୍ଧରେ ପ୍ରମାଣ ମିଳେ । ସନ ୧୪୯୫ ମସିହାରେ ବଉଦ ରାଜାଙ୍କର ଭାଇ ଶାଳଭଞ୍ଜ ବଉଦ ରାଜ୍ୟରୁ ଆସି ପୁରୀ ରାଜା ଓ ନୟାଗଡ଼ ରାଜାଙ୍କ ସହଯୋଗକ୍ରମେ ମହାନଦୀ କୂଳ ବଡ଼ମୂଳଠାରେ ପ୍ରଥମେ ଗଡ଼ ସ୍ଥାପନ କରିଥିଲେ । ମରହଟ୍ଟା ଠଗ ଅତ୍ୟାଚାର ଯୋଗୁଁ ପରେ ସେ ଦଶପଲ୍ଲା (ପୁରୁଣା ଦଶପଲ୍ଲା)ରେ ନିଜର ଗଡ଼ ସ୍ଥାପନ କରିଥିଲେ । ପରେ ବର୍ତ୍ତମାନର କୁଞ୍ଜବନଗଡ଼କୁ ଏହା ସ୍ଥାନାନ୍ତରିତ ହୋଇଥିଲା ।

ସନ ୧୮୦୩ ମସିହାରେ ଓଡ଼ିଶାକୁ ଇଂରେଜମାନେ ଦଖଲ କରିବା ପର୍ଯ୍ୟନ୍ତ ଗଡ଼ଜାତମାନଙ୍କରେ ସୂର୍ଯ୍ୟବଂଶୀ ରାଜାମାନଙ୍କର ଶାସନ ଚାଲିଥିଲା । ସନ ୧୫୬୮ ରୁ ୧୭୫୧ ପର୍ଯ୍ୟନ୍ତ ମୋଗଲ ମୁସଲମାନ, ୧୭୫୧ ରୁ ୧୮୦୩ ମସିହା ପର୍ଯ୍ୟନ୍ତ ମରହଟ୍ଟା ଶାସନାଧୀନ ରହି ରାଜାମାନେ ଶାସନ କରୁଥିଲେ ।

ଦଶପଲ୍ଲାରେ ପାହାଡ଼ ପର୍ବତ ଘଞ୍ଚ ଜଙ୍ଗଲ କନ୍ଧ ଓ ଖଇରା ଇତ୍ୟାଦି ଅଧିବାସୀଙ୍କ ଅଧୀନରେ ଥିଲା । ଭଞ୍ଜବଂଶର ରାଜା ବୀର ପ୍ରତାପ ଭଞ୍ଜ କନ୍ଧ ସର୍ଦ୍ଦାର କୁଞ୍ଜ ମଳିକକୁ ଯୁଦ୍ଧରେ ପରାସ୍ତ ଓ ହତ୍ୟାକରି ତା'ର ନାମ ଅନୁସାରେ କୁଞ୍ଜବନଗଡ଼ ବସାଇଥିଲେ ଓ ତା'ର ଇଷ୍ଟଦେବୀ ନାଇକାଶୁଣୀଙ୍କୁ ଗଡ଼ର ପଶ୍ଚିମ ଭାଗରେ ସ୍ଥାପନା କରି ପୂଜା କଲେ । ପୂର୍ବରୁ ଦଶପଲ୍ଲା ଗଡ଼ ବା ରାଜ୍ୟ ଥିବାରୁ ରାଜଧାନୀକୁ କୁଞ୍ଜବନଗଡ଼ ବୀରମାଟି ଭାବେ ନାମିତ କରିଥିଲେ ।



ଶୂଦ୍ରମୁନି ସାରଳା ଦାସଙ୍କ ରଚିତ ମହାଭାରତ ମଧ୍ୟପର୍ବରେ ଦ୍ୱାପର ଯୁଗରେ ମଧ୍ୟମ ପାଣ୍ଡବ ବୀର ଅର୍ଜୁନଙ୍କ ବନବାସ, ମଣିଭଦ୍ରା ପର୍ବତରେ ଅବସ୍ଥାନ କାଳରେ ଶ୍ରୀକୃଷ୍ଣଙ୍କ ନବଗୁଞ୍ଜର ରୂପ ପ୍ରଦର୍ଶନର ଅପୂର୍ବ ବର୍ଣ୍ଣନା ରହିଛି । ଏହି ମଣିଭଦ୍ରା ପର୍ବତ ବଡ଼ମୂଳ ମହାନଦୀ ସନ୍ନିକଟରେ ଅବସ୍ଥିତ ଏବଂ ତାହା ଦଶପଲ୍ଲା ରାଜ୍ୟର ଚଉଦ କୋଶ ଅନ୍ତର୍ଭୁକ୍ତ ।

ସତ୍ୟ ପାଳିଣ ବନକୁ ଗଲେକ ଅର୍ଜୁନ
ଘୋରବନେ ବୁଲୁଛନ୍ତି ପାଳି ସତ୍ୟବ୍ରତ
ଏବେ ବିଜେ ମଣିଭଦ୍ରା ସର୍ବତ୍ର ପର୍ବତ ।
ଆଜ୍ଞା ଦେଲେ ହରି ଆହେ ବିନତା କୁମର
ମଣିଭଦ୍ରା ପର୍ବତକୁ ବେଗେ ବିଜେ କର ।
ବିଚିତ୍ର ମୂରତି ଏକ ଧରି ଚକ୍ରଧର
ହସ୍ତୀର ଶରୀର ତୁରଙ୍ଗମ ଏକ ପାଦ
ମୃଗର ଏକ ପାଦ ଯେ ବ୍ୟାଘ୍ର ଏକ ପାଦ
ମୟୂର କଣ୍ଠ ଅହିପୁଚ୍ଛ ସିଂହକଟୀ
ବୃଷଭର ଚୂଳ କୁକ୍କୁଟର ଓଷ୍ଠ ଗୋଟି
ହସ୍ତରେ ପଦ୍ମଫୁଲେକ ଗଳେ ରତ୍ନହାର
ବିଜେ କଲେ ଯାଇ ଦେବ ଅର୍ଜୁନ ଆଗର ।

ଆହୁରି ଏହି ମଣିଭଦ୍ରା ବାସ ସମୟରେ ରୈବତ ପର୍ବତରୁ ସତ୍ୟଭାମାଙ୍କୁ ଅପହରଣ କରି ରାମକୃଷ୍ଣଙ୍କୁ ଯଜ୍ଞକୁଣ୍ଡରେ ପକାଇ ଗୋସିଂହ ନାମକ ଦୈତ୍ୟ ନେଇଯାଉଥିବା ସମୟରେ ବୀର ଅର୍ଜୁନ ତାକୁ ବଧ କରି ସତ୍ୟଭାମାଙ୍କୁ ଉଦ୍ଧାର କରିଥିଲେ । ଦଶପଲ୍ଲାର ଅସୁରଖୋଲଠାରେ ଗୋସିଂହ ଦୈତ୍ୟ ବଧ ହୋଇଥିବାର କିମ୍ବଦନ୍ତୀ ପ୍ରଚଳିତ । ମହାବଳୀ ଭୀମସେନଙ୍କର ପଦଚିହ୍ନ ପୁରୁଣା ଦଶପଲ୍ଲା ନିକଟ ଭୀମରା ମୁଣ୍ଡିଆରେ ଅଦ୍ୟାବଧି ବିରାଜିତ । ବଉଦ ମାରଡ଼ାଠାରୁ ବଡ଼ମୂଳ ସାତକୋଶ ମହାନଦୀକୁ ସାତକୋଶିଆ ଗଣ୍ଡ ବୋଲି କହନ୍ତି । କଥିତ ଅଛି ମହର୍ଷି ସୁକାନ୍ତି ତପସ୍ୟା କରି ଏ ପଥରେ ଗଙ୍ଗାଙ୍କୁ ଓଡ଼ିଶାକୁ ଆଣିଥିଲେ । ମହାନଦୀରେ ବାରୁଣୀ ସ୍ନାନ ଏହାର ସନ୍ତକ ହୋଇ ରହିଛି ।

କୁଞ୍ଜବନଗଡ଼ର ଅନତି ଦୂରରେ ଅବସ୍ଥିତ ବରଦାୟିନୀ ବା ବରଦାମଣୀ ପାହାଡ଼ । ଏହି ପାହାଡ଼ ସମ୍ବନ୍ଧରେ ଅନେକ ଲୋକକଥା ପ୍ରଥା ପ୍ରାୟତଃ ଚଳି ଆସୁଅଛି । ତ୍ରେତୟାରେ ଶ୍ରୀରାମଚନ୍ଦ୍ର ଏହି ପାହାଡ଼ରେ ଯୋଗମାୟା ବରଦାୟିନୀ ଦୁର୍ଗାଙ୍କୁ ପୂଜା କରିବାର, ଲକ୍ଷ୍ମଣ ଠାକୁର ସ୍ଥଳ, ଏହି ପାହାଡ଼ରୁ ମଣିଭଦ୍ରା ପର୍ଯ୍ୟନ୍ତ ଗୁପ୍ତ ସୁଡ଼ଙ୍ଗ ଥିବାର, ମୁନିରଷି ନାଗା (ଜମଉତ) ସନ୍ନ୍ୟାସୀ ଏହି ପାହାଡ଼କୁ ସନ୍ଧ୍ୟାରେ ଆସି ସକାଳେ ଫେରିବାର ଏବଂ ମହାବୀର ଖୋଲରୁ ସପ୍ତଦଶ ଶତାବ୍ଦୀର ଶେଷ ଭାଗରେ ରାଜା

ତ୍ରିଲୋଚନ ଭଞ୍ଜଙ୍କ ଦ୍ୱାରା ସୁନ୍ଦର ମହାବୀର ହନୁମାନ ମୂର୍ତ୍ତି ଉଦ୍ଧାର କରାଯାଇ ଶ୍ରୀରଘୁନାଥ ଜୀଉଙ୍କ ମନ୍ଦିର (୧୭୫୩) ସମ୍ମୁଖରେ ସ୍ଥାପନ ଓ ବରଦାମଣୀ ପୂଜା ଖଞ୍ଜା ଇତ୍ୟାଦି ଲୋକକଥା ପ୍ରମାଣ ରହିଛି । ଦ୍ୱାଦଶ ରାଜା କୃଷ୍ଣଚନ୍ଦ୍ର ଦେଓଭଞ୍ଜଙ୍କ ଦ୍ୱାରା ବିକ୍ରମ ନରେନ୍ଦ୍ର ଭଣିତ ରାମଲୀଳା ମହାବୀର ହନୁମାନଙ୍କ ମନ୍ଦିର ସମ୍ମୁଖରେ ପ୍ରାୟ ଦୁଇଶହ ବର୍ଷରୁ ଊର୍ଦ୍ଧ୍ୱ ସମୟ ଧରି ନିରବଚ୍ଛିନ୍ନ ଭାବେ ଶ୍ରୀରାମ ନବମୀ ଠାରୁ ପ୍ରତିବର୍ଷ ଅଭିନୀତ ହୋଇ ଆସୁଅଛି । ମହାବୀର ହନୁମାନଙ୍କ ସୀତାଠାବ ଓ ଲଙ୍କାପୋଡ଼ି ଅନୁଯାୟୀ ଏ ଯାତ୍ରାର ନାମ (ଲଙ୍କାପୋଡ଼ି ଯାତ୍ରା) ଭାବେ ଓଡ଼ିଶା ତଥା ଭାରତବର୍ଷରେ ପ୍ରସିଦ୍ଧ । ମୁକ୍ତ ରଂଗମଞ୍ଚ ସଂପୂର୍ଣ୍ଣ କୁଞ୍ଜବନଗଡ଼ । ଅଭିନୟ ହିସାବରେ ଏହି ଯାତ୍ରା ଓଡ଼ିଶାରେ ପ୍ରଥମ । ଦେବନୀତି ସହ ଶ୍ରୀରାମ ଜନ୍ମଠାରୁ ରାଜ୍ୟାଭିଷେକ ପର୍ଯ୍ୟନ୍ତ ଲୀଳା ଚୈତ୍ର ଶୁକ୍ଳ ନବମୀ ଶ୍ରୀରାମ ଜନ୍ମ ଉତ୍ସବରୁ ଆରମ୍ଭ ହୋଇ ପର୍ଯ୍ୟାୟକ୍ରମେ ଜାଗରକ୍ଷା, ତାଡ଼କାବଧ, ଅହଲ୍ୟା ଉଦ୍ଧାର, ଧନୁଭଗ୍ନ, ସୀତା ବିବାହ, ପର୍ଶୁରାମ ଭେଟ, ଗଣ୍ଡା ବଧ, ବନବାସ, ତୀର୍ଥାଟନ, ଚିତ୍ରକୁଟ ଲୀଳା, ସୀତା ହରଣ, ଶ୍ରୀରାମ ବିଳାପ,ବାଲୀବଧ, ସୀତାଠାବ, କୁମ୍ଭକର୍ଣ୍ଣବଧ, ଇନ୍ଦ୍ରଜିତ ଓ ରାବଣବଧ(ଲଙ୍କାପୋଡ଼ି) ଅଗ୍ନି ପରୀକ୍ଷା, ପୁଷ୍ପକରେ ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ ଓ ରାଜ୍ୟାଭିଷେକ ଇତ୍ୟାଦି ଲୀଳା ଭାବଭକ୍ତି ଓ ନିଷ୍ଠା ସହ ଅଭିନୀତ ହୁଏ । ଗଣ୍ଡାବଧ ଓ ରାବଣବଧ ଦିନ ବିରାଟ ବର୍ଣ୍ଣାଢ଼୍ୟ ଶୋଭାଯାତ୍ରା ପଟୁଆର ବାଜା ବାଣ ରୋଷଣୀରେ ସଂପୂର୍ଣ୍ଣ ମନ୍ଦିର ଠାରୁ ବ୍ଲକ୍ ଅଫିସ୍ ହାଟପଦା ପର୍ଯ୍ୟନ୍ତ ବିରାଟ ଜନସମାଗମରେ ଗହ ଗହ କମ୍ପି ଉଠେ । ଭକ୍ତଗଣଙ୍କ ମାନସିକ ଉପାଧିରେ ପ୍ରତ୍ୟହ ରାତ୍ରରେ ଲୀଳା ଅଭିନେତାଙ୍କ ସମେତ ବହୁ ଲୋକ ପ୍ରସାଦ ସେବନ କରିଥାନ୍ତି ।

### ବିଶେଷ ପୂଜାନୀତି

ଶ୍ରୀରାମ ଜନ୍ମୋତ୍ସବ, ବ୍ରତୋପନୟନ,ଦୋଳିଶୟନ,ବିବାହ ମଣ୍ଡପରେ ଜୀଉଙ୍କର ବିବାହ ବନ୍ଦାପନା, ଗଣ୍ଡାବଧ ମୃଗୟା ପରେ ସନ୍ଧ୍ୟା ଆଳତୀ ଧୂପ, ବନବାସ ବେଶ, କାଷ୍ଠରାବଣ ପୂଜା ପଣାଭୋଗ, ସୀତାହରଣ ପୁଷ୍ପକ ଯାନ, ଚିତ୍ରକୁଟ, ମାଲ୍ୟବନ୍ତ, ସୁବଳୟାରେ ବିଜେ ଭୋଗ ଓ ଆରତୀ, ଗଡ଼ବେଢ଼ ନନ୍ଦିଘୋଷ ଆରୋହଣ,ରାମରାବଣର ଯୁଦ୍ଧ, ବ୍ରହ୍ମଶର ପ୍ରୟୋଗ,ସୀତାଙ୍କ ଅଗ୍ନି ପରୀକ୍ଷା, ପୁଷ୍ପକରେ ପ୍ରତ୍ୟାବର୍ତ୍ତନ ଓ ରାଜ୍ୟାଭିଷେକ ଇତ୍ୟାଦି ଯଥାବିଧି ଅନୁଷ୍ଠିତ ହୁଏ ।

ଏହି ବରଦାୟିନୀ ପାହାଡ଼ ପାଦଦେଶରେ ୧୯୮୩ ମସିହା ମାର୍ଗଶିର ପ୍ରଥମାଷ୍ଟମୀରେ ସ୍ୱପ୍ନାଦିଷ୍ଟ ହୋଇ ହନୁମାନ ମୂର୍ତ୍ତି ଏକ କ୍ଷୁଦ୍ରଗୁମ୍ଫାରୁ ଉଦ୍ଧାର କରାଯାଇ ଶ୍ରୀ ସ୍ୱପ୍ନ ମହାବୀର ନାମରେ ସେହି ସ୍ଥାନରେ ସ୍ଥାପିତ ଓ ପୂଜିତ ହେଉଛନ୍ତି । ବରଦାୟିନୀ ପାହାଡ଼ ଓ କଲ୍ୟାଣ ଆଶ୍ରମ ଏକ ଦର୍ଶନୀୟ ସ୍ଥଳ । ପ୍ରତିବର୍ଷ ଏହି ପୀଠରେ ଶ୍ରୀରାମ ଜନ୍ମ, ଧନୁସଂକ୍ରାନ୍ତି, ଗଣେଶ ଚତୁର୍ଥୀ ଓ ପଣା ସଂକ୍ରାନ୍ତିରେ ତିନି ଦିନ ବ୍ୟାପି ବିଶ୍ୱଶାନ୍ତି ମହାଯଜ୍ଞ ଅନୁଷ୍ଠିତ ହୁଏ । ମହାବୀର ହନୁମାନ ଦଶପଲ୍ଲାରେ ଇଷ୍ଟଦେବ । ତାଙ୍କର ମହିମା ଓ ଲୀଳା ଅପାର । ପୌରାଣିକ କିମ୍ବଦନ୍ତୀ ପ୍ରତ୍ୟକ୍ଷ ବା ପରୋକ୍ଷରେ ବିଭୁକୃପାର ଅନୁଭୂତି ବିଶ୍ୱାସ ଜନମାନସରେ ମହାବୀର ହନୁମାନଙ୍କ ପ୍ରତି ଭକ୍ତି ଶ୍ରଦ୍ଧାକୁ ବହୁଗୁଣିତ କରିଅଛି । ଏକାଦଶ ରୁଦ୍ରାବତାର, ସର୍ବଦେବ ଅଂଶ ମହାବୀର ହନୁମାନ ଦଶପଲ୍ଲା କ୍ଷେତ୍ରରେ ନିଜର ମହିମା ବିସ୍ତାର କରିଛନ୍ତି । ତାଙ୍କର ଲୀଳା ପ୍ରଚାର ଓଡ଼ିଶା ସମେତ ଭାରତବର୍ଷର ଭୋପାଳ, ଅଯୋଧ୍ୟା, ଇନ୍ଦୋର, ଉଜ୍ଜୟିନୀ, ବାଙ୍ଗାଲୋର, ଚିତ୍ରକୁଟ, ତିରୁବନ୍ତପୁରମ୍, ଉମରିଆ, ରାଜକୋଟ୍, ବିଳାଶପୁର, ସାଗର, ରେୱା ଓ ଉର୍ଚ୍ଛା ଇତ୍ୟାଦିରେ ଗୌରବ ସହକାରେ ଲୀଳା ପ୍ରଦର୍ଶନ ତାଙ୍କର ଅପାର କରୁଣାରୁ ସମ୍ଭବପର ହୋଇଛି । ଦଶପଲ୍ଲାରୁ ୧୬୬୫ ମସିହାଠାରୁ ପ୍ରତିବର୍ଷ ପୁରୀ ଶ୍ରୀଜଗନ୍ନାଥଙ୍କ ରଥକାଠ ପ୍ରଥମେ ବଡ଼ମୂଳ ବଡ଼ରାଉଳଙ୍କ ନିକଟରେ ପୂଜା ପରେ ଯାଉଅଛି । ବୀରଭୂମି, ବୀରମାନଙ୍କ ଆଗମନ, ବୀରତ୍ୱ ପ୍ରଦର୍ଶନ, ପରିଶେଷରେ ମହାବୀର ହନୁମାନଙ୍କ ଉପସ୍ଥିତି ଓ ପ୍ରତ୍ୟକ୍ଷ କରୁଣା ଦଶପଲ୍ଲାକୁ ମହାବୀର କ୍ଷେତ୍ର ନାମରେ ନାମିତ କରିବା ଯଥାର୍ଥ ମନେ ହୁଏ ।

ଜୟ ଜୟ ରଘୁନାଥ ଜୟ ହନୁମାନ<br>
ସଦା ଶାନ୍ତି ସନ୍ତୋଷରେ ଥାନ୍ତୁ ସର୍ବଜନ<br>
ଅପାର ମହିମା ଲୀଳା ହେଉ ବିସ୍ତାରିତ<br>
ଜୟଘୋଷୁ କୁଂଜବନ ମହାବୀର କ୍ଷେତ୍ର ।<br>
(ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ)

ବିଦ୍ର : ଦଶପଲ୍ଲାର ଦର୍ଶନୀୟ ସ୍ଥାନ – କୁଆଁରିଆ ମଧ୍ୟମ ଜଳସେଚନ ଯୋଜନା (ବିଶ୍ୱବ୍ୟାଙ୍କ ସହାୟତା ଦ୍ୱାରା)

ମୃଗବିହାର, ଭୀମରା (ପୁରୁଣା ଦଶପଲ୍ଲା) ରନ୍‌ଗଣ୍ଡ ଜଳପ୍ରପାତ, ଟାକରା, ବଡ଼ରାଉଳ, ବଡ଼ମୂଳ, ଲଙ୍କାପୋଡ଼ି ଯାତ୍ରାର ଆକର୍ଷଣ, ପ୍ରଭୁ ଶ୍ରୀ ରଘୁନାଥ ଜୀଉଙ୍କ ମନ୍ଦିର, ଶ୍ରୀ ସ୍ୱପ୍ନ ମହାବୀର ବରଦାୟିନୀ ପାହାଡ଼, ସାତକୋଶିଆ ଗଣ୍ଡ, କଳାପାଟ ଠାକୁରାଣୀ ଇତ୍ୟାଦି ।

---

ଆନନ୍ଦଶ୍ରୀ, କୁଞ୍ଜବନଗଡ଼<br>
ଦଶପଲ୍ଲା, ଜି: ନୟାଗଡ

# ଓଡିଶାର ପାଲା ସଂସ୍କୃତି

**ଡକ୍ଟର ଶ୍ରୀଚରଣ ଦାସ**

ସଂସ୍କୃତିକୁ ଆମେ ମୁଖ୍ୟତଃ ଆଧାତ୍ମିକ ଅନୁଶୀଳନ ବା ଧର୍ମ ସମ୍ବନ୍ଧୀୟ ଧାରଣା ଭାବରେ ଗ୍ରହଣ କରିଥାଉ । ସମାଜର ଚଳଣି, ରୀତିନୀତି, ଆଚାର ବିଚାର ଦୈନନ୍ଦିନ ଜୀବନରେ ସଂସ୍କୃତି ସହିତ ଗଭୀର ଭାବରେ ଜଡିତ । ତେଣୁ ଆମେ ସଂସ୍କୃତି କହିଲେ ଜୀବନଯାପନର ମାର୍ଗ ବୋଲି ମନେକରୁ । ବସ୍ତୁତଃ ସଂସ୍କୃତି ଏକ ମିଶ୍ର ପ୍ରତିକ୍ରିୟା । ଆମେ ଗାଧୋଇବା ପରେ ଶୁଖିଲା ଲୁଗା ନପିନ୍ଧି ମୁଣ୍ଡ ନ କୁଣ୍ଡାଇ ଖାଇବାକୁ ବସିଗଲେ ସଂସ୍କୃତିର ବାଧକ ହୁଏ । ଆମିଷ ସହିତ କ୍ଷୀର ଖାଇବାକୁ ବାରଣ କରାଯାଏ । ଗୁରୁବାର ସଂକ୍ରାନ୍ତି, ସୋମବାର ଦିନରେ ମାଛ ମାଂସ ଭକ୍ଷଣ ଆପତ୍ତିଜନକ । ଓଡିଶାର ସଂସ୍କୃତି (ଉତ୍କଳର) ଯାଜପୁରଠାରୁ ରାଢ ଦେଶ (ପଶ୍ଚିମ ବଙ୍ଗ) ପର୍ଯ୍ୟନ୍ତ ବିସ୍ତୃତ ଥିଲା । କଳିଙ୍ଗର ସଂସ୍କୃତି ଯାଜପୁରଠାରୁ ଦକ୍ଷିଣରେ ବିଶାଖାପାଟଣା ପର୍ଯ୍ୟନ୍ତ ପରିବ୍ୟାପ୍ତ ଏବଂ କୋଶଳର ସଂସ୍କୃତି ବୌଦଠାରୁ ପଶ୍ଚିମରେ ବିଳାସପୁର ଯାଏ ବିସ୍ତୃତ ଥିଲା । ଏହା ଭରତୀୟ ସଂସ୍କୃତିର ଅଂଶ ବିଶେଷ ହେଲେ ହେଁ ଏହାର ସ୍ୱତନ୍ତ୍ରତା ସର୍ବତ୍ର ବିଦିତ । ସଂସ୍କୃତିର ଦୁଇଟି ରୂପ ରହିଛି । ଗୋଟିଏ ବାହ୍ୟ ରୂପ ଏବଂ ଅନ୍ୟଟି ଅନ୍ତରୂପ । ସମାଜର ଆଚାର, ବିଚାର, ଅନୁଷ୍ଠାନ. ବ୍ୟବସାୟ , ଚିନ୍ତା ଚେତନା, ଶିକ୍ଷା ଦୀକ୍ଷା ବାହ୍ୟ ରୂପ କିନ୍ତୁ କାବ୍ୟ, ଶିଳ୍ପ, ସଙ୍ଗୀତ, କଳାକୁ ସଂସ୍କୁତିର ଅନ୍ତରୂପ ବା ସ୍ୱକ୍ଷ୍ମରୂପ ଭାବରେ ବିବେଚିତ । ସାହିତ୍ୟ, ସଙ୍ଗୀତ ଆଦି ଜୀବନକୁ ରସମୟ କରେ । ଓଡିଶାର ସାଂସ୍କୃତିକ ପରମ୍ପରାରେ ପାଲା ବହୁ ପ୍ରାଚୀନ କାଳରୁ ପ୍ରଚଳିତ ହୋଇ ନଥିଲେ ହେଁ ଏହାକୁ ଖୁବ୍ କମ୍ ଦିନର ମନେ କରାଯିବା ଅନୁଚିତ୍ । ଯେତେ ଦୂର ମନେହୁଏ ଏହା ଷୋଡଶ ଶତାବ୍ଦୀରୁ ଓଡିଶାରେ ଏକ ଲୋକପ୍ରିୟ କଳା ଭାବରେ ପ୍ରସିଦ୍ଧି ଅର୍ଜନ କରିଛି । ପାଲା ଶବ୍ଦ ବେଦ ବା ପ୍ରସିଦ୍ଧ ପୁରାଣ ମାନଙ୍କରେ ବ୍ୟବହୃତ ହୋଇନାହିଁ । ଏହା ଉଭୟ ଦୃଶ୍ୟ ଏବଂ ଶ୍ରବ୍ୟକୁ ନେଇ ସମୃଦ୍ଧ । 'ପାଲା' ଶବ୍ଦର ବ୍ୟବହାର ପାଇଁ ମତ ପାର୍ଥକ୍ୟ ରହିଛି । କେତେକଙ୍କ ମତରେ ପାଳି ଧରିବାରୁ ପାଲା ହୋଇଛି, ଗାୟକ ମଞ୍ଚ ଉପରେ ଯେଉଁ ପଦ ଆବୃତ୍ତି କରେ, ତାହାକୁ ପାଳିଆମାନେ ସଙ୍ଗେସଙ୍ଗେ ଅଙ୍ଗଭଙ୍ଗୀ ଏବଂ ବାଦ୍ୟର ତାଳେତାଳେ ପାଳି ଧରିଥାନ୍ତି । ତେଣୁ 'ପାଲ୍ୟତେ ଇତି ପାଲା' ଅଧିକ ଯୁକ୍ତିଯୁକ୍ତ । କେହି କେହି ପାଳିଆରୁ, ଆଉ କେତେକ ପାଞ୍ଚାଳୀରୁ, ପାଲା ଏବଂ ପଲ୍ଲବିତ ଆଦି ଶବ୍ଦରୁ ପାଲା ଶବ୍ଦ ସୃଷ୍ଟି ହୋଇଛି ବୋଲି ମତ ଦିଅନ୍ତି । ହିନ୍ଦୀର ପାଲାଗାନ ଶବ୍ଦରୁ ପାଲା ଆସିଥିବା ମଧ୍ୟ କେହି କେହି କୁହନ୍ତି ।

ପାଲା ଓଡିଶାର ଏକ ମୌଳିକ କଳା । ପାଲାର ଉତ୍ପତ୍ତି ଏବଂ କ୍ରମବିକାଶ ଉପରେ ଯଥେଷ୍ଟ ଆଲୋଚନା, ଗବେଷଣା ହୋଇନାହିଁ । ତଥାପି ଏ ଦିଗରେ ପ୍ରଯତ୍ନ କରିଥିବା ଦୁଇଜଣ ଯୋଗ୍ୟ ବ୍ୟକ୍ତିତ୍ୱ ହେଲେ ନିରଂଜନ ପଣ୍ଡା ଏବଂ ଧୀରେନ୍ ଦାଶ । ସେମାନଙ୍କ ଦ୍ୱାରା ଲିଖିତ ପୁସ୍ତକ ପାଲା ସଂସ୍କୃତିର ଗବେଷକମାନଙ୍କ ପାଇଁ ଅଧିକ ସହାୟତା କରିବ । ଏହି ପଞ୍ଚଦେବତାଙ୍କ ଉପାସନାରୁ ଆଜି ଅନୁଷ୍ଠିତ ହେଉଥିବା ପାଲାର ଆଦିମ ରୂପ ସତ୍ୟନାରାୟଣ ପାଲାର ଉଦ୍ଭବ । ଏହା ହିନ୍ଦୁ ମୁସଲମାନ ମୈତ୍ରୀ ବନ୍ଧନର ଏକ ଅଭିନବ ପ୍ରୟାସ, ଯାହା ମୋଗଲ ସମ୍ରାଟ ଆକବରଙ୍କ ସମୟରୁ ଏ ଦେଶରେ ଆତ୍ମ ପ୍ରକାଶ କରିଥିଲା । କିନ୍ତୁ ପ୍ରଫେସର ଡକ୍ଟର ବଂଶୀଧର ମହାନ୍ତି ସତ୍ୟନାରାୟଣ ପୂଜାର ପ୍ରଥମ ସ୍ଥାନ ଆସାମ ବୋଲି ମତବ୍ୟକ୍ତ କରନ୍ତି । କ୍ରମେ ଏହା ବଙ୍ଗଳା ଓ ଓଡିଶାକୁ ବ୍ୟାପିଛି । ସଂପ୍ରତି ଓଡିଶାର ଘରେ ଘରେ ସତ୍ୟପୀର ପୂଜା ପ୍ରଚଳିତ । ମୁସଲମାନଙ୍କର ହିନ୍ଦୁ ଦେବାଦେବୀଙ୍କ ଉପରେ ଯେଉଁ ବିରୋଧାତ୍ମକ ମନୋଭାବ ସୃଷ୍ଟି ହେଇଥିଲା ସେଥିରୁ ରକ୍ଷାପାଇବା ପାଇଁ ସତ୍ୟନାରାୟଣ ପାଲାର ଉଦ୍ଭବ ହେଲା । ଗଙ୍ଗମାନଙ୍କ ସମୟରୁ ପୁରୀ ବୈଷ୍ଣବ କ୍ଷେତ୍ର ଭୁବନେଶ୍ୱର ଶୈବକ୍ଷେତ୍ର, ଯାଜପୁର ଶାକ୍ତକ୍ଷେତ୍ର, କୋଣାର୍କ ଅର୍କକ୍ଷେତ୍ର ଓ ମହାବିନାୟକ ଗଣପତି କ୍ଷେତ୍ର ରୂପେ ପ୍ରସିଦ୍ଧି ଅର୍ଜନ କରିଥିଲା । ପଞ୍ଚଦେବତାଙ୍କ ଉପାସନା

ରାଜଧର୍ମ ରୂପେ ସ୍ୱୀକୃତି ଲାଭ କରି ଥିବାରୁ ଓଡିଶାର ପ୍ରତ୍ୟେକ ପୂଜାପାର୍ବଣରେ ପଞ୍ଚଦେବତାଙ୍କ ଉପାସନା ଉପରେ ଗୁରୁତ୍ୱ ଆରୋପ କରାଗଲା ।

ପଞ୍ଚଦେବତାଙ୍କ ଉପାସନାରୁ ହିଁ ସତ୍ୟନାରାୟଣ ପୂଜାର ଜନ୍ମ । ସ୍କନ୍ଦ ପୁରାଣର ରେବା ଖଣ୍ଡରେ ନାରାୟଣଙ୍କୁ ସର୍ବଶକ୍ତିମାନ ଦେବତା ରୂପେ ଗ୍ରହଣ କରାଯାଇଛି । ପଞ୍ଚଦେବତାଙ୍କ ପ୍ରତୀକ ପାଞ୍ଚ ଜଣ ଥିଲେ ପଞ୍ଚଦେବତାଙ୍କର ପ୍ରତୀକ ଏବଂ ନାରାୟଣଙ୍କ ମହିମାଗାନକାରୀ । ଧୀରେ ଧୀରେ ନାରାୟଣଙ୍କ ପ୍ରତି ଲୋକମାନଙ୍କର ଧାରଣା ଦୃଢ ହେଲା । କବିମାନେ ନାରାୟଣଙ୍କୁ ସତ୍ୟନାରାୟଣ ରୂପେ ପରିକଳ୍ପନା କଲେ । ଗାୟକ ମଣ୍ଡଳୀରେ ବ୍ୟବହୃତ ଚାମରକୁ ବିଷ୍ଣୁଙ୍କ ସୁଦର୍ଶନ, ମୃଦଙ୍ଗକୁ ଶିବଙ୍କର ଡମ୍ବରୁ, ନୂପୁରକୁ ଦେବୀଙ୍କ ପାଦ ଭୂଷଣ, ରାମ ତାଳିକୁ ସୂର୍ଯ୍ୟଙ୍କ ରଥର ବଲଗା ଏବଂ କଂସାଳକୁ ଗଣେଶଙ୍କ ଅଙ୍କୁଶ ରୂପେ ଲୋକମାନେ ଗ୍ରହଣ କଲେ । ସଭାସ୍ଥଳରେ ସତ୍ୟନାରାୟଣଙ୍କର ଆବାହନ କରାଗଲା । ସେଥିରୁ ଜନ୍ମ ନେଲା ପାଲା । ଏହି ପାଲା ଓଡିଶାରେ କ୍ରମଶଃ ଲୋକପ୍ରିୟ ହେବାକୁ ଲାଗିଲା । ଗଣେଶାଦି ପଞ୍ଚଦେବତା ହେଲେ ପଞ୍ଚପୀର ଏବଂ ସତ୍ୟନାରାୟଣ ସତ୍ୟପୀର । ଷୋଡଶ ଶତାବ୍ଦୀରେ ଉତ୍ତର ଓଡିଶାରେ କବିକର୍ଣ୍ଣ ସତ୍ୟପୀରଙ୍କ ମହିମା ବ୍ୟାଖ୍ୟାନ କରି ପାଲା ପୁସ୍ତକମାନ ଲେଖିଲେ । ପ୍ରଥମ ଅବସ୍ଥାରେ ପାଲା ବଙ୍ଗଳାମିଶା ଓଡିଆରେ ଲେଖାଯାଉଥିଲା ଏବଂ କବିକର୍ଣ୍ଣ ଏହି ଧାରାରେ ଷୋହଳରୁ ଊର୍ଦ୍ଧ୍ୱ ପାଲା ପୁସ୍ତକ ରଚନା କରିଥିଲେ । ପରବର୍ତ୍ତୀ ସମୟରେ ଭୃଗୁରାମ, ହୁଡୁରାମ, ବିଶ୍ୱନାଥ, ଜଗନ୍ନାଥ, ଶଙ୍କର, କିଙ୍କର ଦାସ ଆଦି କବିମାନେ ଓଡିଆରେ ପାଲା ରଚନା କଲେ । ପାଲା ବଙ୍ଗଳା ଓ ଆସାମରେ ପ୍ରଚଳିତ ଥିଲେ ହେଁ ଓଡିଶାର ପାଲାଠାରୁ ଏହା ସଂପୂର୍ଣ୍ଣ ଭିନ୍ନ । ବଙ୍ଗଳାର କବିର ଗାନକୁ ଓଡିଶାର ପାଲା ସହ ତୁଳନା କଲେ ଭ୍ରମ ହେବ । କବିକର୍ଣ୍ଣ ହିନ୍ଦୁମାନଙ୍କର ସତ୍ୟସହ ମୁସଲମାନଙ୍କର ପୀରଙ୍କୁ ମିଶାଇ ସତ୍ୟପୀର ପାଲା ଲେଖିଛନ୍ତି । ତାଙ୍କ ଭାଷାରେ –

ଅଦଭୁତ ପୀରେର ମାୟା କି ବଲିତେ ପାରି
ମୁସଲମାନ ବଲେ ପୀର ହିନ୍ଦୁ ବଲେ ହରି

ଓଡିଶାର ଆରାଧ୍ୟ ଦେବତା ଶ୍ରୀଜଗନ୍ନାଥ ହେଉଛନ୍ତି ଷୋଳକଳାରେ ପରିପୂର୍ଣ୍ଣ । ତାଙ୍କର ମହିମା ଅପାର । ସେ କୃଷ୍ଣ, ବିଷ୍ଣୁ ଓ ନାରାୟଣ । ଦାରୁବ୍ରହ୍ମ ଚକାଡୋଳା ସର୍ବକ୍ଷେତ୍ରର ଦେବତା ।

ସତ୍ୟନାରାୟଣ ପାଲା ସତ୍ୟନାରାୟଣ ପୂଜାରୁ ସମ୍ପ୍ରତି ଦେଶରେ ପାଲା, ବାଦପାଲାର ଜନ୍ମ । ବିଗତ ଶତାବ୍ଦୀରେ ପାଲା ଏକ ଲୋକପ୍ରିୟ କଳା ରୂପେ ପ୍ରସିଦ୍ଧ ଅର୍ଜନ କରିଥିଲା କହିଲେ ଆଦୌ ଭୁଲ୍ ହେବ ନାହିଁ । ଚଳିତ ଶତାବ୍ଦୀର ଟେଲିଭିଜନ୍‌ର ବହୁଳ ବ୍ୟବହାର ଏବଂ କେତେକ ସ୍ଥଳରେ ଅପବ୍ୟବହାର ପାଲା ସଂସ୍କୃତିରେ ସାମାନ୍ୟ ପ୍ରତିବନ୍ଧକ ସୃଷ୍ଟି କରିଛି ।

ସମୟକ୍ରମେ ଜନ୍ମପାଲା ଏବଂ ଷୋଳପାଲା ବିବର୍ତ୍ତିତ ହୋଇ କାବ୍ୟ ସାହିତ୍ୟ ପରିବେଷଣର ପ୍ରକୃଷ୍ଟ ମାଧ୍ୟମ ପାଲଟିଛି । ପାଲାକୁ କେତେକ ଲୋକ ନାଟକର ଅନ୍ତର୍ଭୁକ୍ତ କରନ୍ତି କିଂତୁ ପରିବେଷଣ ଶୈଳୀ, ନାଚ, ବାଦ୍ୟ ଓ ଆଲୋଚ୍ୟ ବିଷୟକୁ ଅନୁଧ୍ୟାନ କଲେ ଏହାକୁ ଲୋକନାଟକ ଏବଂ ଏଥିରେ ପରିବେଷିତ ସାହିତ୍ୟ ଲୋକ ସାହିତ୍ୟ ଭାବରେ ଗ୍ରହଣ କରାଯାଇ ପାରିବ ନାହିଁ । ଏକଦା ପାଲା ଥିଲା ଦରବାରୀ ସାହିତ୍ୟ ଏବଂ ମନୋରଂଜନର ମାଧ୍ୟମ । ବିଦଗ୍ଧ ସାହିତ୍ୟ ସହ ଲୋକ ସାହିତ୍ୟକୁ ମିଶାଇ ପାଲାକାରମାନେ ଷ୍ଟେଜ୍ ଉପରକୁ ଯାଇ ସଙ୍ଗୀତ ଗାନ କଲେ । ଦରବାରରୁ ଏହା ଯେତେବେଳେ ଗ୍ରାମାଞ୍ଚଳ ଏବଂ ଜନପଦକୁ ଓହ୍ଲାଇ ଆସିଲା ଏହାର ଅଙ୍ଗ ଓ ଆତ୍ମାରେ ପରିବର୍ତ୍ତନ ଲକ୍ଷ୍ୟ କରାଗଲା । ଏହା ବିଦଗ୍ଧ ମଣ୍ଡଳୀଠାରୁ ସାଧାରଣ ଜନତାକୁ କିପରି ଛୁଇଁ ପାରିବ ସେଥିପ୍ରତି ସଚେତନ ହେଲେ । ପାଲା ହେଲା ଏକ ସାର୍ବଜନୀନ କଳା । ଏହା କାଳକ୍ରମେ ସଂସ୍କୃତିର ପର୍ଯ୍ୟାୟଭୁକ୍ତ ହେଲା । ଏହା କଳା, ସାହିତ୍ୟ, ସଭ୍ୟତାର ବାର୍ତ୍ତାବହ ପରି କାର୍ଯ୍ୟ କଲା ।

ପାଲାରେ ମୁଖ୍ୟତଃ ପୌରାଣିକ ବିଷୟ ବସ୍ତୁ ଆଲୋଚିତ ହୁଏ । ଏହାର ବିଷୟକୁ ଅଧିକ ପଲ୍ଲବିତ ଓ ରସସିକ୍ତ କରିବା ପାଇଁ ଗାୟକ ସଂସ୍କୃତ ସମେତ ବିଭିନ୍ନ ସାହିତ୍ୟ ଏବଂ ମୁଖ୍ୟତଃ ରୀତିସାହିତ୍ୟର ନିକଟବର୍ତ୍ତୀ ହୁଅନ୍ତି । ଯଥା ସମ୍ଭବ ଅଳଙ୍କାର ପ୍ରୟୋଗ କରନ୍ତି । ସାହିତ୍ୟରେ ରସର ଏକ ବିଶିଷ୍ଟ ଭୂମିକା ରହିଛି । ସେଥିପାଇଁ ଅଗ୍ନିପୁରାଣରେ ଉଲ୍ଲେଖ ଅଛି –

'ରସୋବୈସଃ' ରସଂ ହ୍ୟେବାୟଂ ଲବ୍ଧାନନ୍ଦୀ ଭବତି ।

ଭୂମା ପୁରୁଷ ରସମୟ ହୋଇଥିବାରୁ ଏହାଙ୍କୁ ବ୍ରହ୍ମ ବୋଲି ଆଖ୍ୟାୟିତ କରାଯାଏ । ଏହା ସର୍ବବିଧି ଆନନ୍ଦର ମୂଳଉତ୍ସ । ଖ୍ରୀ: ପ୍ରଥମ ଶତକରେ ଭରତଙ୍କ ନାଟ୍ୟ ଶାସ୍ତ୍ରରେ ରସ ପ୍ରାଧାନ୍ୟ ଲାଭ କରି ସାହିତ୍ୟର ବିଭିନ୍ନ ବିଭାଗକୁ ସଞ୍ଚରି ଯାଇଥିଲା । ଗାୟକମାନେ ପାଲା ପରିବେଷଣ ସମୟରେ କାବ୍ୟାଦର୍ଶରେ ଉଲ୍ଲେଖ ଥିବା ନଅ, ପ୍ରକାରାନ୍ତେ ଦଶ ପ୍ରକାର ରସପ୍ରତି ଅଧିକ ଧ୍ୟାନ ଦିଅନ୍ତି । ରସ ସହିତ ଅଳଙ୍କାର, ରୀତି, ଗୁଣ, ଧ୍ୱନି ଆଦି ପ୍ରାଚ୍ୟ କାବ୍ୟାଦର୍ଶର ବିଭିନ୍ନ ପର୍ଯ୍ୟାୟକୁ ଗାୟକ ଆବୃତ୍ତି କରନ୍ତି । ପାଲା ଆରମ୍ଭରେ ଗାୟକ ପିଣ୍ଡି ଉପରକୁ ଆସିବା ପରେ ପ୍ରଥମେ

ସତ୍ୟନାରାୟଣଙ୍କୁ ପ୍ରଣାମ ଜଣାନ୍ତି । ପରେ ମଙ୍ଗଳାଚରଣ ପାଠ କରାଯାଏ । ତାହା ହୋଇପାରେ ଆଶୀର୍ବାଦାତ୍ମକ ବସ୍ତୁ ନିର୍ଦ୍ଦେଶାତ୍ମକ ଅଥବା ନମସ୍କାରାତ୍ମକ । ଲଳିତମଧୁର ସ୍ୱରରେ ସେ ବିଷୟବସ୍ତୁ ଆବୃତ୍ତି କରନ୍ତି ଏବଂ ପିଣ୍ଡି ଉପରେ ଉପସ୍ଥିତ ବାୟକ,ଶ୍ରୀପାଳିଆ, ପାଳିଆ ପ୍ରଭୃତି ସଙ୍ଗେସଙ୍ଗେ ପାଳି ଧରନ୍ତି । ମଝିରେ ମଝିରେ ପାଳିଆମାନେ ହାସ୍ୟରସର ଅବତାରଣା କରି ଶ୍ରୋତାମାନଙ୍କ ମନକୁ ଆହ୍ଲାଦିତ କରନ୍ତି ।

ପାଲାକାର ସମାଜର ଗୁରୁ ବା ଶିକ୍ଷକ । ମାର୍ଗଦର୍ଶକ ଭାବେ ସେ ଏକ ବିଶିଷ୍ଟ ଭୂମିକାର ଅଧିକାରୀ । ସମାଜକୁ ନୀତିନିଷ୍ଠ ମାର୍ଗରେ ପରିଚାଳିତ କରିବା ଧର୍ମ ଦେବତାଙ୍କ ପ୍ରତି ଅନୁରାଗ ଓ ଭକ୍ତି ପ୍ରଦର୍ଶନ କରିବା ଆଦି ପ୍ରତି ସେମାନେ ଯଥେଷ୍ଟ ଧ୍ୟାନ ଦିଅନ୍ତି । ସମାଜର ତ୍ରୁଟି ବିଚ୍ୟୁତିକୁ ପଦାବୃତ୍ତି ମାଧ୍ୟମରେ ଗାୟକ ଅଙ୍ଗୁଳି ନିର୍ଦ୍ଦେଶ କରନ୍ତି । ନୀତିଶିକ୍ଷା ଦେବା ପାଲାର ମୁଖ୍ୟ ଉଦ୍ଦେଶ୍ୟ ହୋଇଥିବାରୁ ଗାୟକ ବିଶେଷତଃ ରାମାୟଣ ଓ ମହାଭାରତର ପ୍ରଧାନ ବିଷୟ ବସ୍ତୁକୁ ଜନତାଙ୍କ ସମ୍ମୁଖରେ ପରିବେଷଣ କରିବାକୁ ଉଚିତ୍ ମନେ କରନ୍ତି । ଜୀବନ ନଶ୍ୱର ଏଠି କେହି କାହାର ନୁହଁନ୍ତି । ସମସ୍ତେ ସଂସାରର ଜୀବନ ଯାତ୍ରା ପଥରେ ଜଣେ ଜଣେ ପଥିକ । ପଥ ସରିଗଲେ ଯାତ୍ରା ଶେଷ ହୁଏ । ତେଣୁ ଏଠାରେ ସବୁ ମିଛ । ମାୟା ପରିପୂର୍ଣ୍ଣ ସଂସାରରେ ଭଗବାନ ହିଁ ଏକମାତ୍ର ସତ୍ୟ । ତେଣୁ ପାଲାକାର ମନବୋଧ ଚଉତିଶା ଏବଂ ମୋହ ମୁଦ୍‌ଗର ଆଦି ପଦ ଓ ଶ୍ଳୋକ ବୋଲି ଜନତାଙ୍କୁ ବୁଝାଇ ସଚେତନ କରି ଦିଅନ୍ତି ।

ଗାୟକମାନେ ସରଳ ଉଦାର ଏବଂ ସମୟୋପଯୋଗୀ । ସେମାନଙ୍କ ସାଧନା ଅସୀମ । ଯେଉଁ ଗାୟକ ଯେତେ ଅଧିକ ସାଧନା କରିଥାନ୍ତି ସେ ଗାୟକ ସେତିକି ଲୋକପ୍ରିୟ । କାବ୍ୟ, ଶାସ୍ତ୍ର, ପୁରାଣ, ବେଦ, ଉପନିଷଦ ଆଦିରେ ସେମାନଙ୍କ ଗଭୀର ପ୍ରବେଶ ଥାଏ । ଗାୟକମାନେ ପ୍ରତ୍ୟୁତ୍ପନ୍ନମତି ହୋଇଥାଆନ୍ତି । ସେମାନେ ମନରୁ ଅନେକ କଥା ପଦ୍ୟାକାରରେ ଯୋଡି ପରିବେଶକୁ ରସମୟ କରିଦେଇ ଥାଆନ୍ତି । ଏବେ ଯେଉଁ ବାଦପାଲାର ଆୟୋଜନ କରାଯାଉଛି ତାହା ସମାଜରେ ଅଧିକ ଆଦୃତ । ତେଣୁ ପାଲା ସଂସ୍କୃତିର ଅବଦାନ ଓଡିଶାର ଜନସାଧାରଣଙ୍କୁ ଯଥେଷ୍ଟ ପ୍ରଭାବିତ କରିଛି କହିଲେ କିଛି ଭୁଲ୍ ହେବନାହିଁ ।

ଗ୍ରାମ–ବମ୍ଭିଲୋ, ପୋ.ଅ– ସାଇବୀର ବାସନ୍ଦରା
ଭାୟା– ବିରିଡି ରୋଡ, ଜିଲ୍ଲା– ଜଗତସିଂହପୁର
ପିନ୍– ୭୫୪୧୧୧

# ଜାନୁଆରୀ ଛବିଶି

**ବିଜୟଲକ୍ଷ୍ମୀ ରାଉତରାୟ**

ସାଧାରଣତନ୍ତ୍ର ଦିବସେ
ତ୍ରିରଙ୍ଗା ପତାକା କହେ
ସାର୍ବଭୌମତ୍ୱର ପରିଚୟ ଦେଇ
ଦକ୍ଷିଣା ପବନ ବହେ ।
ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ
ସର୍ବେ ହୋଇ ଏକତ୍ରିତ
ଜାତୀୟ ପତାକା ତଳେ
ନେବା ଆଜି ଶପଥ ।
ଦୂରେ ଫିଙ୍ଗି ଦେଇ
ଭ୍ରଷ୍ଟାଚାର ମିଥ୍ୟାଚାରର
କଳଙ୍କିତ ଅଧ୍ୟାୟକୁ
ସୁରକ୍ଷା ଯୋଗାଇ ଦେବା
ସାଧାରଣତନ୍ତ୍ରକୁ ।
ପ୍ରଣାମ କରିବା ଆସ
ଭାରତମାତାକୁ
ସଲାମ କରିବା ଆମେ
ବୀର ଯବାନଙ୍କୁ ।

ସୂଚନା ଓ ଲୋକ ସମ୍ପର୍କ ବିଭାଗ
ଭୁବନେଶ୍ୱର

# ମୁକ୍ତିର ଦଶ ଉପାୟ

ଡକ୍ଟର ଶ୍ରୀହରି ପଣ୍ଡା

ମନୁଷ୍ୟ ଜୀବନର ଉଦ୍ଦେଶ୍ୟ ହେଲା ଭଗବାନଙ୍କୁ ପାଇବା । ଏଥିପାଇଁ ଆମ ଶାସ୍ତ୍ର ଓ ସନ୍ଥ ମହାତ୍ମାମାନେ ଅନେକ ଉପାୟ ବତାଇ ଦେଇଯାଇଛନ୍ତି । ନିଜ ନିଜ ଅଧିକାର ଓ ରୁଚି ଅନୁସାରେ ଯେକୌଣସି ଗୋଟିଏ ଉପାୟକୁ ନିଷ୍କାମ ଭାବରେ ଭଗବତ୍ ପ୍ରୀତ୍ୟର୍ଥେ ଲଗାଇଲେ ଜୀବ ଭଗବାନଙ୍କୁ ପାଇ ତାର ଜନ୍ମ ପାଇବା ଲକ୍ଷ୍ୟକୁ ସାର୍ଥକ କରି ପାରିବ । ଭଗବାନ ଅନେକ ଜନ୍ମପରେ ମନୁଷ୍ୟ ଜନ୍ମ ଦେଇଥାନ୍ତି ।ଏହି ଜନ୍ମରେ ମନୁଷ୍ୟ ଭଗବାନଙ୍କୁ ଆରାଧନା ଓ ଜପତପ ମାଧ୍ୟମରେ ଭଗବତ୍‌କୃପା ପାଇବା ନିମନ୍ତେ ପ୍ରଯତ୍ନ କରିବା ଉଚିତ । ଭଗବାନଙ୍କୁ ପାଇବାର କେତୋଟି ଉପାୟ ଉକ୍ତ ଆଲୋଚନାରେ ସ୍ଥାନିତ ହେଲା ।

ଭଗବାନଙ୍କୁ(ଧର୍ମ) ପାଇବାର ଦଶଟି ଉପାୟ ସଂହିତା ପ୍ରଣେତା ମନୁ ବତାଇ ଯାଇଛନ୍ତି । ଏହି ଦଶଟି ଉପାୟ ଯିଏ ନିଷ୍କାମ ଭାବରେ ଆଚରଣ କରିବ ସେ ମାୟାବନ୍ଧନରୁ ମୁକ୍ତ ହୋଇ ଭଗବାନଙ୍କୁ ପାଇପାରେ । ସେହି ଦଶ ଲକ୍ଷଣ ଗୁଡ଼ିକ ହେଲା–

ଧୃତି କ୍ଷମା ଦମୋଽସ୍ତେୟଂ ଶୌଚମିନ୍ଦ୍ରିୟନିଗ୍ରହଃ ।
ଧୀର୍ବିଦ୍ୟା ସତ୍ୟମକ୍ରୋଧୋ ଦଶକଂ ଧର୍ମ ଲକ୍ଷଣମ୍ ॥

ଅର୍ଥାତ(୧)ଧୃତି–ଯେକୌଣସି ପ୍ରକାର ସଙ୍କଟ ପଡ଼ିଲେ ବା ଇପ୍ସିତ ବସ୍ତୁ ନପାଇଲେ ମଧ୍ୟ ଧୈର୍ଯ୍ୟ ଛାଡ଼ିବ ନାହିଁ । ଯେ ଧୈର୍ଯ୍ୟ ଧାରଣ କରେ,ତାହାର ଧର୍ମ ରକ୍ଷା ହୁଏ ଏବଂ ସେ ଐହିକ ଓପରଲୌକିକ ସଫଳତା ପାଇପାରେ ।(୨)କ୍ଷମା–ନିଜର ଅନିଷ୍ଟ କରୁଥିବା ଲୋକକୁ ଦଣ୍ଡ ଦେବା ବା ଦିଆଇବାର ପୂର୍ଣ୍ଣଶକ୍ତି ଥାଇବି ତା'ର ଅପରାଧକୁ ସହିଯିବା ଏବଂ ସେ କୌଣସି ପ୍ରକାର ଦଣ୍ଡପାଉ ବୋଲି ଆଶା ନ ରଖିବାକୁ କ୍ଷମା କୁହାଯାଏ ।(୩)ଦମ–ସବୁ ପ୍ରକାର ଇନ୍ଦ୍ରିୟ ସଂଯମ ଅର୍ଥାତ୍ ମନକୁ ସଂଯମ କରି ଭଗବାନଙ୍କୁ ପାଇବାର ଚେଷ୍ଟା । (୪) ଅସ୍ତେୟ–ମନ, ବାଣୀ ଓ ଶରୀର ଦ୍ୱାରା କୌଣସି ପ୍ରକାର ଚୋରି ନ କରିବା । (୫) ଶୌଚ–ସତ୍ୟତା ପୂର୍ବକ ଶୁଦ୍ଧ ବେପାର ଦ୍ୱାରା ଦ୍ରବ୍ୟକୁ, ତହିଁରେ ପ୍ରାପ୍ତ ଅନ୍ନ ଦ୍ୱାରା ଆହାରକୁ, ଯଥାଯୋଗ୍ୟ କଥାବାର୍ତ୍ତା ଦ୍ୱାରା ଆଚରଣକୁ ଏବଂ ପାଣି, ମାଟି ଆଦିଦ୍ୱାରା କରା ଯାଉଥିବା ଶୁଦ୍ଧି ହେଉଛି ବାହ୍ୟ ଶୁଦ୍ଧି ଏବଂ ରାଗ–ଦ୍ୱେଷ, ଦମ୍ଭ–କପଟ ତଥା ବୈର–ଅଭିମାନ ଆଦି ବିକାରଗୁଡ଼ିକ ନାଶ ପାଇ ଅନ୍ତଃକରଣ ସ୍ୱଚ୍ଛ ହୋଇଯିବାକୁ ଆଭ୍ୟନ୍ତର ଶୁଦ୍ଧି କୁହାଯାଏ । (୬) ଇନ୍ଦ୍ରିୟ ନିଗ୍ରହ–ଇନ୍ଦ୍ରିୟମାନଙ୍କୁ ସେମାନଙ୍କ ବିଷୟରେ ଅର୍ଥାତ୍ ରୂପ, ରସ, ଗନ୍ଧ, ଶବ୍ଦ, ସ୍ପର୍ଶ ଆଦିରେ ଇଚ୍ଛାପୂର୍ବକ ଯିବାକୁ ନଦେଇ ଅନିଷ୍ଟକାରୀ ବିଷୟମାନଙ୍କରୁ ହଟାଇ ଆଣି କଲ୍ୟାଣକାରୀ ବିଷୟଗୁଡ଼ିକରେ ଲଗାଇ ଦେବା । (୭) ଧୀ–ଯାହା ସତ୍‌ସଙ୍ଗ, ସତ୍‌ଶାସ୍ତ୍ର ଅଧ୍ୟୟନ, ଭଗବତ୍ ଭଜନ ଓ ଆତ୍ମବିଚାରରୁ ଉତ୍ପନ୍ନ ହୋଇଥାଏ ତଥା ଯାହାଦ୍ୱାରା ମନ ପରମାତ୍ମାଙ୍କଠାରେ ଲାଗିଯାଏ ଏବଂ ଯଥାର୍ଥ ଜ୍ଞାନ ଉତ୍ପନ୍ନ ହୁଏ । (୮) ବିଦ୍ୟା–ଯାହା ମନୁଷ୍ୟକୁ ଅବିଦ୍ୟାରୁ ମୁକ୍ତକରି ପରମାତ୍ମାଙ୍କ ପରମପଦ ଲାଭ କରାଏ । (୯) ସତ୍ୟ–ଯାହା ଯଥାର୍ଥ ହୋଇଥିବ, ପ୍ରିୟ ହୋଇଥିବ, କପଟ ରହିତ ହୋଇଥିବ ଏବଂ ଯାହା କାହାର ଅମଙ୍ଗଳ କରୁ ନଥିବ, ତାହା ହିଁ ସତ୍ୟ ଅଟେ । (୧୦) ଅକ୍ରୋଧ–ଅକ୍ରୋଧ ଓ କ୍ଷମା ଭିତରେ ସାମାନ୍ୟ ଫରକ ହେଉଛି ଅକ୍ରୋଧରେ କୌଣସି କ୍ରିୟା ହୁଏ ନାହିଁ ଯାହା କିଛି ହୁଏ ତାହା ମନୁଷ୍ୟ ସହିଯାଏ ଏବଂ ତା' ମନ ଭିତରେ ବିକାର ସୃଷ୍ଟି ହୁଏ ନାହିଁ । ମାତ୍ର କ୍ଷମାରେ ଅପରାଧର କ୍ଷମା ମିଳି ଯାଇଥାଏ । ଏହି ଦଶ ଉପାୟକୁ ଅବଲମ୍ବନ କରି ପ୍ରାଣୀ ଭବସାଗରରୁ ଉଦ୍ଧାର ପାଇପାରିବ ।

ଯଦି ଉପରୋକ୍ତ ଦଶ ଉପାୟ କରିବାକୁ ସାଧକ ଅସମର୍ଥ ତାହାହେଲେ ନିମ୍ନୋକ୍ତ ନଅଟି ଉପାୟ ବିଷୟରେ ଚର୍ଚ୍ଚା କରିବା । ସେ ଗୁଡ଼ିକ ହେଲା–

ଶ୍ରବଣଂ କୀର୍ତ୍ତନଂ ବିଷ୍ଣୋଃ ସ୍ମରଣଂ ପାଦ ସେବନମ୍ ।
ଅର୍ଚ୍ଚନଂ ବନ୍ଦନଂ ଦାସ୍ୟଂ ସଖ୍ୟମାତ୍ମନିବେଦନମ୍ ॥

ଅର୍ଥାତ୍–(୧)ଶ୍ରବଣଂ–ଭଗବାନଙ୍କ ଚରିତ୍ର, ଲୀଳା, ମହିମା, ଗୁଣ, ନାମ ତଥା ତାଙ୍କ ପ୍ରେମ ଏବଂ ପ୍ରଭାବର କଥାମାନ ଶ୍ରଦ୍ଧା ପୂର୍ବକ ସର୍ବଦା ଶୁଣିବା ଏବଂ ସେହି ଅନୁସାରେ ଆଚରଣ କରିବାକୁ ଚେଷ୍ଟା କରିବା ହିଁ ଶ୍ରବଣ ଭକ୍ତି । (୨) କୀର୍ତ୍ତନଂ–ଭଗବାନଙ୍କ ଲୀଳା, କୀର୍ତ୍ତି, ମହିମା, ଶକ୍ତି, ଚରିତ, ଗୁଣ ଓ ନାମ ଆଦି ପ୍ରେମପୂର୍ବକ କୀର୍ତ୍ତନ କରିବା ହିଁ କୀର୍ତ୍ତନ ଭକ୍ତି । (୩) ସ୍ମରଣଂ–ସଦା ଅନନ୍ୟ ଭାବରେ ଭଗବାନଙ୍କ ଗୁଣ ଓ ପ୍ରଭାବ ସହିତ ତାଙ୍କ ସ୍ୱରୂପ ଚିନ୍ତନ କରିବା ଏବଂ ବାରମ୍ବାର ସେଥିରେ ମୁଗ୍ଧ ହେବା ସ୍ମରଣ ଭକ୍ତି ଅଟେ । (୪) ପାଦ ସେବନମ୍–ଭକ୍ତ ଭଗବାନଙ୍କ ଯେଉଁ ରୂପରେ ଉପାସନା କରୁଥିବ ତାହାର ଚରଣ ସେବନ ହେଉଛି ପାଦ ସେବନ ଭକ୍ତି । (୫) ପୂଜନ–ନିଜର ରୁଚି ଅନୁସାରେ ଭଗବାନଙ୍କ ମୂର୍ତ୍ତିବିଶେଷକୁ ବା ମାନସିକ ସ୍ୱରୂପକୁ ନିତ୍ୟ ଭକ୍ତି ପୂର୍ବକ ପୂଜା କରିବା ହେଉଛି ପୂଜନ ଭକ୍ତି । (୬) ବନ୍ଦନ–ଭଗବାନଙ୍କ ମୂର୍ତ୍ତିକୁ ବା ସାରା ବିଶ୍ୱକୁ ଭଗବାନଙ୍କ ମୂର୍ତ୍ତି ବୋଲି ବୁଝି ସମସ୍ତ ପ୍ରାଣୀଙ୍କୁ ନିତ୍ୟ ପ୍ରଣାମ କରିବା ବନ୍ଦନ ଭକ୍ତିର ଅନ୍ତର୍ଗତ ।(୭) ଦାସ୍ୟ–ପରମାତ୍ମାଙ୍କୁ ହିଁ ନିଜର ଏକମାତ୍ର ସ୍ୱାମୀ ଓ ନିଜକୁ ତାଙ୍କର ଦାସ ବୋଲି ବୁଝି କୌଣସି ପ୍ରକାର କାମନା ନରଖି, ଶ୍ରଦ୍ଧାଭକ୍ତିର ସହିତ ନିତ୍ୟ ନୂଆ ଉତ୍ସାହରେ ଭଗବାନଙ୍କ ସେବା କରିବା ହେଉଛି ଦାସ୍ୟ ଭକ୍ତି । (୮) ସଖ୍ୟ–ଭଗବାନଙ୍କୁ ହିଁ ନିଜର ପରମ ହିତକାରୀ ଓ ପରମ ସଖା ମାନି ହୃଦୟ ଖୋଲା କରି ତାଙ୍କୁ ଭଲ ପାଇବା । ଭଗବାନ ନିଜର ମିତ୍ରର ଛୋଟରୁ ଛୋଟ କାର୍ଯ୍ୟକୁ ଆନନ୍ଦର ସହିତ କରନ୍ତି । (୯) ଆତ୍ମନିବେଦନମ୍ ବା ସମର୍ପଣ–ଅହଂକାର ରହିତ ହୋଇ ନିଜର ସର୍ବସ୍ୱ ଭଗବାନଙ୍କୁ ଅର୍ପଣ କରି ଦେବା ହିଁ ହେଉଛି ସମର୍ପଣ ଭକ୍ତି । ଯଦି ଏହି ନଅ ପ୍ରକାର ଭକ୍ତି ଆଚରଣ କରିବା ସମ୍ଭବ ନହୁଏ ତାହାହେଲେ ନିମ୍ନୋକ୍ତ ଆଠ ପ୍ରକାର ଭକ୍ତିର ମାର୍ଗକୁ ଆପଣେଇ ନେବା ଉଚିତ ।

ମହର୍ଷି ପତଞ୍ଜଳି ଭଗବଦ୍ ପ୍ରାପ୍ତିର ଅଷ୍ଟାଙ୍ଗ ଯୋଗ ସାଧନ ପ୍ରଣାଳୀ ଦେଇ ଯାଇଛନ୍ତି । ଯେଉଁ ଆଠ ପ୍ରକାର ଯୋଗସାଧନ କରି ମନୁଷ୍ୟର ଭଗବଦ୍ ପ୍ରାପ୍ତି ହୋଇପାରିବ, ଆଉ ସେଗୁଡ଼ିକ ହେଲା–

ଯମନିୟମାସନ ପ୍ରାଣାୟାମ ପ୍ରତ୍ୟାହାର ଧାରଣାଧ୍ୟାନ
ସମାଧୟୋଽଷ୍ଟାବଙ୍ଗାନି ।

ଅର୍ଥାତ–(୧)ଯମ–ଯମ ପାଞ୍ଚୋଟି–(କ)ଅହିଂସା–ମନ, ବାଣୀ ଓ ଶରୀର ଦ୍ୱାରା କୌଣସି ପ୍ରାଣୀପ୍ରତି ହିଁସା ନକରିବା, ନକରାଇବା ଏବଂ ସମର୍ଥନ ନକରିବା । ଲୋଭ, ମୋହ ବା କ୍ରୋଧରେ କାହାରିକୁ ସାମାନ୍ୟ କଷ୍ଟ ନ ଦେବାକୁ ଅହିଂସା କୁହାଯାଏ । (ଖ)ସତ୍ୟ–ଯେପରି କିଛି ଦେଖିଥିବ, ଶୁଣିଥିବ ଓ ବୁଝିଥିବ, ଅନ୍ୟର ମଙ୍ଗଳ ପ୍ରତି ଦୃଷ୍ଟି ରଖି ସେପରି ଯଥାର୍ଥ କହିବା ହିଁ ସତ୍ୟ । (ଗ) ଅସ୍ତେୟ–ମନ, ବାଣୀ ଓ ଶରୀର ଦ୍ୱାରା କେବେ ଅନ୍ୟର ବସ୍ତୁ ଉପରେ ଅଧିକାର ନକରିବା ହିଁ ଅସ୍ତେୟ । (ଘ) ବ୍ରହ୍ମଚର୍ଯ୍ୟ–ଆଠ ପ୍ରକାର ମୈଥୁନକୁ ସର୍ବଦା ତ୍ୟାଗ କରିବା ହିଁ ବ୍ରହ୍ମଚର୍ଯ୍ୟ ଏବଂ (ଙ) ଅପରିଗ୍ରହ–ଭୋଗ୍ୟ ବସ୍ତୁଗୁଡ଼ିକ ଆଦୌ ସଂଗ୍ରହ ନକରିବା ହିଁ ହେଉଛି ଅପରିଗ୍ରହ । (୨)ନିୟମ–ନିୟମ ମଧ୍ୟ ପାଞ୍ଚ ପ୍ରକାର–(କ)ଶୌଚ–ମାଟି, ପାଣି ଆଦି ଦ୍ୱାରା ଶରୀର ଶୁଦ୍ଧି, ଶୁଦ୍ଧ ବ୍ୟାପାର ଓ ଆଚରଣ ଦ୍ୱାରା ଆହାର–ବ୍ୟବହାର ଶୁଦ୍ଧି ଏବଂ ରାଗ–ଦ୍ୱେଷାଦି ତ୍ୟାଗ ଦ୍ୱାରା ଭିତର ଶୁଦ୍ଧି ହେଉଛି ଶୌଚ । (ଖ)ସନ୍ତୋଷ–ଯାହାକିଛି ମିଳିଗଲେ ସନ୍ତୁଷ୍ଟିକୁ ବୁଝାଏ । (ଗ)ତପ–ଧର୍ମ ପାଳନ ପାଇଁ କଷ୍ଟ ସହିବା । (ଘ)ସ୍ୱାଧ୍ୟାୟ–ବେଦ, ଉପନିଷଦ୍, ଗୀତା ଓ ଋଷି ପ୍ରଣୀତ ଶାସ୍ତ୍ରଗୁଡ଼ିକର ଅଧ୍ୟୟନ,ଗାୟତ୍ରୀ ଆଦି ମନ୍ତ୍ରର ଏବଂ ଭଗବାନଙ୍କ ନାମ ଜପକୁ ସ୍ୱାଧ୍ୟାୟ କୁହାଯାଏ ଏବଂ (ଙ) ଈଶ୍ୱର ପ୍ରଣିଧାନ–ଭଗବାନଙ୍କୁ ସର୍ବସ୍ୱ ଅର୍ପଣ କରିବା ଏବଂ ତାଙ୍କରି ପରାୟଣ ହୋଇଯିବା,ଈଶ୍ୱର ପ୍ରଣିଧାନ ଅଟେ । (୩) ଆସନ–ସ୍ଥିର ଭାବରେ ଅଧିକ ସମୟ ପର୍ଯ୍ୟନ୍ତ ବସିବାର ନାମ ଆସନ । ସିଦ୍ଧାସନ,ପଦ୍ମାସନ,ସୁଖାସନ ଆଦି ଅନେକ ଆସନ ଅଛି । ଆସନ ସିଦ୍ଧିଦ୍ୱାରା ଶୀତ–ଉଷ୍ମ ଆଦି ଦ୍ୱନ୍ଦ୍ୱଗୁଡ଼ିକର ପୀଡ଼ା ହୁଏନାହିଁ । (୪)ପ୍ରାଣାୟମ–ଶ୍ୱାସ–ପ୍ରଶ୍ୱାସର ଗତିକୁ ରୋଧ କରିବାର ନାମ ପ୍ରାଣାୟମ । ପ୍ରାଣାୟାମ ଅଭ୍ୟାସ ଦ୍ୱାରା ପ୍ରକାଶର ଆବରଣ ଅର୍ଥାତ୍ ଜ୍ଞାନକୁ ଢାଙ୍କି ରଖିଥିବା ପର୍ଦା କ୍ଷୟପ୍ରାପ୍ତ ହୁଏ । ମନର ଶକ୍ତି ଧାରଣା ପାଇଁ ଯୋଗ୍ୟ ହୋଇଯାଏ । (୫)ପ୍ରତ୍ୟାହାର–ନିଜନିଜ ବିଷୟମାନଙ୍କ ସହିତ ସମ୍ବନ୍ଧ ନରହିବାରୁ ଇନ୍ଦ୍ରିୟ ଚିତ୍ତାନୁସାରୀ ହୋଇଯିବାର ନାମ ପ୍ରତ୍ୟାହାର ।ଏହା ଦ୍ୱାରା ଇନ୍ଦ୍ରିୟଗୁଡ଼ିକ ଉପରେ ପୂର୍ଣ୍ଣ ବିଜୟ ଲାଭ ହୁଏ । (୬)ଧାରଣା–ଗୋଟିଏ ସ୍ଥାନରେ ଚିତ୍ତକୁ ରୋଧ କରିବାର ନାମ ଧାରଣା । (୭)ଧ୍ୟାନ–ଧ୍ୟେୟ ପଦାର୍ଥର ତୈଳ–ଧାରା ପରି ଚିତ୍ତବୃତ୍ତି ଏକଲୟରେ ସ୍ଥିର ରହିବାର ନାମ ଧ୍ୟାନ ଏବଂ (୮) ସମାଧି–ଧ୍ୟାନର ପରିପୃଷ୍ଟ ହୋଇ ଯିବାପରେ ଯେତେବେଳେ ଧ୍ୟାତା, ଧ୍ୟାନ ଓ ଧ୍ୟେୟ ମିଳି ଏକ ହୋଇଯାଏ,ସେତେବେଳେ ତାହାକୁ ସମାଧି କହନ୍ତି ।

ଯଦି ଉପରୋକ୍ତ ଆଠ ପ୍ରକାର ଆଚରଣ ହୋଇ ନପାରିଲା ତାହାହେଲେ ନିମ୍ନୋକ୍ତ ସାତ ଉପଉୟକୁ ନିଷ୍କାମ ଭାବରେ ଆଚରଣ କଲେ ଭଗବତ୍‌ପ୍ରାପ୍ତି ହୋଇପାରେ ।

ଇସ  ଅସାର ସଂସାରମେଁ ସାତ ବସ୍ତୁ ହୈଁ ସାର ।
ସଂଗ, ଭଜନ, ସେବା, ଦୟା, ଧ୍ୟାନ, ଦୈନ୍ୟ, ଉପକାର ॥

ଅର୍ଥାତ୍– (୧) ସଂଗ–ସଂଗ ଅର୍ଥ ସତ୍‌ସଙ୍ଗ । ଭଗବାନଙ୍କ ମହତ୍ତ୍ୱ ସତ୍‌ସଙ୍ଗରୁ ଜଣାଯାଏ । ସତ୍‌ସଙ୍ଗ ଦ୍ୱାରା ଅଜ୍ଞାନ ରୂପକ ଅନ୍ଧକାର ଦୂର ହୋଇଯାଏ । (୨) ଭଜନ–ସଂସାର ସାଗରକୁ ପାରି ହେବାର କେବଳ ଉପାୟ ହରିଭଜନ । ଭଜନ କଲେ ଅନ୍ୟାନ୍ୟ ସଦ୍‌ଗୁଣ ଆପେ ଆପେ ଆସି ପହଞ୍ଚିଯାଏ । (୩) ସେବା–ସାରା ସଂସାରକୁ ଭଗବାନଙ୍କ ସ୍ୱରୂପ ଭାବି ମନ, ବାଣୀ ଓ ଶରୀର ଦ୍ୱାରା ଅଭିମାନ ଛାଡ଼ି ସମସ୍ତଙ୍କର ନିସ୍ୱାର୍ଥ ସେବା କରିବା ଉଚିତ । ସେବା କରି କାହାରିଠାରୁ କୃତଜ୍ଞତା ଆଶା କରିବା ଉଚିତ ନୁହେଁ ତଥା ସେବା ସ୍ୱୀକାର କରୁଥିବା ଲୋକକୁ କେବେ ଛୋଟ ବୋଲି ବୁଝିବା ଉଚିତ ନୁହେଁ । (୪) ଦୟା–ଦୁଃଖୀ ପ୍ରାଣୀଙ୍କର ଦୁଃଖ ଦେଖି ହୃଦୟ ତରଳି ଯିବା ଏବଂ ତାର ଦୁଃଖ ଦୂର କରିବା ପାଇଁ ମନରେ ଭାବ ଉତ୍ପନ୍ନକୁ ଦୟା କୁହାଯାଏ । ଅଂହିସା ଅକ୍ରିୟ ଓ ଦୟା ସକ୍ରିୟ । ଯାହା ହୃଦୟରେ ଦୟା ନାହିଁ ସେ ପଥର ସହ ସମାନ । ଗରିବ, ଅନାଥ, ଛୋଟା, ରୋଗୀ ଓ ଅସହାୟ ଜୀବମାନଙ୍କର ଉପରେ ଦୟା କରି ଜୀବନକୁ ସଫଳ କରିବା ଉଚିତ । (୫) ଧ୍ୟାନ–ଏହା ହେଉଛି ଈଶ୍ୱରଙ୍କୁ ପାଇବାର ଚାବିକାଠି । ପ୍ରଥମେ ଅଡୁଆ ଲାଗିଲେ ବି ଥରେ ଧ୍ୟାନରେ ମନ ଲାଗିଗଲେ ଅପୂର୍ବ ଶାନ୍ତି ମିଳିଥାଏ । (୬) ଦୈନ୍ୟ–ଅଭିମାନ ମନୁଷ୍ୟକୁ ତଳକୁ ଖସାଇ ଦିଏ, ଯଦି ମନୁଷ୍ୟ ବିନୟୀ ହୁଏ, ପରମାତ୍ମାଙ୍କ ଦାନ ହୋଇଯାଏ, ତେବେ ଦୀନବନ୍ଧୁ ତା' ଉପରେ ଦୟା କରନ୍ତି, ଏଣୁ ତାକୁ ଅଭିମାନ ଛାଡ଼ି ଦୈନ୍ୟ ହେବାକୁ ପଡ଼ିବ । (୭) ଉପକାର–ଭଗବାନ କୃଷ୍ଣ ଦ୍ୱୈପାୟନ ବ୍ୟାସ ଦେବ ଅଷ୍ଟାଦଶ ପୁରାଣରେ ଦୁଇଟି କଥା କହିଛନ୍ତି,ପରୋପକାର ପୁଣ୍ୟର ହେତୁ ଓ ପରପୀଡ଼ନ ପାପର ହେତୁ । ଅତଏବ ଅଭିମାନ,ସ୍ୱାର୍ଥ ଓ କାମନାକୁ ଛାଡ଼ି ନିରନ୍ତର ପରୋପକାରରେ ରତ ରହିବା ଉଚିତ । ଏହିସବୁ ହେଲା ଭଗବତ୍ ପ୍ରାପ୍ତିର ସାତଟି ମାର୍ଗ ।

ଯଦି ଉପରୋକ୍ତ ସାତମାର୍ଗ ଆଚରଣ କରି ନପାରିଲେ ତାହାହେଲେ ନିମ୍ନୋକ୍ତ ଛଅପ୍ରକାର ମାର୍ଗ ଆପଣେଇ ନେଲେ ଭଗବତ୍ କୃପା ମିଳିଥାଏ ।

ସନ୍ଧ୍ୟା, ପୂଜା, ଯଜ୍ଞ, ତପ, ଦୟା, ସୁ–ସାତ୍ତ୍ୱିକ ଦାନ ।
ଇନ ଛଃ କେ  ଆଚରଣସେ ନିଶ୍ଚୟ  ହୋ  କଲ୍ୟାନ ॥

ଅର୍ଥାତ– (୧) ସନ୍ଧ୍ୟା–ଦ୍ୱିଜାତି ମାତ୍ରଙ୍କେ ନିତ୍ୟ ତ୍ରିକାଳ ସନ୍ଧ୍ୟା କରିବା ଉଚିତ । ତ୍ରିକାଳ ହୋଇ ନପାରିଲେ ପ୍ରାତଃକାଳ ଓ ସାୟଂକାଳ  ଦୁଇ ସମୟରେ ସନ୍ଧ୍ୟା କରିବା ଉଚିତ । ସନ୍ଧ୍ୟା ଉପାସନା ଦ୍ୱାରା ସମସ୍ତ ପାପ ଦୂର ହୋଇଯାଏ । ଯଦି ଆମେ ପ୍ରତ୍ୟହ ଦୁଇଥର ସୂର୍ଯ୍ୟ ଦେବଙ୍କୁ ଅଭ୍ୟର୍ଥନା କରିବା ମୃତ୍ୟୁ ପରେ ସୂର୍ଯ୍ୟ ଦେବ ଆମର ମୁକ୍ତି ପାଇଁ ନିଶ୍ଚୟ ଚେଷ୍ଟା କରିବେ । (୨) ପୂଜା–ଭଗବାନଙ୍କ ମୂର୍ତ୍ତିକୁ ବାହ୍ୟ ବା ମାନସିକ ପୂଜା ନିତ୍ୟ କରିବା ଉଚିତ । ନାରୀ ବା ବାଳକମାନେ ଘରେ ଘରେ ମୂର୍ତ୍ତି ବା ଚିତ୍ରପଟ ରଖି ପୂଜା କରିବା ଉଚିତ । ଫଳରେ ତାଙ୍କ ପାଖରେ ଭଗବାନଙ୍କ ପ୍ରତି ଭକ୍ତି ଉତ୍ପନ୍ନ ହେବ । (୩) ଯଜ୍ଞ–ଅନେକ ପ୍ରକାର ଯଜ୍ଞ କରିବାକୁ ଶାସ୍ତ୍ରମାନଙ୍କରେ ନିର୍ଦ୍ଦେଶ ଥିବା ବେଳେ ଜପଯଜ୍ଞର ପ୍ରାଧାନ୍ୟ ଦେଖିବାକୁ ମିଳିଥାଏ । ମନୁଷ୍ୟ ପ୍ରତିଦିନ ପ୍ରାୟ ୨୧,୬୦୦ଥର ଶ୍ୱାସ ନେଇଥାଏ ।ଏଣୁ ଏତିକି ନାମଜପ କରିବା ଉଚିତ । ଜପ ମଧ୍ୟରେ ଉପାଂଶୁଜପ ସର୍ବୋତ୍ତମ । (୪) ତପ– ଗୀତାରେ ଶାରୀରିକ, ମାନସିକ ଓ ବାଚିକ ତପ ଭଳି ତିନି ପ୍ରକାର ତପ ଦେଖିବାକୁ ମିଳେ । ସ୍ୱଧର୍ମ ପାଳନ ପାଇଁ କଷ୍ଟ ସହିବାକୁ ତପ କୁହାଯାଏ । (୫) ଦୟା–ନିଜର ଓ ପର ଭେଦାଭାବ ନ ଦେଖି ଦୁଃଖୀର ଦୁଃଖକୁ ନାଶ କରିବାର ଚେଷ୍ଟାକୁ ଦୟା କୁହାଯାଏ । (୬) ଦାନ–ଦାନ ଦେବା ପ୍ରତ୍ୟେକ ମନୁଷ୍ୟର କର୍ତ୍ତବ୍ୟ ଅଟେ । ମାତ୍ର ସ୍ଥାନ, କାଳ ଓ ପାତ୍ର ଦେଖି ନିଜ ପାଖରେ ଥିବା ଧନ, ବିଦ୍ୟା, ବୁଦ୍ଧି, ଅନ୍ନ, ଜଳ, ବସ୍ତ୍ର, ସତ୍‌ପରାମର୍ଶ ଇତ୍ୟାଦିକୁ ପ୍ରତ୍ୟପକାରର ଆଶା ନରଖି ସାତ୍ତ୍ୱିକ ଦାନ କରିବା ଉଚିତ । କିଛି ନ ଦେବା ଅପେକ୍ଷା ସକାମ ଭାବରେ ବି କିଛି ଦାନ କଲେ ତା'ର ଫଳ ନିଶ୍ଚିତ ମିଳିଥାଏ । ଏହି ସବୁ ଛଅ ପ୍ରକାର ମାର୍ଗ ଅନୁସରଣ କରି ମନୁଷ୍ୟ ଭଗବାନଙ୍କୁ ପାଇପାରେ ।

ଯଦି ଉପରୋକ୍ତ ଛଅ ପ୍ରକାର ସାଧନା ମନୁଷ୍ୟ ଦ୍ୱାରା କରିବା ସମ୍ଭବ ନହୁଏ, ତାହାହେଲେ ତାଙ୍କ ପାଇଁ ନମ୍ନୋକ୍ତ ପାଞ୍ଚ ପ୍ରକାର ସାଧନା ଗ୍ରହଣ କରିବା ଉଚିତ–

ଗାୟତ୍ରୀ, ଗୋବନ୍ଦ, ଗୌ, ଗୀତା ଗଙ୍ଗାସ୍ନାନ ।
ଇନ ପାଞ୍ଚୌଁକୀ କୃପାସେ ଶୀଘ୍ର ମିଲେଁ ଭଗଓାନ ॥

ଅର୍ଥାତ୍ (୧) ଗାୟତ୍ରୀ–ଶାସ୍ତ୍ରରେ ଗାୟତ୍ରୀର ବହୁତ ମହିମା ବର୍ଣ୍ଣନା କରା ଯାଇଛି । ଗାୟତ୍ରୀ ଜପ ଶୁଦ୍ଧ ଓ ମୌନ ହୋଇ ପ୍ରଣବ ଓ ବ୍ୟାହୃତି ସହିତ କରିବା ଉଚିତ । ଯେଉଁ ବ୍ୟକ୍ତି ନଗର ବାହାରେ ଏକମାସ ପର୍ଯ୍ୟନ୍ତ ଏକ ସହସ୍ର ଗାୟତ୍ରୀ ଜପ କରେ ସାପ ଦେହରୁ କାତି ଛାଡ଼ିଯିବା ପରି ତା' ଦେହରୁ ପାପ ଛାଡ଼ି

ଯାଇଥାଏ । ଲଗାତାର ତିନିବର୍ଷ ଗାୟତ୍ରୀ ସାଧନା କରିପାରିଲେ ସେ ବାୟୁପରି ଗତିଶୀଳ ଏବଂ ଆକାଶ ପରି ନିର୍ଲେପ ହୋଇ ପରବ୍ରହ୍ମ ପରମାତ୍ମାଙ୍କୁ ପାଇଯାଏ । ଏଣି ପ୍ରତ୍ୟହ ଗାୟତ୍ରୀ ଜପ କରିବା ଉଚିତ । (୨) ଗୋବିନ୍ଦ–ଯେଉଁମାନେ ଅନନ୍ୟ ଭାବରେ, ନିଷ୍କାମ ଭାବରେ ଭଗବାନଙ୍କୁ ଚିନ୍ତନ କରନ୍ତି ଭଗବାନ ସେମାନଙ୍କର ଦାୟିତ୍ୱ ସ୍ୱୟଂ ବହନ କରନ୍ତି ବୋଲି ଗୀତାରେ କହିଛନ୍ତି । ଅତଏବ ଦୃଢ ନିର୍ଣ୍ଣୟ ଓ ଶ୍ରଦ୍ଧାପ୍ରେମର ସହିତ ଭଗବାନଙ୍କ ଚିନ୍ତନ କରିବା ଉଚିତ । (୩) ଗୋ–ହିନ୍ଦୁ ଶାସ୍ତ୍ର ମାନଙ୍କରେ ଗୋମାତାର ସ୍ଥାନ ବହୁ ଉର୍ଦ୍ଧ୍ୱରେ । ଗୋମାତା ସେବା କଲେ ସମସ୍ତ ଅଭୀଷ୍ଟ ସିଦ୍ଧିହୁଏ । ଗୋମୂତ୍ର, ଗୋମୟ, ଗୋଦୁଗ୍ଧ, ଗୋଦଧି ଓ ଗୋଘୃତ–ଏହି ପଞ୍ଚଗବ୍ୟ ପବିତ୍ର ଓ ପାପ ନାଶକ ।ଏଣୁ ପ୍ରତ୍ୟେକ ମନୁଷ୍ୟ ଗୋମାତାର ରକ୍ଷା ଓ ସେବା କରିବା ଉଚିତ । (୪) ଗୀତା– 'ଗୀତା ମେଁ ହୃଦୟଂ ପାର୍ଥ ।' ଗୀତା ହେଉଛି ଭଗବାନଙ୍କ ହୃଦୟ । ଭଗବାନଙ୍କ ମୁଖ ନିସୃତ ପରମ ପବିତ୍ର ଗୀତା ଅଭ୍ୟାସ ଦ୍ୱାରା ସମସ୍ତ ମନବାଞ୍ଛା ପୂର୍ଣ୍ଣ ହୋଇଥାଏ । (୫)ଗଙ୍ଗାସ୍ନାନ–ଗଙ୍ଗା ହେଉଛନ୍ତି ବ୍ରହ୍ମଦ୍ରବ । ସାକ୍ଷାତ୍ ବ୍ରହ୍ମ ତରଳି ବହି ଯାଇଥିବାରୁ ଏପରି ନାମକରଣ ହୋଇଛି । ଗଙ୍ଗାର ସ୍ନାନ ଓ ପାନ–ଦ୍ୱାରା ପାପନାଶ ଓ ମୁକ୍ତି ମିଳିଥାଏ ବୋଲି ଶାସ୍ତ୍ରରେ ଉଲ୍ଲେଖ ଅଛି । ଗଙ୍ଗା ଜଳରେ ରୋଗନାଶକ ଶକ୍ତି ଅଛି । ମହାନ୍ ସାଧୁମାନେ ଗଙ୍ଗାକୂଳରେ ବାସ କରିଥାଆନ୍ତି । ଏହି ପାଞ୍ଚପ୍ରକାର ମାର୍ଗ ଭଗବତ୍ ପ୍ରାପ୍ତି ପାଇଁ ସାଧନା କରିବା ଉଚିତ ।

ଯଦି ଉପରୋକ୍ତ ପାଞ୍ଚପ୍ରକାର ସାଧନା ଆଚରଣ କରିବା ସମ୍ଭବ ନ ହୁଏ ତାହାହେଲେ ନିମ୍ନୋକ୍ତ ଚାରିପ୍ରକାର ମାର୍ଗକୁ ଆପଣେଇ ନେଲେ ସାଧକକୁ ଭଗବତ୍ ପ୍ରାପ୍ତି ହୋଇପାରେ ।

ସଂଯମ ସେବା ସାଧନା, ସତ୍ ପୁରୁଷୋଁକା ସଂଗ ।
ଯେ ଚାରୋଁ କରତେ ତୁରତ, ମୋହ ନିଶାକୋ ଭଂଗ ॥

ଅର୍ଥାତ୍–(୧) ସଂଯମ–ମନ, ବାଣୀ ଓ ଶରୀରକୁ ଇଚ୍ଛାନୁସାରେ ଚଳିବାକୁ ନ ଦେଇ ଓ ସାଂସାରିକ ବିଷୟ ଭୋଗମାନଙ୍କୁ ରୋଧ କରି କଲ୍ୟାଣ ମାର୍ଗରେ ଲଗାଇ ଦେବାକୁ ସଂଯମ କୁହାଯାଏ । ଯେଉଁମାନେ ମନ, ବାଣୀ ଓ ଶରୀରକୁ ସଂଯମରେ ରଖିଛନ୍ତି ସେମାନଙ୍କୁ ମନୁ ତ୍ରିଦଣ୍ଡୀ କହିଛନ୍ତି । ଯେଉଁ ମନୁଷ୍ୟ ସମସ୍ତ ପ୍ରାଣୀଙ୍କ ପ୍ରତି ମନ, ବାଣୀ ଓ ଶରୀରକୁ ସଂଯତ କରିନିଏ ତଥା ସେ ତିନୋଟିକୁ ରୋଧ କରିବା ପାଇଁ କାମ–କ୍ରୋଧକୁ ସଂଯମ କରେ, ସେ ମୋକ୍ଷ ପାଏ । ଯେ ମନ, ଇନ୍ଦ୍ରିୟ ଓ ଶରୀରକୁ ବଶରେ ରଖି ଏବଂ ରାଗ–ଦ୍ୱେଷର ବଶରେ ନରହି ସଂସାରରେ ବିଚରଣ କରେ, ସେ ଆନନ୍ଦ ପାଏ । ସଂଯମୀ ପୁରୁଷ ହିଁ ନିରୋଗ, ବଳବାନ୍, ଧର୍ମାତ୍ମା, ଦୀର୍ଘାୟୁ ଓ ମୋକ୍ଷ ପାଇଁ ଯୋଗ୍ୟ ହୁଏ । (୨) ସେବା–ଗୁରୁଜନଙ୍କୁ ଓ ପ୍ରାଣୀମାତ୍ରେ ସମସ୍ତଙ୍କୁ ନିଷ୍କାମଭାବରେ ଭଗବତ୍ ବୁଦ୍ଧିରେ ସେବା କରିବା ବ୍ୟକ୍ତି ପଦେପଦେ ଭଗବାନଙ୍କୁ ସେବା କରି ଶେଷରେ ଭଗବାନଙ୍କୁ ପାଇଯାଏ । (୩) ସାଧନା–ଭଗବତ୍ ପ୍ରାପ୍ତି ପାଇଁ ଭଜନ,ଧ୍ୟାନ ଆଦି ଯାହା କିଛି କରାଯାଏ,ସେ ସବୁ ସାଧନା । ନିଜନିଜର ଅଧିକାର,ବିଶ୍ୱାସ ପ୍ରକୃତି ଓ ରୁଚି ଅନୁସାରେ ଭଗବାନଙ୍କୁ ପାଇବା ପାଇଁ ନିୟମିତ ସାଧନା କରିବା ଆବଶ୍ୟକ । (୪) ସତ୍ ପୁରୁଷଙ୍କ ସଙ୍ଗ–ଭଗବାନଙ୍କ ପ୍ରିୟ ଭକ୍ତମାନଙ୍କର ଦର୍ଶନ ଅତ୍ୟନ୍ତ ଦୁର୍ଲଭ । ଭକ୍ତହିଁ ଭଗବାନ ସ୍ୱରୂପ । ତୁଳସୀଦାସଙ୍କ ଚିନ୍ତାରେ ସେମାନେ ରାମଙ୍କଠାରୁ ବଡ଼, ରାମ ତେଁ ଅଧିକ ରାମ କର ଦାସା । ସନ୍ଥମାନଙ୍କର ସଙ୍ଗ ଦ୍ୱାରା ପାପନାଶ ହୁଏ, ଅନ୍ତଃକରଣ ଶୁଦ୍ଧି ହୁଏ, ମନ ପରମାତ୍ମାଙ୍କଠାରେ ଲାଗିଯାଏ ଏବଂ ସଂଶୟ ବିନାଶ ହୋଇ ଭଗବତ୍ ପ୍ରାପ୍ତି ହୁଏ । ଏଣୁ ସତ୍‌ପୁରୁଷମାନଙ୍କର ସଙ୍ଗର ଆଶ୍ରୟ ଅବଶ୍ୟ ନେବା ଉଚିତ । ଏହି ଚାରି ପ୍ରକାର ମୋକ୍ଷର ମାର୍ଗକୁ ଗ୍ରହଣ କରି ମନୁଷ୍ୟ ଭବ ସାଗରରୁ ଉଦ୍ଧାର ପାଇ ପାରିବ ।

ଯଦି ଉପରୋକ୍ତ ଚାରି ପ୍ରକାର ସାଧନା କରିବାକୁ ମନୁଷ୍ୟ ଅସମର୍ଥ ତାହାହେଲେ ନିମ୍ନୋକ୍ତ ତିନି ପ୍ରକାର ସାଧନାକୁ ଗ୍ରହଣ କରି ଭଗବତ୍ କୃପା ପାଇବାକୁ ସମର୍ଥ ହେବ ।

ସତ୍ୟ ବଚନ, ଅଧୀନତା, ପର–ତୀୟ ମାତୁ ସମାନ ।
ଇତ ନେ ପୈ ହରି ନାମିଲେ, ତୋ ତୁଲସୀଦାସ କମାନ ॥

ଅର୍ଥାତ୍ (୧) ସତ୍ୟ ବଚନ–ସତ୍ୟ ଭଗବାନଙ୍କ ସ୍ୱରୂପ, ସତ୍ୟ ଯେଉଁଠି ଭଗବାନ ସେଇଠି । ସତ୍ୟବାଦୀମାନଙ୍କର ପାଟିରୁ ବାହାରି ଯାଉଥିବା କଥା ସତ୍ୟ ହୋଇଯାଏ । ସ୍ୱାର୍ଥ, ଅଭ୍ୟାସ, ହସଖୁସି ଓ ଥଟ୍ଟା ଆଦିରେ ଅଥବା ଭବିଷ୍ୟତ କହିବାରେ ମଧ୍ୟ କୌଣସି ପ୍ରକାର ମିଥ୍ୟା କହିବା ଉଚିତ ନୁହେଁ । (୨) ଅଧୀନତା–ନିଜକୁ ଭଗବାନଙ୍କ ଅଧୀନ କରିଦେବା, ନିଜର ସ୍ୱତନ୍ତ୍ରତା ଛାଡ଼ି ଭଗବାନଙ୍କ ସେବକ ହୋଇଯିବା ଓ ତାଙ୍କରି ଆଜ୍ଞାରେ ଜୀବନ କଟାଇବା ହିଁ ଅଧୀନତା । ସଂସାରରେ ସନ୍ତାନ ପିତାମାତାଙ୍କର, ଶିଷ୍ୟ ଗୁରୁଙ୍କର, ସ୍ତ୍ରୀ ସ୍ୱାମୀଙ୍କର ଏବଂ ସେବକ ମୁନିବଙ୍କର ଅଧୀନରେ ରହି କର୍ତ୍ତବ୍ୟ ପାଳନ କରିବା ମଧ୍ୟ ଭଗବାନଙ୍କର ଅଧୀନ ହେବା । ସ୍ୱାମୀ ବଳପାଇ ସେବକ ଯେଉଁପରି ବଳବାନ ହୋଇଯାଏ ସେହିପରି ଭଗବାନଙ୍କ ଅଧୀନ ହୋଇ ଭଗବାନଙ୍କ ବଳପାଇ, ପ୍ରେମପାଇ ଭଗବାନଙ୍କର ସମସ୍ତ ଗୁଣର ବିକାଶ

ହୋଇଥାଏ । (୩) ପର-ତିୟ ମାତୃ ସମାନ-ନାରୀମାତ୍ରେ ଜଗତ୍‌ଜନନୀଙ୍କ ସ୍ୱରୂପ । ଏହା ଭାବି ନିଜ ସ୍ତ୍ରୀ ବ୍ୟତୀତ ଅନ୍ୟ ସମସ୍ତଙ୍କୁ ପୂଜ୍ୟ ମନେ କରି ପ୍ରଣାମ କରିବା ସଭିଙ୍କ ପ୍ରତି ଭକ୍ତି, ଶ୍ରଦ୍ଧା ରଖିବା ମନୁଷ୍ୟ ପାଇଁ କଲ୍ୟାଣପ୍ରଦ । ଯେଉଁମାନେ ଏହିପରି କରନ୍ତି ସେମାନଙ୍କର ପାପନାଶ ହୋଇ ଭଗବାନଙ୍କୁ ପାଇ ଯାଆନ୍ତି । ଶୁଣାଯାଏ ଯେ ତୁଳସୀଦାସ ଲିଖିତ ଏହି ଦୋହାର ଆଚରଣକୁ ଯେଉଁମାନେ କାର୍ଯ୍ୟରେ ଲଗାନ୍ତି, ସେମାନଙ୍କର କଲ୍ୟାଣ ଦାୟିତ୍ୱ ସେ ବହନ କରନ୍ତି ।

ଯଦି ଉପରୋକ୍ତ ସାଧନା କରିବାକୁ ଅସମର୍ଥ ତାହାହେଲେ ନିମ୍ନୋକ୍ତ ଦୁଇ ପ୍ରକାର ମାର୍ଗକୁ ଗ୍ରହଣ କରି ଭଗବତ୍ କୃପା ନିମନ୍ତେ ଚେଷ୍ଟା କରିବା ଉଚିତ ।

ଦୋ ବାତନକୋ ଭୁଲ ମତ କୋ ଚାହେଁ କଲ୍ୟାନ ।
ନାରାୟଣ ଇକ ମୌତକୋ ଦୂଜେ ଶ୍ରୀଭଗବାନ ॥

ଅର୍ଥାତ୍ (୧) ମୃତ୍ୟୁ ସ୍ମରଣ-ସଂସାରରେ ପ୍ରତ୍ୟେକ ବସ୍ତୁ ବିନାଶଶୀଳ, ଯାହା ଉତ୍ପନ୍ନ ହୋଇଛି ତାହାର ନାଶ ନିଶ୍ଚିତ ।ଆମର ଶରୀର, ଆମ ସମ୍ବନ୍ଧୀୟମାନେ ସମସ୍ତେ କାଳର ଅଧୀନ ହେବେ । ଯେଉଁ ନାଶବାନ ଶରୀର ପ୍ରତି କ୍ଷଣ ମୃତ୍ୟୁ ଆଡ଼କୁ ଆଗେଇ ଚାଲିଛି, ତାହା ପାଇଁ ଏତେ ପ୍ରପଞ୍ଚ କାହିଁକି ? ମନୁଷ୍ୟକୁ ମୃତ୍ୟୁର ସ୍ମରଣ ରହେ ନାହିଁ, ସେଇଥିପାଇଁ ବିଷୟମାନଙ୍କ ପ୍ରତି ବୈରାଗ୍ୟ ହୁଏ ନାହିଁ । ମହାରାଜ ଯୁଧିଷ୍ଠିର ଯକ୍ଷକୁ ଏହି ପ୍ରସଙ୍ଗରେ କହିଥିଲେ, ସବୁଠାରୁ ବଡ଼ ଆଶ୍ଚର୍ଯ୍ୟର କଥା ପ୍ରତିଦିନ ଜୀବିତ ଲୋକମାନେ ମୃତ ଲୋକର ଦାହ ସଂସ୍କାର କରୁଛନ୍ତି, କିନ୍ତୁ ତା' ପରକ୍ଷଣରେ ଭୁଲିଯାଇ ନିଜକୁ ଅମର ଭାବୁଛନ୍ତି । ଏଥିପାଇଁ ନାରାୟଣ ସ୍ୱାମୀ ମୃତ୍ୟୁକୁ ମନେ ରଖିବାକୁ ଉପଦେଶ ଦେଇଛନ୍ତି । ଅନୁକ୍ଷଣ ମୃତ୍ୟୁକୁ ମନେ ରଖିଲେ ନୂଆ ପାପ ହୋଇ ପାରିବ ନାହିଁ ତଥା ବିଷୟଗୁଡ଼ିକ ପ୍ରତି ବୈରାଗ୍ୟ ଆସିଯିବ । (୨) ଭଗବାନଙ୍କ ସ୍ମରଣ-ବୈରାଗ୍ୟ ସହିତ ଅଭ୍ୟାସ ମଧ୍ୟ ହେବା ଦରକାର । ମୃତ୍ୟୁକୁ ସ୍ମରଣ କଲେ ବୈରାଗ୍ୟତ ହୋଇଯିବ ପରନ୍ତୁ ଆନନ୍ଦ ଆସିବ ନାହିଁ । ଜଗତ ଶୂନ୍ୟ ଓ ବିନାଶରୂପୀ ପ୍ରତୀତ ହେବ । ଏଥିପାଇଁ ଭଗବାନଙ୍କୁ ସ୍ମରଣ କରିବାକୁ ହେବ । ସାରା ସଂସାରରେ ଭଗବାନ ବ୍ୟାପ୍ତ ହୋଇ ରହିଛନ୍ତି ଏବଂ ଯାହା କିଛି ହେଉଛି ତାଙ୍କର ଲୀଳା । ପରମାନନ୍ଦ ଓ ପରମ ଚେତନ ଜ୍ଞାନ ସ୍ୱରୂପ ଅଟନ୍ତି । ନିରନ୍ତର ତାଙ୍କରି ସ୍ମରଣ କଲେ ସବୁ ପାପ ନାଶ ପାଏ ଏବଂ ମନ ଭଗବଦକାର ହୋଇଗଲେ ଅନାୟାସରେ ମୋକ୍ଷ ମିଳିଯାଏ । ଏହି ଦୁଇ ମାର୍ଗକୁ ଅନୁସରଣ କରି ମନୁଷ୍ୟ ଭଗବାନଙ୍କୁ ପାଇବାକୁ ସକ୍ଷମ ହୋଇଥାଏ ।

ଯଦି ଉପରୋକ୍ତ ଦୁଇ ଉପାୟ ଅବଲମ୍ବନ କରିବାକୁ ସମର୍ଥ ନ ହୁଅ ତାହାହେଲେ ଗୋଟିଏ ସହଜ ଓ ସରଳ ଉପାୟ ଅଛି, ଯାହାକୁ ଅବଲମ୍ବନ କରି ଭବ ସାଗରରୁ ଉଦ୍ଧାର ପାଇ ହେବ । ଭଗବାନ ଶ୍ରୀକୃଷ୍ଣ ଗୀତାରେ ଅର୍ଜୁନକୁ କହିଛନ୍ତି-

ସର୍ବଧର୍ମାନ ପରିତ୍ୟଜ୍ୟ ମାମେକଂ ଶରଣଂ ବ୍ରଜ ।
ଅହଂ ତ୍ୱା ସର୍ବପାପେଭ୍ୟୋ ମୋକ୍ଷୟିଷ୍ୟାମି ମା ଶୁଚଃ ॥

ଅର୍ଥାତ୍ ହେ ଅର୍ଜୁନ ! ତୁ ସବୁ ଧର୍ମକୁ,ସବୁ କର୍ମର ଆଶ୍ରୟକୁ ତ୍ୟାଗକରି ଏକମାତ୍ର ମୋତେ ସଚ୍ଚିଦାନନ୍ଦ ଘନ ବାସୁଦେବ ପରମାତ୍ମାଙ୍କର ଅନନ୍ୟ ଶରଣ ପ୍ରାପ୍ତ ହୁଅ । ମୁଁ ତୋତେ ସମସ୍ତ ପାପରୁ ମୁକ୍ତ କରିଦେବି, ତୁ ଶୋକ କରନାହିଁ । ଭଗବାନ ଶ୍ରୀରାମ ମଧ୍ୟ କହିଛନ୍ତି, ଯିଏ ମୋର ଶରଣ ନେଇ କହିଦିଏ, 'ମୁଁ ତମର' ତାହାକୁ ମୁଁ ସର୍ବଭୂତଙ୍କଠାରୁ ଅଭୟ କରିଦିଏ । ଏହା ମୋର ବ୍ରତ ଅଟେ ।

ଏଣୁ ଭଗବାନଙ୍କଠାରେ ସର୍ବତୋଭାବେ ଶରଣାଗତି ହିଁ ପରମ ଓ ସର୍ବତ୍ତୋମ ଉପାୟ । ଯେ ଭଗବାନଙ୍କ ଶରଣ ନେଇଯାଏ, ସେ ଭଗବାନଙ୍କର ହୋଇଯାଏ । ସେ ସବୁକାଳ ପାଇଁ ନିର୍ଭୟ ଓ ନିଶ୍ଚିନ୍ତ ହୋଇଯାଏ । ଏଣୁ ସମସ୍ତଙ୍କ ଆଶ୍ରୟ ଛାଡ଼ି କେବଳ ଭଗବାନଙ୍କ ଶରଣ ନେବା ଉଚିତ ।

ଅଧ୍ୟାପକ
ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ
କପ୍ତିପଦା ମହାବିଦ୍ୟାଳୟ, ନୂଆସାହି, ମୟୂରଭଂଜ



# ଗୋ ମାହାତ୍ମ୍ୟ ଓ ଗୋ ସମ୍ବର୍ଦ୍ଧନା ଉତ୍ସବ

**ମାନସ ରଞ୍ଜନ ଖୁଣ୍ଟିଆ**

ଆମ ଦେଶର ଐତିହ୍ୟ, ପରମ୍ପରା ଓ ସଂସ୍କୃତି ସହ ସମନ୍ୱୟ ରକ୍ଷା କରି ବାର ମାସରେ ତେର ପର୍ବ ପାଳନ କରାଯାଏ । ତନ୍ମଧ୍ୟରୁ ଗିରି-ଗୋବର୍ଦ୍ଧନ ଓ ଗୋପାଷ୍ଟମୀ ପୂଜାର ଏକ ପ୍ରାଚୀନ ପରମ୍ପରା ଅଦ୍ୟାବଧି ରହି ଆସିଛି । ଗୋବର୍ଦ୍ଧନ ପୂଜା ଓ ଗୋପାଷ୍ଟମୀକୁ ସଂଯୋଗ କରାଯାଇ ୧୯୫୨ ମସିହାଠାରୁ ଗୋ-ସମ୍ବର୍ଦ୍ଧନା ସପ୍ତାହ ଭାବରେ ଆମ ରାଜ୍ୟ ତଥା ଦେଶରେ ପାଳିତ ହେଉଅଛି । ପ୍ରତିବର୍ଷ କାର୍ତ୍ତିକ ମାସ ଶୁକ୍ଳପକ୍ଷ ଦ୍ୱିତୀୟାଠାରୁ ଅଷ୍ଟମୀ ତିଥି ପର୍ଯ୍ୟନ୍ତ ଏହି ସାତ ଦିନକୁ ଗୋ-ସମ୍ବର୍ଦ୍ଧନା ସପ୍ତାହ କୁହାଯାଏ । ଏହି ଗୋ-ସମ୍ବର୍ଦ୍ଧନା ସପ୍ତାହ ପାଳନ ନେଇ ରହିଥିବା ପ୍ରବାଦ ହେଲା-

ବୃନ୍ଦାବନ ବିହାରୀ ପରମ ଗୋପାଳକ ଶ୍ରୀକୃଷ୍ଣ ଓ ଅଗ୍ରଜ ବଳରାମ ଗୋପପୁରରେ ରହି ଗୋପାଳନର ଶ୍ରେଷ୍ଠତ୍ୱ ପ୍ରତିପାଦନ କରିଛନ୍ତି । ସେମାନେ ଗୋପାଳକ ସାଜି ପ୍ରତିଦିନ ବୃନ୍ଦାବନରେ ଜଙ୍ଗଲରେ ଗାଈ ଚରାଉଥିଲେ । ଗୋସମ୍ପଦ ଓ ଗିରି ଗୋବର୍ଦ୍ଧନ ସହ ଗୋପପୁରବାସୀମାନେ ଅଙ୍ଗାଙ୍ଗୀ ଭାବେ ଜଡିତ ଥିବାରୁ ଏବଂ ବହୁ ଉପକାର ପାଉଥିବାରୁ ଗୋପବାସୀମାନେ ଇନ୍ଦ୍ରପୂଜା ପରିବର୍ତ୍ତେ ଗୋମାତା ଓ ଗିରି ଗୋବର୍ଦ୍ଧନ ପୂଜା କରିବାକୁ ଗୋପପୁରବାସୀଙ୍କୁ ଭଗବାନ ଶ୍ରୀକୃଷ୍ଣ ପ୍ରବର୍ତ୍ତାଇ ଥିଲେ । ତେଣୁ ଇନ୍ଦ୍ରଦେବ କ୍ରୋଧାନ୍ୱିତ ହେଲେ ଓ ତାଙ୍କର ପ୍ରକୋପରେ ପ୍ରବଳ ବୃଷ୍ଟି ଓ ବଜ୍ରପାତ ଯୋଗୁଁ ଗୋପବାସୀମାନେ ଅତିଷ୍ଠ ହୋଇପଡିଲେ । ଶ୍ରୀକୃଷ୍ଣ ଗୋପବାସୀ ଓ ଗୋସମ୍ପଦକୁ ପ୍ରବଳ ବୃଷ୍ଟିପାତରୁ ରକ୍ଷା କରିବା ପାଇଁ ନିଜର ବାମ ହସ୍ତର କନିଷ୍ଠ ଆଙ୍ଗୁଳିରେ ୭ ଦିନ ପର୍ଯ୍ୟନ୍ତ ଗିରି ଗୋବର୍ଦ୍ଧନ ଧାରଣ କରିଥିଲେ । ଶେଷରେ ଇନ୍ଦ୍ରଦେବ ନିଜର ଭୁଲ ବୁଝିପାରି ଶ୍ରୀକୃଷ୍ଣଙ୍କୁ ପ୍ରାର୍ଥନା କଲେ ଏବଂ ଗୋକୁଳର ଶ୍ରେଷ୍ଠ ରକ୍ଷକ ଭାବେ ତାଙ୍କ ନାମ ଗୋବିନ୍ଦ ଦେଲେ । ସ୍ୱୟଂ ଶ୍ରୀକୃଷ୍ଣ ଦର୍ଶାଇଛନ୍ତି ଯେ ଗୋମାତାର ଲାଳନପାଳନ କରି ମାନବ ସୁସ୍ଥ ଜୀବନ ଓ ଦୀର୍ଘାୟୁ ଜୀବନ ଲାଭ କରିଥାଏ ।

ଗୋମାତା ହେଉଛି ପବିତ୍ର, ପୂଜନୀୟା ଏବଂ ସମଗ୍ର ସଂସାରରେ ସର୍ବଶ୍ରେଷ୍ଠା । ମନୁଷ୍ୟ ସମାଜରେ ଗୋମାତାର ଦାନ ଅତୁଳନୀୟ । ମନୁଷ୍ୟ ଜୀବନ ଓ ଜୀବିକା ସହିତ ଗୋମାତା ଓତଃପ୍ରୋତ ଭାବେ ଜଡିତ । ସମଗ୍ର ଦେଶବାସୀ ଗୋସମ୍ପଦକୁ ଗୋମାତା ରୂପେ ପୂଜା କରିଥାନ୍ତି । ଗୋମାତା ହେଉଛି ଆମ ସ୍ୱାସ୍ଥ୍ୟର ଆଧାର, ମୋକ୍ଷର ଆଧାର ଓ ଆର୍ଥିକ ସମୃଦ୍ଧିର ମୁଖ୍ୟସ୍ରୋତ ଏବଂ ସର୍ବୋପରି ସୁଖ ସମୃଦ୍ଧିର ପ୍ରତୀକ । ଗୋମାତା ହେଉଛି ଐଶ୍ୱରୀୟ ଚେତନାର ଶ୍ରେଷ୍ଠ ନିଦର୍ଶନ । ଏହା ପ୍ରକୃତିର ୫ଟି ମୌଳିକ ଉପାଦାନକୁ ରୂପାନ୍ତରିତ କରିଥାଏ । ତାହା ହେଲା- (୧) ପରିବର୍ତ୍ତନ କଳାର ପ୍ରତୀକ-କୃଷିଜାତ ବର୍ଜ୍ୟ ପଦାର୍ଥ ଯଥା- ତନ୍ତୁ ଜାତୀୟ ଶସ୍ୟ ବା ଘାସକୁ କ୍ଷୀରରେ ରୂପାନ୍ତରିତ ବା ପରିବର୍ତ୍ତନ କରିବା କଳାକୌଶଳ ଗୋମାତାଠାରେ ନିହିତ । (୨) ଧୈର୍ଯ୍ୟ କଳାର ପ୍ରତୀକ- ଗୋମାତାଠାରୁ ତା'ର କଅଁଳା ବାଛୁରୀକୁ ଛଡାଇ ନେଲାପରେ ମଧ୍ୟ ଗୋମାତା ଆମକୁ ଅନବରତ କ୍ଷୀର ଦେଇ ପ୍ରତିପୋଷଣ କରେ । (୩) ସହିଷ୍ଣୁତା, ବିଶ୍ୱସ୍ତତା, ଆନ୍ତରିକତା, ଅକପଟତା, ଆଜ୍ଞାନୁବର୍ତ୍ତିତାର ପ୍ରତୀକ- ବଳଦ ତା'ର କାନ୍ଧରେ ସକଳ କୃଷି କାର୍ଯ୍ୟ କରିବା ସହିତ ପରିବହନ କାର୍ଯ୍ୟରେ ସାହାଯ୍ୟ କରେ । (୪) ଆବେଗର ପ୍ରତୀକ- ଗୋମାତା ତା'ର ବାଛୁରୀ ଓ ମାଲିକକୁ ଅସାଧାରଣ ଭାବେ ଭଲ ପାଏ । (୫) ବିଷରୁ ଅମୃତକୁ ରୂପାୟନ କରିବାର ପ୍ରତୀକ- ମାନବ ପାଇଁ କ୍ଷତିକାରକ ବିଷ ପଦାର୍ଥକୁ ଅମୃତ ରସ ବା ଗୋରସକୁ ରୂପାନ୍ତରିତ କରିବାର ପ୍ରୟାସ ।

ଗୋମାତା ହେଉଛି-ଭୟହାରିଣୀ, ଲକ୍ଷ୍ମୀ ପ୍ରଦାୟିନୀ, ସ୍ନେହ ସଲିଳା, କରୁଣାମୟୀ, ଅମୃତମୟୀ, ସର୍ବସୁଖ ପ୍ରଦାୟନୀ । ତେଣୁ

ଗୋମାତାର ସେବା କଲେ ସମସ୍ତ ଦୁଃଖକଷ୍ଟ ଦୂର ହୁଏ । ପରମାତ୍ମାଙ୍କର ଅନ୍ୟତମ ଶ୍ରେଷ୍ଠ ସୃଷ୍ଟି ରୂପେ ଗୋମାତା ସାରା ବିଶ୍ୱ ନିମନ୍ତେ ପ୍ରତ୍ୟକ୍ଷ କଲ୍ୟାଣକାରୀ ରୂପେ ପ୍ରକଟ ହୋଇଛନ୍ତି । ଭାରତୀୟ ସଂସ୍କୃତି, ସଭ୍ୟତା ତଥା ସମଗ୍ର ବିଶ୍ୱର ବିକାଶ ଓ ପୋଷଣର ଆଧାର ହେଉଛି ଗୋମାତା । ଭାରତୀୟ ସଂସ୍କୃତିର ୪ଟି ଆଧାର ହେଉଛି ଗୋ, ଗଙ୍ଗା, ଗୀତା ଓ ଗାୟତ୍ରୀ । ତନ୍ମଧ୍ୟରୁ ଗୋମାତାର ଅବଦାନ କୃଷି, ଅର୍ଥନୀତି ଓ ସ୍ୱାସ୍ଥ୍ୟ ବିକାଶରେ ମହତ୍ତ୍ୱପୂର୍ଣ୍ଣ । ଗୋମାତା ସର୍ବଦେବମୟୀ ଅର୍ଥାତ୍ ପରମାତ୍ମାଙ୍କର ସମସ୍ତ ଦୈବୀ ଶକ୍ତି (୩୩ କୋଟି ଦେବାଦେବୀ) ଗୋମାତାଙ୍କର ପ୍ରତ୍ୟେକ ଅଙ୍ଗପ୍ରତ୍ୟଙ୍ଗରେ ବାସ କରନ୍ତି । ପରମାତ୍ମାଙ୍କର କୃପା କେବଳ ଗୋମାତାଙ୍କର ପୂଜନ ଓ ସେବା ଦ୍ୱାରା ମିଳିଥାଏ । ସମସ୍ତ ଦୈବୀକର୍ମ ଯଥା– ଯଜ୍ଞ, ପୂଜନ, ସଂସ୍କାର ଇତ୍ୟାଦି ଗୋ ଉତ୍ପାଦନ ବିନା ସମ୍ଭବ ହୋଇ ନଥାଏ ।

ତେଣୁ ଗୋମାତା ଏ ସଂସାରରେ ଦିବ୍ୟପ୍ରାଣୀ । ଗୋସେବା ଦ୍ୱାରା ଅନ୍ତଃକରଣରେ ଦିବ୍ୟସାତ୍ତ୍ୱିକ ଉଦୟ ହୁଏ । ଗାଈ ପଶୁ ନୁହେଁ, ସେ ବିଶ୍ୱର ମାତା ଅଟନ୍ତି । ଗୋସେବା ଈଶ୍ୱର ସେବା ଅଟେ । ମନୁଷ୍ୟ ଗୋସେବା ଦ୍ୱାରା ପୁତ୍ର, ଲକ୍ଷ୍ମୀ, ବିଦ୍ୟା, ଯଶ, ଜ୍ଞାନ, ବଳ ଏବଂ ଦୀର୍ଘାୟୁ ପ୍ରାପ୍ତ ହୋଇଥାଏ । ଗୋଦର୍ଶନ ଓ ସ୍ପର୍ଶ ଦ୍ୱାରା ସମସ୍ତ ତୀର୍ଥର ପୁଣ୍ୟ ପ୍ରାପ୍ତ ହୋଇଥାଏ । ସୃଷ୍ଟିରେ ଯେତେ ପ୍ରାଣୀ ଅଛନ୍ତି ସମସ୍ତଙ୍କ ମଳ ତ୍ୟାଜ୍ୟ ଓ ଦୁର୍ଗନ୍ଧଯୁକ୍ତ ଥିଲା ବେଳେ ଗୋମାତାର ମଳ ପୂଜନୀୟ ଓ ଦୁର୍ଗନ୍ଧନାଶକ ଅଟେ । ଗୋମାତା ଯେଉଁଠାରେ ରୁହେ ସେଠାରେ ପାପ ରୁହେ ନାହିଁ । ଗୋସମ୍ପଦ ବିନା ସମାଜର ମଙ୍ଗଳ ସାଧିତ ହୋଇପାରିବ ନାହିଁ । ମାନବର ଅସ୍ତିତ୍ୱ, ରକ୍ଷଣ, ପୋଷଣ ଓ ବିକାଶ ଉଦ୍ଦେଶ୍ୟରେ ଆମ ଦେଶର ମୁନିଋଷିମାନେ ଗୋବଂଶକୁ ଗୁରୁତ୍ୱ ଦେଇ ଆସିଛନ୍ତି । ମାନବ ସମାଜର ୪ଟି ପୁରୁଷାର୍ଥ – ଧର୍ମ, ଅର୍ଥ, କାମ, ମୋକ୍ଷ, ପ୍ରାପ୍ତିର ମୂଳ ସାଧନ ହେଉଛି ସର୍ବଦେବମୟୀ ଗୋମାତା । ସ୍ୱର୍ଗରେ ସୁରଭି, ମର୍ତ୍ତ୍ୟରେ ନନ୍ଦିନୀ ଓ କାମଧେନୁ ରୂପେ ପୂଜିତ । ଏ ବିଶ୍ୱ ବ୍ରହ୍ମାଣ୍ଡରେ ଗୋମାତା ଭଳି ଏତେ ଉପକାରୀ ପ୍ରାଣୀ ଆଉ କେହି ନାହାଁନ୍ତି । ଆବାଳ–ବୃଦ୍ଧ–ବନିତା ସମସ୍ତଙ୍କ ସେବାରେ ସେ ନିଜକୁ ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ସମର୍ପି ଦେଇଛି ।

ସମସ୍ୟା ଅନେକ ହେଲେ ମଧ୍ୟ ସମାଧାନର ବାଟ ହେଉଛି ଏକ – ଗୋମାତା ସେବା । ଗୋପାଳନ ଦ୍ୱାରା ଦେଶରକ୍ଷା, ପ୍ରାକୃତିକ ପର୍ଯ୍ୟାବରଣ ରକ୍ଷା, ଗୋବରରୁ ଉତ୍ତମ ଜୈବିକ ସାର, ଗୋମୂତ୍ରରୁ ଫସଲ ରକ୍ଷକ ଔଷଧ, କ୍ଷୀର ଓ ଦହିର ଅମୃତମୟ ଗୁଣ, ମାନବୀୟ ଗୁଣର ବୃଦ୍ଧି, ଗୋମୂତ୍ରରୁ ମନୁଷ୍ୟ ଉପଯୋଗୀ ଦିବ୍ୟ ଔଷଧି, ଗ୍ରାମର ଉନ୍ନତି, ସ୍ୱାବଲମ୍ବନ ଓ ରୋଜଗାରର ବ୍ୟବସ୍ଥା ଆଦି ସମ୍ଭବ ହୋଇଥାଏ ।

ଆଧୁନିକ ସଭ୍ୟତାର କ୍ରମବିକାଶ ସହିତ କୃଷି ଯନ୍ତ୍ରପାତି ଓ ଉପକରଣର ବହୁଳ ବ୍ୟବହାର, ବ୍ୟାପକ ଶିଳ୍ପାୟନ ଓ ଜନସଂଖ୍ୟା ବୃଦ୍ଧି ଯୋଗୁଁ ଆମ ରାଜ୍ୟ ତଥା ଦେଶରେ ମୂଲ୍ୟବାନ ଦେଶୀ ଗାଈଗୋରୁଙ୍କ ସଂଖ୍ୟା ହ୍ରାସ ପାଇବା ସହ କ୍ଷୀରର ଚାହିଦା ଦୃଷ୍ଟିରୁ ସଙ୍କର ଗାଈଗୋରୁଙ୍କ ସଂଖ୍ୟା ବୃଦ୍ଧି ପାଇବାରେ ଲାଗିଛି । କିନ୍ତୁ ଆମ ରାଜ୍ୟର ଜଳବାୟୁ ସହିତ ଖାପଖୁଆଇ ଚଳିବା ସହିତ ରୋଗ କମ୍ ଦେଖା ଦେଉଥିବା ଦେଶୀ ଗାଈ ଗୋରୁର ଆବଶ୍ୟକତା ଢେର ରହିଛି । ସେଥିପାଇଁ ସେମାନଙ୍କର ସଂରକ୍ଷଣ ଓ ଥଇଥାନ ପାଇଁ ସରକାର ଚେଷ୍ଟା କରୁଛନ୍ତି । ଆମ ରାଜ୍ୟରେ ବ୍ୟାପକ ଗୋଚାଲାଣ ଯୋଗୁଁ ବିକାଶ ଧାରାରେ ବାଧକ ସୃଷ୍ଟି ହୋଇଛି । ଗୋମାତା ଉପରେ କେବଳ ଦୁଗ୍ଧ ଉତ୍ପାଦନ ପାଇଁ ନିର୍ଭର ନକରି ତାହାର ବର୍ଜ୍ୟବସ୍ତୁ ଯଥା– ଗୋବର, ଗୋମୂତ୍ର ଆଦିକୁ ଜୈବିକ ଖତ, ଆଲୋକ, ଜାଳେଣୀ, ଔଷଧ ଇତ୍ୟାଦି ରୂପେ ବ୍ୟବହାର କରି ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ଗୋମାତାର ଯତ୍ନ ନେବା ଉଚିତ୍ ।

ଆମ ରାଜ୍ୟରେ ଗୋ ସମ୍ପଦର ବିକାଶ ସହିତ କ୍ଷୀର ଉତ୍ପାଦନ ବୃଦ୍ଧି ପାଇଁ ସରକାର ବହୁ ଯୋଜନା ପ୍ରଣୟନ କରିଛନ୍ତି । ସେଗୁଡ଼ିକ ହେଲା – ଭ୍ରାମ୍ୟମାଣ ପ୍ରାଣୀଚିକିତ୍ସା ସେବା, ସଙ୍କର ମାଈ ବାଛୁରୀ ପାଳନ ଯୋଜନା, ଗୋବୀମା ଯୋଜନା, ରାଷ୍ଟ୍ରୀୟ କୃଷି ବିକାଶ ଯୋଜନାରେ ସବୁଜ ଗୋ ଖାଦ୍ୟ ଫସଲ ନିମନ୍ତେ ଘାସ ମଞ୍ଜି, ଚାରା ଓ ମୂଳ ବା କାଣ୍ଡ ବଣ୍ଟନ, ଘାସଚାଷ, ବାଏଫ ମାଧ୍ୟମରେ ୧୦ଟି ଉପାନ୍ତ ଜିଲ୍ଲାରେ ୧୦୦ଟି ଗୋବିକାଶ କେନ୍ଦ୍ର ମାଧ୍ୟମରେ କଲ୍ୟାଣୀ କାର୍ଯ୍ୟକ୍ରମ, ଜେ.କେ. ଟ୍ରଷ୍ଟ ମାଧ୍ୟମରେ ୧୩ଟି ଜିଲ୍ଲାର ୬୨୦ଟି କେନ୍ଦ୍ରରେ ସମନ୍ୱିତ ପ୍ରାଣୀ ସମ୍ପଦ ବିକାଶ ସହ ଗୋ–ପ୍ରଜାତିର ଉନ୍ନତିକରଣ ଯୋଜନା, କୃତ୍ରିମ ପ୍ରଜନନ ନିମନ୍ତେ ଗୁଣାତ୍ମକ ଶୁକ୍ର ଉତ୍ପାଦନ ଓ ବ୍ୟବହାର, ରୋଗ ନିୟନ୍ତ୍ରଣ ପାଇଁ ଜୈବିକ ଟିକା ଉତ୍ପାଦନ ପ୍ରତିଷ୍ଠାନର ଆଧୁନିକୀକରଣ ଓ ଗୁଣାତ୍ମକ ମାନର ପ୍ରତିଷେଧକ ଟିକା ଉତ୍ପାଦନ ଇତ୍ୟାଦି । ଆମ ରାଜ୍ୟର ୯ଟି ଜିଲ୍ଲାରେ ଗୋ ବୀମା ଯୋଜନା ଦୁଗ୍ଧ ଚାଷୀଙ୍କୁ ସଫଳତା ଆଣି ଦେଉଥିବାରୁ ସରକାର ରାଜ୍ୟ ଯୋଜନା ଅର୍ଥରେ ଚଳିତ ବର୍ଷଠାରୁ ଆଉ ୨୧ଟି ଜିଲ୍ଲାକୁ ଏହି କାର୍ଯ୍ୟକ୍ରମରେ ଅନ୍ତର୍ଭୁକ୍ତ କରିଛନ୍ତି । ଯାହାଫଳରେ ରାଜ୍ୟର ୩୦ଟି ଜିଲ୍ଲାର ଦୁଗ୍ଧ ଚାଷୀମାନେ ଉପକୃତ ହୋଇ ପାରିବେ । ସେହିପରି ଆମର ପ୍ରିୟ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକଙ୍କ ଦ୍ୱାରା ପ୍ରଣିତ





ଭ୍ରାମ୍ୟମାଣ ପ୍ରାଣୀ ଚିକିତ୍ସା ସେବା ସଫଳତାର ସହ ଅପହଞ୍ଚ ଦୁର୍ଗମ ଅଞ୍ଚଳରେ କାର୍ଯ୍ୟ କରୁଥିବାରୁ ଚଳିତ ବର୍ଷ ଏହାକୁ ରାଜ୍ୟର ସମସ୍ତ ବ୍ଲକ୍‌ରେ କାର୍ଯ୍ୟକାରୀ କରିବାକୁ ସରକାର ପଦକ୍ଷେପ ନେଇଛନ୍ତି । ଏହି ସେବା ଦ୍ୱାରା ଶତକଡ଼ା ୨୫ ଭାଗ ପ୍ରତିଷେଧକ ବ୍ୟବସ୍ଥାର ଅଭିବୃଦ୍ଧି ଘଟିପାରିଛି । ଆମ ରାଜ୍ୟ କଟକ ଜିଲ୍ଲାର ଖପୁରିଆସ୍ଥିତ ହିମୀକୃତ ଶୁକ୍ର ଭଣ୍ଡାର  ଜାତୀୟ ସ୍ତରରେ କୃତ୍ରିମ ପ୍ରଜନନ ପାଇଁ ଉଦ୍ଦିଷ୍ଟ ଗୁଣାତ୍ମକ ଶୁକ୍ର ଉତ୍ପାଦନ ଯୋଗୁଁ ଚଳିତ ବର୍ଷ ଏ ଗ୍ରେଡ୍ ସାର୍ଟିଫିକେଟ୍ ପାଇ ରାଜ୍ୟର ଗୌରବ ବଜାୟ ରଖିପାରିଛି । ଏହି ଅନୁଷ୍ଠାନରୁ ବିହାର ଓ ଅନ୍ୟାନ୍ୟ ରାଜ୍ୟକୁ ମଧ୍ୟ ସିମେନ ଷ୍ଟ୍ର ଯୋଗାଇ ଦିଆଯାଇଛି । ପ୍ରତିବର୍ଷ ଏହି ଅନୁଷ୍ଠାନରୁ ବାର୍ଷିକ ୧୨ ଲକ୍ଷରୁ ଊର୍ଦ୍ଧ୍ୱ ସିମେନ ଷ୍ଟ୍ର ଉତ୍ପାଦନ କରାଯାଇ ଉନ୍ନତ ଗୋ–ପ୍ରଜନନ ନିମନ୍ତେ ଚାଷୀ ଭାଇଙ୍କୁ ଯୋଗାଇ ଦିଆଯାଉଛି । ବର୍ତ୍ତମାନ ଆମ ରାଜ୍ୟର ଚାହିଦାକୁ ଦୃଷ୍ଟିରେ ରଖି ସରକାର ଏବଂ ଜାତୀୟ ଦୁଗ୍ଧ ବିକାଶ ବୋର୍ଡ଼ର ମିଳିତ ଆନୁକୂଲ୍ୟରେ ଏକ ଆଞ୍ଚଳିକ ସିମେନ ଉତ୍ପାଦନ କେନ୍ଦ୍ର ସ୍ଥାପନ ହେବାକୁ ଯାଉଛି, ଯାହା ଫଳରେ ଏଠାରୁ ବାର୍ଷିକ ୨୫ ଲକ୍ଷରୁ ଊର୍ଦ୍ଧ୍ୱ ସିମେନ ଷ୍ଟ୍ର ଉତ୍ପାଦନ କରାଯାଇ କୃତ୍ରିମ ପ୍ରଜନନ କାର୍ଯ୍ୟରେ ବ୍ୟବହାର କରାଯାଇ ପାରିବ । ସେହିପରି ବିଭିନ୍ନ ରାଷ୍ଟ୍ରାୟତ୍ତ ବ୍ୟାଙ୍କ ଜରିଆରେ ଗୋପାଳନ ନିମନ୍ତେ ସରକାର ଦୁଗ୍ଧ ଚାଷୀଙ୍କୁ ଆର୍ଥିକ ପ୍ରୋତ୍ସାହନ ଯୋଗାଇ ଦେବା ପାଇଁ ସ୍ୱଳ୍ପ ମିଆଦୀ ଓ ଦୀର୍ଘ ମିଆଦୀ ଋଣ ଯୋଜନାରେ ସୁଧ ରିହାତି, ଡାଏରୀ ଉଦ୍ୟୋଗୀଙ୍କ ପ୍ରମୋଶନ ଯୋଜନା, ଡାଏରୀ ଉଦ୍ୟୋଗ ବିକାଶ ଯୋଜନା, ପୁଞ୍ଜି ବିନିଯୋଗ ରିହାତି ଯୋଜନା (ଜେ.ଏସ୍.କେ) ଆରମ୍ଭ କରିଛନ୍ତି । ଚଳିତ ବର୍ଷଠାରୁ କିଶାନ୍ କ୍ରେଡିଟ୍ କାର୍ଡ଼ ମାଧ୍ୟମରେ କୃଷି ଋଣ ପରି ଗୋପାଳନ ନିମନ୍ତେ ସ୍ୱଳ୍ପ ମିଆଦୀ ସୁଧ ରିହାତି ଯୋଜନାରେ ବାର୍ଷିକ ୩ ଲକ୍ଷ ଟଙ୍କା ପର୍ଯ୍ୟନ୍ତ ୫ ପ୍ରତିଶତ ଓ ନିୟମିତ ଶୁଝିଲେ ୩ ପ୍ରତିଶତ ଏହିପରି ଭାବେ ମୋଟ ୮ ପ୍ରତିଶତ ସୁଧ ରିହାତିର ବ୍ୟବସ୍ଥା କରାଯାଇଛି । ଦୀର୍ଘ ମିଆଦୀ ଋଣ ଯୋଜନାରେ ଗୋପାଳନ ନିମନ୍ତେ ନେଇଥିବା ନିଜସ୍ୱ ଋଣ କିମ୍ବା ଅନ୍ୟାନ୍ୟ ଯୋଜନା (ଜେ.ଏସ୍.କେ. ବ୍ୟତୀତ)ରେ ଋଣ ନେଇଥିଲେ ୩ ପ୍ରତିଶତ ଓ ନିୟମିତ ଋଣ ସୁଝିଲେ ଆଉ ୨ ପ୍ରତିଶତ ଏହିପରି ଭାବେ ମୋଟ ୫ ପ୍ରତିଶତ ସୁଧ ରିହାତି ଦୁଗ୍ଧ ଚାଷୀ ପାଇ ପାରିବେ । ସେହିପରି ଡାଏରୀ ଉଦ୍ୟୋଗୀଙ୍କ ପ୍ରମୋଶନ ଯୋଜନାରେ ସାଧାରଣ ବର୍ଗଙ୍କ ପାଇଁ ଶତକଡ଼ା ୨୫ ଭାଗ ଏବଂ ଅନୁସୂଚିତ ଜାତି ଓ ଜନଜାତି ପାଇଁ ୩୩ ଭାଗ କ୍ୟାପିଟାଲ ସବ୍‌ସିଡି ବା ରିହାତିର ବ୍ୟବସ୍ଥା ହୋଇଛି । ରାଜ୍ୟ କୃଷିନୀତି –୨୦୧୩ ଅନୁଯାୟୀ ଦୁଗ୍ଧଚାଷୀ ଦୁଗ୍ଧ ପ୍ରକ୍ରିୟାକରଣ କରି ଅଧିକ ଲାଭ ପାଇବା ପାଇଁ ସରକାର ୮ଟି ଦୁଗ୍ଧ ଉପକରଣ ଯଥା– ଦୁଗ୍ଧ ଦୁହିଁବା ମେସିନ୍, ଘାସ କାଟିବା ଯନ୍ତ୍ର, ଡିପ୍ ଫ୍ରିଜର, ମିନି ଗୋଖାଦ୍ୟ ପ୍ଲାଣ୍ଟ, କ୍ରିମ୍ ସେପାରେଟର, ଖୁଆ ପ୍ରସ୍ତୁତକାରୀ ଭ୍ୟାଟ, ବଲ୍‌କ କୁଲର ଆଦି ଉପରେ ୫୦ ପ୍ରତିଶତ ରିହାତି ବା ସବ୍‌ସିଡିର ବ୍ୟବସ୍ଥା କରିଛନ୍ତି । ଆଗାମୀ ୪ ବର୍ଷରେ ସରକାର ରାଜ୍ୟରେ ଦୁଗ୍ଧ ଉତ୍ପାଦନ ଦ୍ୱିଗୁଣିତ କରିବାକୁ ଲକ୍ଷ୍ୟଧାର୍ଯ୍ୟ କରିଛନ୍ତି ।

ଆମ ରାଜ୍ୟ ତଥା ଦେଶରେ ଦେଖାଯାଉଥିବା ବିଭିନ୍ନ ପ୍ରଜାତିର ଗାଈଗୋରୁ ଯଥା– ସାହିୱାଲ, କନ୍‌କ୍ରେଜ୍, ଥାରପାରକର, ଅଙ୍ଗୋଲ, ବିଞ୍ଝାରପୁରୀ, ମୋଟୁ, ଘୁମୁସରୀ ଆଦିଙ୍କଠାରେ ଏ–୨ ଗୁଣସୂତ୍ର(ଜିନ୍) ନିହିତ ଥିବା ସହିତ ସେମାନଙ୍କ କ୍ଷୀରରେ ବିଟାକେଜିନ୍ ନାମକ ପ୍ରୋଟିନ୍ ଥିବାରୁ ଏହା ଆମ ସ୍ୱାସ୍ଥ୍ୟ ପାଇଁ ବେଶ୍ ଉପଯୋଗୀ । କିନ୍ତୁ ବିଭିନ୍ନ ବିଦେଶୀ ରାଷ୍ଟ୍ର ଯଥା ଆମେରିକା, ସ୍କଟ୍‌ଲାଣ୍ଡ, ବ୍ରାଜିଲ ଆଦିରେ ଗାଈଙ୍କଠାରେ ଏ–୧ ଗୁଣସୂତ୍ର ନିହିତ ଥିବା ଯୋଗୁଁ ତାହା ମନୁଷ୍ୟ ସ୍ୱାସ୍ଥ୍ୟପାଇଁ ଅତ୍ୟନ୍ତ କ୍ଷତିକାରକ । ସେଥିପାଇଁ ବିଦେଶରେ ଭାରତୀୟ ଗୋବଂଶକୁ ଗୁରୁତ୍ୱାରୋପ କରାଯାଇଛି । ତେଣୁ ଆମ ରାଜ୍ୟ ତଥା ଦେଶରେ ଦେଖାଯାଉଥିବା ଗୋବଂଶର ସୁରକ୍ଷା ଓ ସଂରକ୍ଷଣ ଏକାନ୍ତ ଆବଶ୍ୟକ ।

ଚଳିତ ବର୍ଷ ବିଶ୍ୱ ଖାଦ୍ୟ ଦିବସର ମୁଖ୍ୟବାର୍ତ୍ତା ହେଉଛି– ପାରିବାରିକ କୃଷିକର୍ମ । ତେଣୁ ପ୍ରତ୍ୟେକ ପରିବାରରେ ନିହାତି ଗୋଟିଏ ଗୋମାତାର ପାଳନପୋଷଣ ଜରୁରୀ ଅଟେ । ଯଦି ଘରେ ଏହା ସମ୍ଭବ ହୁଏ ନାହିଁ, ତେବେ ପରିବାର ନାମରେ ଗୋଟିଏ ଗୋମାତାକୁ ପୋଷ୍ୟମାତା ରୂପେ ଗ୍ରହଣ କରି ଗୋଶାଳାରେ ପ୍ରଦାନ ବା ଗ୍ରହଣ କରନ୍ତୁ ଏବଂ ଏହାର ଭରଣ ପୋଷଣ, ଲାଳନପାଳନ ବାବଦରେ ମାସିକ ଖର୍ଚ୍ଚ ବହନ କରି ଗୋମାତା ସେବାର ପୁଣ୍ୟଫଳ ଲାଭ କରିବା ଉଚିତ୍ । ଜନ୍ମଦିନ, ବିବାହବ୍ରତ, ପିତୃଶ୍ରାଦ୍ଧ ଦିବସ, ଅକ୍ଷୟତୃତୀୟା, ଗହ୍ମାପୂର୍ଣ୍ଣିମା, ଗୋସମ୍ବର୍ଦ୍ଧନା ଆଦି ଦିବସରେ ପରିବାରର କଲ୍ୟାଣ ନିମନ୍ତେ ଗୋମାତାକୁ ଖାଇବାକୁ ଦେବା ବିଧେୟ । ଯାହାଫଳରେ ଆମ ପରିବାର, ସମାଜ, ଗ୍ରାମ, ରାଜ୍ୟ, ଦେଶ ଓ ବିଶ୍ୱର କଲ୍ୟାଣ ସାଧିତ ହୋଇପାରିବ ଏଥିରେ ସନ୍ଦେହ ନାହିଁ ।

ସୂଚନା ଅଧିକାରୀ
ସୂଚନା ଓ ଲୋକ ସମ୍ପର୍କ ବିଭାଗ
ଭୁବନେଶ୍ୱର

# ବୃକ୍ଷରୋପଣ : ବିଶ୍ୱ ବଞ୍ଚି ରହିବାର ମହାଯଜ୍ଞ

**ଡକ୍ଟର ମନୋଜ ପଟେଲ**

ବୃକ୍ଷ ହେଉଛି ଭାରତୀୟ ସଂସ୍କୃତିର ମୂଳତତ୍ତ୍ୱ । ମାନସିକ ଶକ୍ତିର ବୃଦ୍ଧି ବୃକ୍ଷ ତଳେ ହେଉଥିଲା । ଗୌତମ ବୁଦ୍ଧ ବୃକ୍ଷ ତଳେ ଚିନ୍ତନ କରି ବୁଦ୍ଧତ୍ୱ ପ୍ରାପ୍ତ ହୋଇଥିଲେ । ସେହିପରି ବେଦର ଗୁରୁ ହେଉଛି ବୃକ୍ଷ, ବୃକ୍ଷ ହିଁ ଜୀବନ । ଭଗବାନ ମନ୍ଦିରରେ ମସ୍‌ଜିଦ୍‌ରେ ନାହାନ୍ତି । ବୃକ୍ଷରେ ଅଛନ୍ତି ବୋଲି ବେଦରେ ଉଲ୍ଲେଖ ରହିଛି । ବେଦର ଗୁରୁ ହେଉଛି ବୃକ୍ଷ, ମଣିଷ ମନର ଭାବନା ପରିବେଶରୁ ଆସିଥାଏ । ବୃକ୍ଷ ଆମର ଚିନ୍ତା ଓ ଚେତନାକୁ ନିୟନ୍ତ୍ରଣ କରିଥାଏ । ବ୍ୟକ୍ତିଗତରୁ ସାମୂହିକ କରିଥାଏ । ସେହି ଅନୁସାରେ ନିଜର ଓ ସଂସାରର ଭବିଷ୍ୟତ ନିର୍ଦ୍ଧାରିତ ହୋଇଥାଏ । ଅନ୍ୟ ପକ୍ଷରେ ସାର ଜଗଦୀଶ ଚନ୍ଦ୍ର ବୋଷଙ୍କ ପୂର୍ବରୁ ବୃକ୍ଷର ଯେ ଜୀବନ ଅଛି, ବିଜ୍ଞାନ ତାହାକୁ ସ୍ୱୀକାର କରୁ ନଥିଲା । ସେହିପରି ବହୁ ତଥ୍ୟ ଏବେ ମଧ୍ୟ ପ୍ରମାଣିତ ହେବାକୁ ବାକି ଅଛି । ପୁରାଣ ପୃଷ୍ଠା ଏବଂ ବିଭିନ୍ନ ସମ୍ପ୍ରଦାୟର ପ୍ରାଚୀନ ଗ୍ରନ୍ଥରେ ଅବଶ୍ୟ ଏ ନେଇ ବହୁ ଉପାଦେୟ ତଥ୍ୟ ଉଲ୍ଲେଖ ରହିଛି । ମାତ୍ର ବସ୍ତୁବାଦୀ ଜୀବନରେ ଏସବୁ ପ୍ରାଚୀନ ଗ୍ରନ୍ଥ କେବଳ ଏକ କଥାର ରୂପ ନେଇଯାଇଛି । ବୃକ୍ଷର ଗଭୀର ତତ୍ତ୍ୱକୁ ନେଇ ଏହିସବୁ ପ୍ରାଚୀନ ଗ୍ରନ୍ଥଗୁଡ଼ିକୁ ତର୍ଜମା କରି ବୁଝିବାକୁ ଅନ୍ତତଃ ଏବେ କାହାରି ପାଖରେ ସମୟ ନାହିଁ । ଏହିସବୁ ତତ୍ତ୍ୱକୁ ଯେବେ ଆମେ ବୁଝିଯିବା ତେବେ ବୃକ୍ଷ ସୁରକ୍ଷା ନେଇ ଏକ ଯୁଗାନ୍ତକାରୀ ବିପ୍ଳବ ହେବ । ବୃକ୍ଷ ମନର କଥା ବୁଝିପାରେ । ବୃକ୍ଷକୁ ହୃଦୟର ସହ ଯାହା କହିଲେ, ମାଗିଲେ ତାହା ହୋଇଥାଏ ବୋଲି ବିଶ୍ୱାସ କରାଯାଏ । ବୃକ୍ଷର ବିଭିନ୍ନ ଅଙ୍ଗ ଔଷଧରେ ବ୍ୟବହୃତ ହୋଇଥାଏ । ମାତ୍ର ବୃକ୍ଷ ସହ ଏବେ ମାନସିକ ଭାବଧାରା ପୂର୍ବପରି ରହୁ ନଥିବାରୁ ଅନେକ ସମୟରେ ଔଷଧୀୟ ଉପକାରିତା ମିଳିପାରୁ ନାହିଁ । ପୂର୍ବରୁ ଆୟୁର୍ବେଦିକ ଚିକିତ୍ସା ପାଇଁ ଚିକିତ୍ସକମାନେ ବୃକ୍ଷର କୌଣସି ଅଂଶ ସଂଗ୍ରହ କରିବା ପୂର୍ବରୁ ବରଣ କରୁଥିଲେ । ଏହି ସମୟରେ ସେମାନେ କରୁଥିବା ପୂଜାପାଠ ଓ ମନ୍ତ୍ର ଉଚ୍ଚାରଣ ମାଧ୍ୟମରେ ବୃକ୍ଷର ସମ୍ପୃକ୍ତ ଅଂଶ ସମାଜର ମଙ୍ଗଳ ପାଇଁ ଔଷଧୀୟ କାମରେ ସଂଗ୍ରହ କରାଯାଉଥିବା ନେଇ ବୃକ୍ଷକୁ ଅବଗତ କରାଇବା ମୁଖ୍ୟ ଉଦ୍ଦେଶ୍ୟ ରହୁଥିଲା ।

ଚିକିତ୍ସା ବିଜ୍ଞାନରେ ଆୟୁର୍ବେଦର ଅକାଟ୍ୟ ପ୍ରତିକାର ରହିଛି । ଘରବାଡ଼ି, ଅଗଣା ସମ୍ମୁଖରେ ଲଗାଯାଇଥିବା ଗଛର ପ୍ରଭାବ ସିଧାସଳଖ ଆମ ମନ ଶରୀର ଉପରେ ପଡ଼ିଥାଏ । ତେଣୁ ଗଛ ଲଗାଇବା ସମୟରେ ଏଥିପ୍ରତି ଗୁରୁତ୍ୱ ଦେବା ଆବଶ୍ୟକ ପଡ଼ିଥାଏ । ପ୍ରକୃତିରୁ ମିଳୁଥିବା ଖାଦ୍ୟ ଫଳ ଫୁଲରୁ ମଧ୍ୟ ଆମ ରୋଗ ବ୍ୟାଧି ଦୁଃଖର ନିୟନ୍ତ୍ରଣ ହୋଇପାରି ଥାଏ । ତେବେ ରାସାୟନିକ ପ୍ରକ୍ରିୟାରେ ହେଉଥିବା ଚାଷ ଅପେକ୍ଷା ପ୍ରାକୃତିକ ଉପାୟରେ ହେଉଥିବା ଚାଷରୁ ମିଳୁଥିବା ଖାଦ୍ୟ, ଔଷଧ, ପବନ ଉପକାରୀ । ଏହାଦ୍ୱାରା ରୋଗ ହେବ ନାହିଁ କି ଔଷଧ ବ୍ୟବହାର କରିବାକୁ ପଡ଼ିବନି । ଔଷଧ ବୃକ୍ଷର ଫୁଲ, ଫଳ, ମୂଳ, ଚେରରୁ ଆସିଥାଏ । ସେହିପରି ପୂଜା ସମୟରେ ବ୍ୟବହାର ହେଉଥିବା ବିଭିନ୍ନ ସାମଗ୍ରୀ ଔଷଧୀୟ ଗୁଣ ବହନ କରିଥାଏ ।

ଭାରତୀୟ ସଂସ୍କୃତି ସଦାସର୍ବଦା ବୃକ୍ଷକୁ ପୂଜା କରିଆସିଛି । ଆମ୍ବ, ତୁଳସୀ, ବର, ଓସ୍ତ, ବେଲ, ପଦ୍ମ, ସାହାଡ଼ା ଆଦି ବୃକ୍ଷକୁ ଦେବ ପଦବାଚ୍ୟ କରାଯାଇଛି । ବୃକ୍ଷର ବିକାଶରେ, ନାଶରେ, ଅବସ୍ଥାରେ ମାନବ ସଭ୍ୟତା, ପୃଥିବୀର ବିକାଶ/ନାଶ/ଅବସ୍ଥା ଅଙ୍ଗାଙ୍ଗୀ ଭାବେ ଜଡ଼ିତ ହୋଇରହିଛି ।

ସାରା ପୃଥିବୀରେ ସବୁ ଧର୍ମରେ ସବୁ ଶୁଭ କାମରେ ଆମ୍ବପତ୍ର ବ୍ୟବହାର ହୋଇଥାଏ । ଏହା ଅଙ୍ଗାରକାମ୍ଳ ଗ୍ରହଣ କରିବା ସହିତ ସମସ୍ତ ଅମଙ୍ଗଳ/ବିଷ ରୋଗ ବ୍ୟାଧି ମଧ୍ୟ ଟାଣି ନେଇଥାଏ । ବୁଦ୍ଧି ଜ୍ଞାନ, ଶିକ୍ଷା, ସୁଖ ସମୃଦ୍ଧି, ବିଦ୍ୟା, ଶତ୍ରୁନାଶ, ଚୋରିଭୟ, ବଦ୍‌ନାମ ଉପରେ ଆଧିପତ୍ୟ ପାଇଁ ମଧ୍ୟ କେତେକ

ନିର୍ଦ୍ଦିଷ୍ଟ ବୃକ୍ଷରୋପଣ କରାଯାଇପାରେ । ବୃକ୍ଷରୋପଣ ସହ ସଂପୃକ୍ତ ବ୍ୟକ୍ତି ମଧ୍ୟରେ କେତେକ ଗୁଣର ମଧ୍ୟ ବିକାଶ ହୋଇଥାଏ । ବାଡ଼ିରେ ତେନ୍ତୁଳି ଗଛ ଥିଲେ ଅମ୍ଳ ଗ୍ୟାସଟ୍ରିକ୍ ହୁଏ ନାହିଁ । ପଣସ ଗଛ ଥିଲେ କ୍ୟାନ୍ସର ହୁଏ ନାହିଁ । ଆମ୍ବଗଛ ପୂଜା କଲେ ବଦ୍‌ନାମ ହୁଏ ନାହିଁ । ଅରଖ ଗଛ ପୂଜା କଲେ ଚୋରି, ଶତ୍ରୁ ଆସନ୍ତିନି, ଲାଜକୁଳି ଗଛରେ ପାଣିଦେଲେ ସମ୍ମୋହନ ଶକ୍ତି ବଢ଼େ ଇତ୍ୟାଦି । ଗଛ ତଳେ ପଥର ଗଦା ହୋଇଥିଲେ ଶତ୍ରୁ ହୋଇଥାନ୍ତି । ବୃକ୍ଷ ଦେବତା ସବୁକିଛି ବୁଝି ପାରନ୍ତି । ଗୋଟେ ଗଛକୁ ନିୟମିତ ଗାଳି କଲେ ତାର ବୃଦ୍ଧିରେ ହ୍ରାସ ଘଟୁଛି । ଅପର ପକ୍ଷରେ ଯଦି ଜଣେ ନିୟମିତ ଗୀତ ଶୁଣାଏ ଓ ପ୍ରଶଂସା କରେ ତା'ହେଲେ ସାତଗୁଣ ପର୍ଯ୍ୟନ୍ତ ଅଧିକ ବୃଦ୍ଧି ତଥା ଅମଳ ମଧ୍ୟ ସାତଗୁଣ ପର୍ଯ୍ୟନ୍ତ ହୋଇଥାଏ । ବୃକ୍ଷ ମହାଯଜ୍ଞ କଲେ ସାରା ଅଞ୍ଚଳକୁ ଏବଂ ବିଶ୍ୱକୁ ଅଯାଚିତ ଭାବରେ ପାଣି, ପବନ, ଜୀବନ ସୁଖ, ଶାନ୍ତି ଖାଦ୍ୟ ମିଳିପାରିବ । ଗଛ ବଢ଼ିଲେ ସବୁ ଠିକ୍, ଯେପରି ବଢ଼େ ସେତେ ଶୀଘ୍ର ଫଳ ମିଳେ । ଯେଉଁ ବ୍ୟକ୍ତି ପ୍ରକୃତିକୁ ଯେତେ ସ୍ନେହ, ସୁରକ୍ଷା ଦେଇଛି ସେହି ବ୍ୟକ୍ତି ସେତେ ବିକଶିତ, ସମୃଦ୍ଧ ହୋଇଛି । ଭାରତର ସଂସ୍କୃତିର ପୁନରୁତ୍ଥାନ ଗଛ ପୂଜା (ଆଦିବାସୀ ସଂସ୍କୃତିର ପୁନରୁତ୍ଥାନ) ହିଁ ଏଥିରୁ ମୁକ୍ତି ପାଇବାର ଏକମାତ୍ର ପନ୍ଥା । ବୃକ୍ଷ ବିନା ଜୀବ ଜଗତ (ଭକ୍ତ)ର ଅସ୍ତିତ୍ୱ ନାହିଁ ।

ଶ୍ରୀ ଡାଇଗ୍ନୋଷ୍ଟିକ୍ ଏଣ୍ଡ ରିସର୍ଚ୍ଚ
ଗ୍ରା/ପୋ : ଜମନକିରା, କୁସୁମୀ,
କୁଚିଣ୍ଡା, ସମ୍ବଲପୁର–୭୬୮୨୨୭

---

# ସ୍ୱଚ୍ଛ ଭାରତ

**ଜୟନ୍ତ କୁମାର ପଟ୍ଟନାୟକ**

ପୂଜ୍ୟ ବାପୁଜୀଙ୍କ ଭବ୍ୟ ବିଚାର
ଭାରତ ଦେଶକୁ ରଖ ପରିଷ୍କାର
ନୂଆ ବରଷର ନୂଆ ସନ୍ଦେଶ
ଆମ ଦେଶ ହେବ ସ୍ୱଚ୍ଛ ସବୁଜ ସରସ ।
ସଂସାରର ଯେତେ ଦ୍ୱେଷ, ବିଦ୍ୱେଷ
ଭୁଲି ଯାଇ ଆମେ ହେବୁ ହରଷ ।
ସାହିତ୍ୟ, ସଂସ୍କୃତି, ବାଣିଜ୍ୟ, ବିଜ୍ଞାନ
ସବୁରେ ଆମର ହେଉ ଉତ୍ଥାନ ।
ପୃଥିବୀର ଯେତେ ରାଗ ଓ ବିଷ
ହୋଇଯାଉ ସିଏ ରସ ଓ ହସ ।
ଆସିଅଛି ଦୁଇ ହଜାର ପନ୍ଦର
କାଟୁ କରିବନି କିଛି ଫନ୍ଦି ଫିକର ।
ତିନି ମାଙ୍କଡଙ୍କ ପରେ ଏହି ଦୁଇ ଶବଦ
ସ୍ୱଚ୍ଛ ହେଉ ଆମ ଦେଶ ଭାରତ
ନଦୀ, ସାଗର, ପାହାଡ, କାନ୍ତାର
ପରିମଳ ହେବ ଦେଶ ଆମର ।
ଗଙ୍ଗା, ଗୋଦାବରୀ, ବ୍ରହ୍ମପୁତ୍ର, ନର୍ମଦା
ସଫା ସୁତୁରା ରହିବ ଏସବୁ ସଦା ।
ଜାତିର ଜନକ ମହାତ୍ମା ଗାନ୍ଧୀ
ସାରା ଦେଶକୁ ରଖିଥିଲେ ଏକତାରେ ବାନ୍ଧି ।
ମହାତ୍ମା ଗାନ୍ଧୀଙ୍କୁ ଶ୍ରେଷ୍ଠ ସମ୍ମାନ
ସ୍ୱଚ୍ଛ ହେଉ ଆମ ଦେଶ ମହାନ ।
ପ୍ରଭୁ ପଦ ତଳେ ଏହି ବିନତି
ସାହା ହୁଅନ୍ତୁ ପ୍ରଭୁ ଜଗତପତି ।

ଉପବିଭାଗୀୟ ଅଧିକାରୀ
ବନ୍ଦର ନିର୍ଦ୍ଦେଶାଳୟ, ଏ.ଜି.ଛକ, ଭୁବନେଶ୍ୱର

# ସପ୍ରସଙ୍ଗ ଓଡ଼ିଶା



## ଜଳବାହିତ ରୋଗର ପ୍ରତିରୋଧ ପାଇଁ ଜିଲ୍ଲାପାଳମାନଙ୍କୁ ପରାମର୍ଶ

ଜଳବାହିତ ରୋଗକୁ ପ୍ରତିରୋଧ କରିବା ପାଇଁ ଏକ ସ୍ୱତନ୍ତ୍ର ପ୍ରୟାସ ଦ୍ୱାରା ଜଳ ବିଶୁଦ୍ଧିକରଣ କାର୍ଯ୍ୟ ତ୍ୱରାନ୍ୱିତ କରାଯିବ । ଏଥିରେ ସମସ୍ତ ନଳକୂପ ଏବଂ ପାନୀୟ ଜଳ ଉତ୍ସକୁ ଅନ୍ତର୍ଭୁକ୍ତ କରାଯାଇଛି । ଏହା ଯେପରି ଅଗଷ୍ଟ ୮ ତାରିଖ ମଧ୍ୟରେ କରାଯାଇପାରିବ ସେଥିପାଇଁ ଜିଲ୍ଲାପାଳମାନେ ନିଜ ନିଜ ଜିଲ୍ଲାରେ ଏହା ତଦାରଖ କରିବା ପାଇଁ ସଚିବାଳୟଠାରେ ଆୟୋଜିତ ସମ୍ମିଳନୀରେ ଗୃହ ନିର୍ମାଣ ଓ ନଗର ଉନ୍ନୟନ ମନ୍ତ୍ରୀ ଶ୍ରୀ ପୁଷ୍ପେନ୍ଦ୍ର ସିଂହଦେଓ ଜିଲ୍ଲାପାଳମାନଙ୍କୁ ପରାମର୍ଶ ଦେଇଛନ୍ତି । ଏଣିକି ଜଳଯୋଗାଣ ସଂଯୋଗ ମେଳା ଆୟୋଜନ କରାଯାଇ ବେଆଇନ ଭାବେ ସଂଯୋଗ କରାଯାଇଥିବା ପାଇପ ବିଚ୍ଛିନ୍ନ କରାଯିବା ସହ ଆଇନଗତ ଭାବେ ନୂତନ ପାଇପ ସଂଯୋଗ ପାଇଁ ଲୋକଙ୍କୁ ଉତ୍ସାହିତ କରାଯିବ । ସେହିପରି ପୌର ପରିଷଦ ଏବଂ ଜନସ୍ୱାସ୍ଥ୍ୟ ବୈଷୟିକ ଅନୁଷ୍ଠାନ ମଧ୍ୟରେ ଏମ୍.ଓ.ୟୁ ସାକ୍ଷର କରାଯାଇଏହାର ରକ୍ଷଣାବେକ୍ଷଣ ଉପରେ ଅଧିକ ଉତ୍ତରଦାୟୀ କରାଯିବ । ପୌରାଞ୍ଚଳ ପାଇପ ଜଳଯୋଗାଣକୁ ସହରାଞ୍ଚଳରେ ପ୍ରମୁଖ ଭିତ୍ତିଭୂମି ଭାବେ ଗ୍ରହଣ କରାଯାଇ ପାଇପ ଜଳ ଯୋଗାଣରେ ଉନ୍ନତିକରଣ ଓ ସମ୍ପ୍ରସାରଣକୁ ଆଗାମୀ ଦୁଇବର୍ଷ ମଧ୍ୟରେ କରିବାକୁ କୁହାଯାଇଛି । ମାନ୍ୟବର ମୁଖ୍ୟମନ୍ତ୍ରୀ ଏ ପ୍ରକଳ୍ପକୁ ବହୁଳ ଭାବେ କାର୍ଯ୍ୟକାରୀ କରି ଲୋକଙ୍କୁ ପିଇବା ପାଣି ଉପଲବ୍ଧ କରାଇବା ପାଇଁ ଗୁରୁତ୍ୱ ଦେଇଥିବାରୁ ଏଥିପ୍ରତି ଯତ୍ନବାନ ହେବାକୁ ଜିଲ୍ଲାପାଳମାନଙ୍କୁ କୁହାଯାଇଛି ।

ଏତଦ୍‌ବ୍ୟତୀତ ଏକ ସ୍ୱତନ୍ତ୍ର ଟିମ୍ ଗଠନ କରାଯାଇ ସେମାନଙ୍କୁ ପାଇପ ଜଳ ପ୍ରବାହ ନିରୀକ୍ଷଣ, ଚିହ୍ନଟ, ଫଟା ପାଇପ ମରାମତି ପାଇଁ ନିୟୋଜନ କରାଯିବ । ବିଶେଷ ଭାବେ ଦୂଷିତପ୍ରବଣ ଜଳଉତ୍ସଗୁଡିକୁ ବିଶୁଦ୍ଧିକରଣ ପାଇଁ ପଦକ୍ଷେପ ନେବାକୁ ପରାମର୍ଶ ଦିଆଯାଇଛି । ସମ୍ବଲପୁର ଘଟଣା ପରେ ଜଳବାହିତ ରୋଗ ପ୍ରତିରୋଧ ପାଇଁ ଏକ ନିର୍ଦ୍ଧାରିତ ସମୟସୀମା ମଧ୍ୟରେ ଆକ୍ସନ୍ ପ୍ଲାନ୍ ପ୍ରସ୍ତୁତ କରାଯାଇଥିବା କୁହାଯାଇଛି । ସେହିପରି ବିଭିନ୍ନ ବିଜ୍ଞାପିତ ଅଞ୍ଚଳ ପରିଷଦ ଏବଂ ମ୍ୟୁନିସିପାଲିଟିଗୁଡିକ ଅଧୀନରେ ଥିବା ମୁଖ୍ୟରାସ୍ତାଗୁଡ଼ିକୁ ପୂର୍ତ୍ତ ବିଭାଗକୁ ହସ୍ତାନ୍ତର କରାଯିବ । ଫଳରେ ଆବଶ୍ୟକସ୍ଥଳେ ମରାମତି ଏବଂ ରକ୍ଷଣାବେକ୍ଷଣ ସୁଚାରୁ ରୂପେ କରାଯାଇପାରିବ । ଜିଲ୍ଲା ସହରାଞ୍ଚଳ ଉନ୍ନୟନ ସଂସ୍ଥାକୁ ଏଣିକି ଜିଲ୍ଲା ଗ୍ରାମ୍ୟ ଉନ୍ନୟନ ସଂସ୍ଥା ଅଧୀନକୁ ଅଣାଯାଇଥିବା ହେତୁ ଜିଲ୍ଲାପାଳମାନେ ପ୍ରତି ମାସରେ ଏହାର ଅଗ୍ରଗତି ଉପରେ ସମୀକ୍ଷା କରିବାକୁ କୁହାଯାଇଛି । ସହରାଞ୍ଚଳରେ ଗରିବ, ଭିକ୍ଷମ, ପଥିକ, ନିରାଶ୍ରୟମାନଙ୍କ ରାତ୍ରୀରହଣି ପାଇଁ ଆଶ୍ରୟସ୍ଥଳ ନିର୍ମାଣକୁ ତ୍ୱରାନ୍ୱିତ କରିବା ପାଇଁ ଜିଲ୍ଲାପାଳମାନେ ସହରଗୁଡ଼ିକରେ ଡାକ୍ତରଖାନା, ବସଷ୍ଟାଣ୍ଡ ଭଳି ପ୍ରମୁଖ ସ୍ଥଳ ନିକଟରେ ସରକାରୀ ଜାଗା ଚିହ୍ନଟ କରି ରିପୋର୍ଟ ଦେବାକୁ କୁହାଯାଇଛି । ତା’ଛଡା ବିଭିନ୍ନ ପାଇପ କ୍ରୟ ବେଳେ ଉତ୍ପାଦନ ଶୁଳ୍କ ଛାଡ କରିବାକୁ ଅନୁରୋଧ କରାଯାଇଥିଲା । ପଛୁଆ ଅଞ୍ଚଳ ବିକାଶପାଣ୍ଠି ଅଧୀନରେ ପ୍ରଦତ୍ତ ବହୁ ପରିମାଣ ଅର୍ଥ ଏନ୍.ଏ.ସି., ମ୍ୟୁନିସିପାଲିଟିମାନଙ୍କରେ ଖର୍ଚ୍ଚ ନ ହୋଇ ପଡିଥିବା ହେତୁ ଏଗୁଡିକୁ ତୁରନ୍ତ ଖର୍ଚ୍ଚ କରି ତା’ର ବିନିଯୋଗପତ୍ର ବିଭାଗକୁ ଦାଖଲ କରିବାକୁ କୁହାଯାଇଛି । ତା’ଛଡା ନଗର ଉନ୍ନୟନ ଜନିତ ଯେକୌଣସି ବିଷୟରେ ଅବଗତ କରିବାକୁ ଜିଲ୍ଲାପାଳମାନେ ସିଧାସଳଖ ମୋ ସହ କଥାବାର୍ତ୍ତା କରିପାରିବେ ବୋଲି ମନ୍ତ୍ରୀ ଶ୍ରୀ ସିଂହଦେଓ କହିଥିଲେ । ଏହି ବୈଠକରେ ମୁଖ୍ୟଶାସନ ସଚିବ ଶ୍ରୀ ଗୋକୁଳ ଚନ୍ଦ୍ର ପତି, ଅତିରିକ୍ତ ମୁଖ୍ୟ ଶାସନ ସଚିବ ଶ୍ରୀ ଆଦିତ୍ୟ ପ୍ରସାଦ ପାଢୀ, ଉନ୍ନୟନ କମିଶନର ଶ୍ରୀ ତାରା ଦତ୍ତ, ଗୃହ ନିର୍ମାଣ ଓ ନଗର ଉନ୍ନୟନ ଶାସନ ସଚିବ ଶ୍ରୀ ଜି ମାଥିଭାଥନନ୍‌ଙ୍କ ସମେତ ସମସ୍ତ ଜିଲ୍ଲାପାଳ ଉପସ୍ଥିତ ଥିଲେ ।

ସୁବାଷ ନିଆଲ, ସୂଚନା ଅଧିକାରୀ

# ନିର୍ମାଣ ଶ୍ରମିକଙ୍କ ପାଇଁ ମୁଖ୍ୟମନ୍ତ୍ରୀଙ୍କ ନୂଆ ପ୍ୟାକେଜ୍ ଘୋଷଣା

ଜିଲ୍ଲାପାଳ ସମ୍ମିଳନୀର ଦ୍ୱିତୀୟ ଦିନର ଅନ୍ତିମ ଅଧିବେଶନରେ ଉଦ୍‌ବୋଧନ ଦେଇ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ନିର୍ମାଣ ଶ୍ରମିକମାନଙ୍କ ପାଇଁ ଏକ ନୂତନ ପ୍ୟାକେଜ୍ ଘୋଷଣା କରିଛନ୍ତି । ନିଜ କାର୍ଯ୍ୟସ୍ଥଳୀକୁ ଯିବା ପାଇଁ ନିର୍ମାଣ ଶ୍ରମିକଙ୍କୁ ରାଜ୍ୟ ସରକାର ମାଗଣାରେ ସାଇକେଲ ଯୋଗାଇ ଦେଉଛନ୍ତି । ଏହି ସୁବିଧା ପାଇବା ପାଇଁ ରେଜିଷ୍ଟ୍ରେସନ୍ ସମୟ ସର୍ବନିମ୍ନ ତିନିବର୍ଷ ପରିବର୍ତ୍ତେ ଏକ ବର୍ଷକୁ ହ୍ରାସ କରାଯାଇଛି । ସେହିପରି ନିରାପତ୍ତା ଯନ୍ତ୍ରପାତି, କାମ କରିବା ଉପକରଣ ଆଦି କିଣିବା ପାଇଁ ସହାୟତା କ୍ଷେତ୍ରରେ ଥିବା ଏକ ବର୍ଷ ରେଜିଷ୍ଟ୍ରେସନ୍ ସର୍ତ୍ତ ସମ୍ପୂର୍ଣ୍ଣ ଭାବରେ ଉଠାଇ ଦିଆଯାଇଛି । ସ୍ୱାଭାବିକ ମୃତ୍ୟୁ କ୍ଷେତ୍ରରେ ସହାୟତା ନିମନ୍ତେ ଏକ ବର୍ଷ ରେଜିଷ୍ଟ୍ରେସନ୍ ସର୍ତ୍ତ ମଧ୍ୟ ଉଠାଇ ଦିଆଯାଇଛି । ଦକ୍ଷତା ବୃଦ୍ଧି ନିମନ୍ତେ ତାଲିମ ନେଉଥିବା ରେଜିଷ୍ଟାର୍ଡ ଶ୍ରମିକମାନଙ୍କୁ ମଜୁରୀ କ୍ଷତିପୂରଣ ଭାବରେ ଦୁଇଶହ ଟଙ୍କା ଦୈନିକ ଯୋଗାଇ ଦିଆଯିବ । ପ୍ରସୂତି ମହିଳା ଶ୍ରମିକମାନଙ୍କ ସହାୟତା ରାଶି ଟ୪୦୦୦ରୁ ଟ ୮୦୦୦କୁ ବୃଦ୍ଧି କରାଯାଇଛି । ନିର୍ମାଣ ଶ୍ରମିକମାନଙ୍କୁ ବିବାହକାଳୀନ ସହାୟତା ରାଶି କୋଡିଏ ହଜାର ଟଙ୍କାରୁ ପଚିଶ ହଜାର ଟଙ୍କାକୁ ବୃଦ୍ଧି କରାଯାଇଛି । ନିର୍ମାଣ ଶ୍ରମିକମାନଙ୍କ ପିଲାମାନଙ୍କ ଶିକ୍ଷା ନିମନ୍ତେ ବୃତ୍ତି ପରିମାଣରେ ମଧ୍ୟ ବୃଦ୍ଧି କରାଯାଇଛି । ଏକାଦଶ ଓ ଦ୍ୱାଦଶ ଶ୍ରେଣୀରେ ପଢୁଥିବା ନିର୍ମାଣ ଶ୍ରମିକମାନଙ୍କ ପିଲାମାନଙ୍କ ବୃତ୍ତି ପରିମାଣ ବାର୍ଷିକ ପାଞ୍ଚହଜାର ଟଙ୍କାକୁ ବୃଦ୍ଧି କରାଯାଇଥିବା ବେଳେ, ବି.ଏ, ବି.ଏସ୍‌ସି, ବି.କମ୍ ଓ ପିଜି କରୁଥିବା ଛାତ୍ରଛାତ୍ରୀଙ୍କ ବୃତ୍ତି ବାର୍ଷିକ ସାତହଜାର ଟଙ୍କା, ଆଇଟିଆଇ ଛାତ୍ରଛାତ୍ରୀଙ୍କ ପାଇଁ ବାର୍ଷିକ ସାତହଜାର ଟଙ୍କା, ଡିପ୍ଲୋମା, ପଲିଟେକ୍‌ନିକ୍ କ୍ଷେତ୍ରରେ ବୃତ୍ତି ପରିମାଣ ବାର୍ଷିକ ଦଶହଜାର ଟଙ୍କା ଏବଂ ବି.ଟେକ୍, ଏମ୍‌ବିବିଏସ୍, ବି.ଆର୍କିଟେକ୍, ବି.ଫାର୍ମା, ଏମ୍.ଟେକ୍, ଏମ୍.ଆର୍କିଟେକ୍, ଏମ୍.ସି.ଏ, ଏମ୍.ବି.ଏ, ଏମ୍‌ସି.ଏ, ଏମ୍ ଫାର୍ମା, ହୋଟେଲ୍ ମ୍ୟାନେଜ୍‌ମେଣ୍ଟ ଓ କ୍ୟାଟରିଂ ସେବା ପାଇଁ ବୃତ୍ତି ପରିମାଣ ବାର୍ଷିକ ଚାଳିଶହଜାର ଟଙ୍କାକୁ ବୃଦ୍ଧି କରାଯାଇଛି ।

ନିର୍ମାଣ କାର୍ଯ୍ୟ ପାଇଁ ବାହାରକୁ ଯାଉଥିବା ଶ୍ରମିକମାନଙ୍କ ପଞ୍ଜିକରଣ କାର୍ଯ୍ୟ ପ୍ରାଥମିକତା ଭିତ୍ତିରେ କରିବା ଏବଂ ଶ୍ରମିକ ସହାୟତା ହେଲ୍‌ପ ଲାଇନ୍ ବିଷୟରେ ବ୍ୟାପକ ସଚେତନତା ସୃଷ୍ଟି ପାଇଁ ବାହାର ରାଜ୍ୟକୁ କାମ ପାଇଁ ଯାଉଥିବା ଜିଲ୍ଲାମାନଙ୍କର ଜିଲ୍ଲାପାଳମାନଙ୍କୁ ନିର୍ଦ୍ଦେଶ ଦେଇଥିଲେ । ପ୍ରଶାସନ କ୍ଷେତ୍ରରେ ଉଲ୍ଲେଖନୀୟ କାର୍ଯ୍ୟ କରୁଥିବା ବିଭିନ୍ନ ସ୍ତରରେ ପ୍ରଶାସନିକ ଅଧିକାରୀଙ୍କୁ ଉତ୍ସାହିତ କରିବା ପାଇଁ ପଦକ୍ଷେପ ବିଷୟରେ ମଧ୍ୟ ମୁଖ୍ୟମନ୍ତ୍ରୀ ଘୋଷଣା କରିଥିଲେ । ସମ୍ପୃକ୍ତ ବିଭାଗଗୁଡିକ ସହିତ ସମନ୍ୱୟ ରକ୍ଷା କରି ସାଧାରଣ ପ୍ରଶାସନ ବିଭାଗ ଅଧିକାରୀମାନଙ୍କୁ ଚିହ୍ନଟ କରିବା ସହିତ ସେମାନଙ୍କୁ ଦେଶ ତଥା ବିଦେଶର ଉତ୍କୃଷ୍ଟ ଅନୁଷ୍ଠାନମାନଙ୍କୁ ତାଲିମ ପାଇଁ ପଠାଇବାର ବ୍ୟବସ୍ଥା କରାଯିବ । ଜାତୀୟ ପୁରସ୍କାର ପାଇଁ ଯୋଗ୍ୟ ବିବେଚିତ ଅଧିକାରୀମାନେ ପୁରସ୍କାର ଗ୍ରହଣ ପାଇଁ ଯିବା ବେଳେ ସେମାନଙ୍କୁ ରାଜ୍ୟ ଅତିଥି ଭାବରେ ଘୋଷଣା କରି ତଦ୍‌ଜନିତ ସମସ୍ତ ସୁବିଧା ପ୍ରଦାନ କରାଯିବ । ଏତଦ୍‌ବ୍ୟତୀତ ଭଲ କାମ କରି ପୁରସ୍କୃତ ହୋଇଥିବା ଜିଲ୍ଲାମାନେ ଆରମ୍ଭ କରିଥିବା ନୂଆ ନୂଆ ବ୍ୟବସ୍ଥାର Documentation ଓ Dissemination ପାଇଁ ସାଧାରଣ ପ୍ରଶାସନ ବିଭାଗ ପକ୍ଷରୁ ସମ୍ପୃକ୍ତ ଜିଲ୍ଲାମାନଙ୍କୁ ୨୫ ଲକ୍ଷ ଟଙ୍କାର ପାଣ୍ଠି ଯୋଗାଇ ଦେବେ । ମମତା ଯୋଜନାରେ ରାଜ୍ୟର ୧୫ ଲକ୍ଷ ମା' ସାମିଲ ହୋଇଥିବା ବେଳେ ଏ ବାବଦରେ ୫୮୦ କୋଟି ଟଙ୍କା ହିତାଧିକାରୀମାନଙ୍କ ଖାତାକୁ ଟ୍ରାନ୍ସଫର କରାଯାଇଛି । ଆଦିମ ଜନଜାତିମାନଙ୍କ କ୍ଷେତ୍ରରେ 'ମମତା' ଯୋଜନାର ସର୍ତ୍ତକୁ କୋହଳ କରାଯାଇ ସେମାନଙ୍କ କ୍ଷେତ୍ରରେ ଦୁଇଟି ଜୀବିତ ସନ୍ତାନ ସର୍ତ୍ତ ଉଠାଇ ଦିଆଯାଇଛି ବୋଲି ମୁଖ୍ୟମନ୍ତ୍ରୀ ସୂଚନା ଦେଇଥିଲେ । ହରିଶ୍ଚନ୍ଦ୍ର ସହାୟତା ଓ ସିଏମ୍‌ଆରଏଫ୍ ଆଦି ସହାୟତା ଯୋଗାଇଦେବା ବେଳେ ଲୋକମାନେ ଯେପରି ଠିକ୍ ସମୟରେ ଏହି ସବୁ ସହାୟତା ପାଇପାରିବେ ତା'ଉପରେ ଦୃଷ୍ଟିଦେବା ପାଇଁ ଜିଲ୍ଲାପାଳମାନଙ୍କୁ ପରାମର୍ଶ ଦେଇଥିଲେ । ନାଲିଫିତାକୁ କାଟି ଗରିବ ଓ ନିଃସହାୟ ଲୋକଙ୍କୁ ସାହାଯ୍ୟ କରିବା ପାଇଁ ଆଗେଇ ଆସିବା ପାଇଁ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଜିଲ୍ଲାପାଳମାନଙ୍କୁ ପରାମର୍ଶ ଦେଇଥିଲେ ।

ସୁକାନ୍ତ କୁମାର ପଣ୍ଡା, ମୁଖ୍ୟମନ୍ତ୍ରୀଙ୍କ ଲୋକସମ୍ପର୍କ ଅଧିକାରୀ

# ସଡକ ଦୁର୍ଘଟଣାରେ ଆହତ ବ୍ୟକ୍ତିଙ୍କୁ ଡାକ୍ତରଖାନାରେ ଭର୍ତ୍ତି ପାଇଁ ସାହାଯ୍ୟକାରୀଙ୍କୁ ମିଳିବ ପୁରସ୍କାର

ରାଜ୍ୟ ବାଣିଜ୍ୟ ଓ ପରିବହନ ମନ୍ତ୍ରୀ ଶ୍ରୀ ରମେଶ ଚନ୍ଦ୍ର ମାଝୀଙ୍କ ଅଧ୍ୟକ୍ଷତାରେ ରାଜ୍ୟସ୍ତରୀୟ ସଡକ ସୁରକ୍ଷା ପରିଷଦ ବୈଠକ ଅନୁଷ୍ଠିତ ହୋଇଯାଇଛି । ରାଜ୍ୟରେ ଏକ ସଡକ ସୁରକ୍ଷା ନୀତି ପ୍ରସ୍ତୁତ କରାଯିବ ବୋଲି ମନ୍ତ୍ରୀ ଶ୍ରୀ ମାଝୀ ପ୍ରକାଶ କରିଛନ୍ତି । ଏଥି ସହିତ ସଡକ ଦୁର୍ଘଟଣାରେ ଆହତ ଲୋକଙ୍କୁ ଡାକ୍ତରଖାନା ପହଞ୍ଚାଇଥିବା ବ୍ୟକ୍ତିଙ୍କୁ ସରକାର ଆର୍ଥିକ ପୁରସ୍କାର ପ୍ରଦାନ କରିବେ ।

ଏଣିକି ବର୍ଷରେ ଦୁଇଥର ବୈଠକ ଆୟୋଜନ ପାଇଁ ବ୍ୟବସ୍ଥା ରଖିବା ଉପରେ ପ୍ରଥମେ ପ୍ରସ୍ତାବ ଗୃହୀତ ହେବା ପରେ ସଡକ ସୁରକ୍ଷାର ବିଭିନ୍ନ ଦିଗ ଉପରେ ଆଲୋଚନା କରାଯାଇଥିଲା । ରାଜ୍ୟରେ ଘଟୁଥିବା ସଡକ ଦୁର୍ଘଟଣାକୁ ଏଡାଇବା ପାଇଁ ଦୁର୍ଘଟଣା ପ୍ରବଣ ଅଞ୍ଚଳ ଚିହ୍ନଟ କରି ସେସବୁ ସ୍ଥାନଗୁଡିକରେ କି ଧରଣର ପ୍ରତିକାର ପଦକ୍ଷେପ ନିଆଯାଇପାରିବ, ତାହା ବୈଠକରେ ଆଲୋଚନା କରାଯାଇଥିଲା । ତା'ଛଡା ଯାନଚାଳକମାନେ ମାଦକ ଦ୍ରବ୍ୟ ଖାଇ ଯାନବାହନ ଚଳାଇବାରୁ କିପରି ନିବୃତ୍ତ ହେବେ ସେଥିପାଇଁ ଧରପଗଡକୁ କଡାକଡି କରାଯିବ । ସେହିପରି ଦ୍ରୁତଗତିରେ ଯାନଚାଳନା, ନାଲିବତୀ ଅତିକ୍ରମ ଏବଂ ବିନା ସିଟ୍ ବେଲଟ୍ ଓ ହେଲମେଟ୍ ପିନ୍ଧି ମଟରଯାନ ଓ ମଟର ସାଇକେଲ ଚଳାଇବା ଉପରେ ଅଙ୍କୁଶ ଲଗାଇବା ପାଇଁ ଆବଶ୍ୟକ ପଦକ୍ଷେପ ଗ୍ରହଣ ସମ୍ପର୍କରେ ଆଲୋଚନା କରାଯାଇଥିଲା । କେତେକ ସ୍ଥାନରେ ରାସ୍ତା ଉପରେ ଗାଡିର ଗତି ନିୟନ୍ତ୍ରଣ ପାଇଁ କରାଯାଇଥିବା ରମ୍ବଲର୍ସ ଏବଂ ସ୍ପିଡ୍ ବ୍ରେକର ପ୍ରଭୃତି ଅନାବଶ୍ୟକୀୟ ଭାବେ ତିଆରି କରାଯାଉଥିବା, ଏଗୁଡିକର ସ୍ଥିତି ସମ୍ପର୍କରେ ସଙ୍କେତ ନଦେବା ଏବଂ ବୈଷୟିକ ଜ୍ଞାନକୌଶଳ ପ୍ରୟୋଗ ନକରି ରମ୍ବଲର୍ସ ନିର୍ମାଣ ଫଳରେ ଅନେକ ଦୁର୍ଘଟଣାର ଶିକାର ହେଉଥିବା ଉପରେ ବୈଠକରେ କ୍ଷୋଭ ପ୍ରକାଶ କରାଯାଇଥିଲା । ଭୁବନେଶ୍ୱର ମହାନଗର ନିଗମ ଅଞ୍ଚଳରେ ପର୍ଯ୍ୟାପ୍ତ ଭାବେ ଫୁଟପାଥ ଏବଂ ସାଇକେଲ ଟ୍ରାକ୍ ନିର୍ମାଣ କରାଯାଇ ଥିଲେ ହେଁ ଅନେକ ସ୍ଥାନରେ ଏଗୁଡିକୁ ଉଠାଦୋକାନୀ କବ୍ଜା କରି ରଖିଥିବା ହେତୁ ଏଗୁଡିକ ଯେଉଁ ଉଦ୍ଦେଶ୍ୟରେ ତିଆରି କରାଯାଇଛି, ତା'ର ଅସଲ ଉଦ୍ଦେଶ୍ୟ ସାଧିତ ହୋଇପାରିନାହିଁ । ତା'ଛଡା ରାସ୍ତାର ଉଭୟ ପାର୍ଶ୍ୱରେ ବିଭିନ୍ନ ବ୍ୟବସାୟିକ ସଂସ୍ଥାମାନେ ବିରାଟ ବିରାଟ ବିଜ୍ଞାପନ ବୋର୍ଡ ଲଗାଇବା ହେତୁ ତାହା ଚାଳକଙ୍କୁ ରାସ୍ତା ଦେଖିବାରେ ବାଧା ଉପୁଜୁଛି । କେତେକ କ୍ଷେତ୍ରରେ ଯୌନ ଉଦ୍ଦୀପକ ବିଜ୍ଞାପନ ଯାନଚାଳକଙ୍କ ଏକାଗ୍ରତା ଭଙ୍ଗ କରୁଥିବା ଦୁର୍ଘଟଣା ଘଟିବାର ଅନ୍ୟ ଏକ କାରଣ ଭାବେ ଦେଖାଯାଇଥିବା ବିଶେଷଜ୍ଞମାନେ ମତ ରଖିଥିଲେ । ଏଥିପାଇଁ ଏକ ସ୍ୱତନ୍ତ୍ର ଆଇନ ପ୍ରଣୟନ ପାଇଁ ପ୍ରସ୍ତାବ ଦିଆଯାଇଛି । ଏଥି ସହିତ ଭାରତ ସରକାରଙ୍କ ଦ୍ୱାରା ପ୍ରଣୀତ ରୋଡ୍ ସେଫ୍ଟି ସ୍କିମ୍‌ଗୁଡିକ ଅନୁକରଣରେ କାର୍ଯ୍ୟକ୍ରମ ଗ୍ରହଣ କରିବା ଉପରେ ଗୁରୁତ୍ୱ ଦିଆଯାଇଥିଲା । ସଡକ ସୁରକ୍ଷା ଉପରେ ବିଦ୍ୟାଳୟ ସ୍ତରରେ ଛାତ୍ରଛାତ୍ରୀଙ୍କୁ ସଚେତନ କରିବା ପାଇଁ ତାଙ୍କ ପାଠ୍ୟକ୍ରମରେ ବିଷୟବସ୍ତୁ ସ୍ଥାନିତ କରିବା ପାଇଁ ବ୍ୟବସ୍ଥା କରିବା ପାଇଁ ପରିଷଦ ପ୍ରସ୍ତାବ ରଖିଥିଲା । ଏଥି ସହିତ ବିଭିନ୍ନ ପ୍ରମୁଖ ସହରରେ ଟ୍ରମା ସେଣ୍ଟର ଖୋଲିବା ପାଇଁ ବ୍ୟବସ୍ଥା କରିବା ପାଇଁ ପ୍ରସ୍ତାବ ଗୃହୀତ କରାଯାଇ ଥିଲା । ବୈଠକରେ ଅନ୍ୟମାନଙ୍କ ମଧ୍ୟରେ ବାଣିଜ୍ୟ ଓ ପରିବହନ ଶାସନ ସଚିବ ଶ୍ରୀ ସଞ୍ଜୟ ରସ୍ତୋଗୀ, ପରିବହନ କମିଶନର ଶ୍ରୀ ଏମ୍. ଅକ୍ଷୟ, ପୂର୍ବ ସଚିବ ଶ୍ରୀ ନଳିନୀକାନ୍ତ ପ୍ରଧାନ ଉପସ୍ଥିତ ଥିଲେ ।

ବିଶ୍ୱଜିତ ଦାଶ, ସୂଚନା ଅଧିକାରୀ

## ସମ୍ବଲପୁରରେ ଜଣ୍ଡିସ୍ ରୋଗ ନିରାକରଣ ନିମନ୍ତେ ରାଜ୍ୟ ସରକାରଙ୍କ ବିଭିନ୍ନ ପଦକ୍ଷେପ

ସମ୍ବଲପୁରରେ ଜଣ୍ଡିସ୍ ରୋଗର ନିରାକରଣ ସକାଶେ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ନିକଟରେ ୧୦୦ କୋଟି ଟଙ୍କାର ଏକ ପ୍ୟାକେଜ୍ ଘୋଷଣା କରିଛନ୍ତି । ଏହି ଅର୍ଥ ରାଶିରେ ସମ୍ବଲପୁର ଅଞ୍ଚଳର ଜଳ ଯୋଗାଣ ନେଟ୍‌ୱର୍କର ପରିବର୍ତ୍ତନ ଓ ପୁନରୁଦ୍ଧାର ପରି ଅନେକ ପ୍ରତିକାର ବ୍ୟବସ୍ଥା ଗ୍ରହଣ କରାଯିବ । ଉକ୍ତ ଘୋଷଣା ସହ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ମଧ୍ୟ ଏକ ଅତ୍ୟାଧୁନିକ ଭୂତଳ ସ୍ୱେରେଜ୍ ବ୍ୟବସ୍ଥା ନିମନ୍ତେ ୪୧୬ କୋଟି ଟଙ୍କା ଘୋଷଣା କରିଛନ୍ତି । ଏତଦ୍‌ବ୍ୟତୀତ ଧୋବିଜୋର୍, ହରଦ୍‌ଜୋର୍ ଏବଂ ଟଙ୍ଗନା ପରି ତିନିଗୋଟି ନଳାର ପୁନରୁଦ୍ଧାର କାର୍ଯ୍ୟରେ ୬୦ କୋଟି ଟଙ୍କା ବିନିଯୋଗ କରାଯିବ । ସମ୍ବଲପୁରରେ ଜଣ୍ଡିସ୍ ରୋଗର ନିରାକରଣ ଲକ୍ଷ୍ୟରେ ତଥା ଶୁଦ୍ଧ ପାନୀୟ ଜଳ ଯୋଗାଣ ନିମନ୍ତେ ରାଜ୍ୟ ସରକାର ୫୦୦ ପିଭିସି ଟାଙ୍କି ସ୍ଥାପନ କରିବେ ଏବଂ ୫୦ ଗୋଟି ଗୋଷ୍ଠୀଭିତ୍ତିକ ଟଏଲେଟ୍ ନିର୍ମାଣ କରାଯିବ । ଏହା ସହ ସମ୍ବଲପୁର ସହରରେ ଏକ ପମ୍ପ ଷ୍ଟେସନ୍‌ର ବ୍ୟବସ୍ଥା ମଧ୍ୟ କରାଯାଉଛି । ବୀର ସୁରେନ୍ଦ୍ର ସାଏ ମେଡିକାଲ କଲେଜ ଓ ହସ୍‌ପିଟାଲ୍, ବୁର୍ଲାକୁ ଉନ୍ନୀତ କରାଯାଇ ବୀର ସୁରେନ୍ଦ୍ର ସାଏ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ମେଡିକାଲ୍ ସାଇନ୍ସ୍ ଏଣ୍ଡ୍ ରିସର୍ଚ୍ଚରେ ପରିଣତ କରାଯିବା ପାଇଁ ମଧ୍ୟ ପଦକ୍ଷେପ ନିଆଯାଇଛି ।

## ୩୦ଟି ଜିଲ୍ଲାର ୩୦ଟି ବିଦ୍ୟାଳୟରେ ଧନ୍ଦାମୂଳକ ଶିକ୍ଷାର ଶୁଭାରମ୍ଭ

ଦୁଇଦିନିଆ ବ୍ଲକ ଓ ଜିଲ୍ଲାସ୍ତରୀୟ ଏବଂ ସର୍ବଶିକ୍ଷା ଅଭିଯାନ ଜିଲ୍ଲା ପ୍ରକଳ୍ପ ସଂଯୋଜକମାନଙ୍କ ଏକ ମିଳିତ ରାଜ୍ୟସ୍ତରୀୟ ସମ୍ମିଳନୀ ୟୁନିଟ୍–୧ସ୍ଥିତ ସରକାରୀ ବାଳକ ବିଦ୍ୟାଳୟଠାରେ ଅନୁଷ୍ଠିତ ହେଉଅଛି । ବିଦ୍ୟାଳୟ ଓ ଗଣଶିକ୍ଷା ମନ୍ତ୍ରୀ ଶ୍ରୀଯୁକ୍ତ ଦେବୀପ୍ରସାଦ ମିଶ୍ର ଉକ୍ତ ସମ୍ମିଳନୀରେ ମୁଖ୍ୟଅତିଥି ଭାବେ ଯୋଗଦେଇ ୩୦ଟି ଜିଲ୍ଲାର ୩୦ଟି ବିଦ୍ୟାଳୟରେ ପାଇଲଟ୍ ପ୍ରୋଜେକ୍ଟ ଭାବେ ଧନ୍ଦାମୂଳକ

ଶିକ୍ଷାର ଶୁଭାରମ୍ଭ କରି କହିଲେ ଯେ, ଆଇଟି ଏବଂ ଆଇଟିଇଏସ୍, ଅଟୋମୋବାଇଲ କ୍ଷେତ୍ରରେ ୧୭୩ଟି ବ୍ଲକ୍‌ରେ ସରକାରୀ ଯୋଜନା ଓ ୧୪୧ଟି ବ୍ଲକ୍‌ରେ ଘରୋଇ ସରକାରୀ ସହଯୋଗରେ ତାଲିମ ପ୍ରଦାନ କରାଯିବ । ଏଥିସହ ବିଦ୍ୟାଳୟ ବିଭାଗରେ ମାନବ ସମ୍ବଳ ପରିଚାଳନା ପାଇଁ ଇ–ଗଭର୍ଣ୍ଣାନ୍ସ୍ ସେଲ୍‌ର ପ୍ରଚଳନ କରାଯିବ । ୨୦୧୦–୧୧ରୁ ୨୦୧୪–୧୫ ବର୍ଷ ପର୍ଯ୍ୟନ୍ତ ବିଦ୍ୟାଳୟ ଓ ଗଣଶିକ୍ଷା ବିଭାଗର ବାର୍ଷିକ ବଜେଟ୍ ଶତକଡା ୭୬ ଭାଗକୁ ବୃଦ୍ଧି କରାଯାଇଛି । ରାଜ୍ୟ ସରକାର ଶିକ୍ଷାର ଉନ୍ନତି ଓ ଅଭିବୃଦ୍ଧି ପାଇଁ ଯତ୍ନବାନ ଅଛନ୍ତି । ସମୁଦାୟ ବଜେଟ୍‌ର ଶତକଡା ୧୨ ଭାଗ ଏହି ବିଭାଗର ବଜେଟ୍ ଅଟେ । ବ୍ଲକ୍ ଏବଂ ଜିଲ୍ଲାରୁ ଆସିଥିବା ଶିକ୍ଷାଧିକାରୀ ଓ ଜିଲ୍ଲା ପ୍ରକଳ୍ପ ସଂଯୋଜକମାନଙ୍କର କାର୍ଯ୍ୟକ୍ରମକୁ ସମୀକ୍ଷା କରାଯାଇଥିଲା । ବିଭାଗୀୟ ଶାସନ ସଚିବ ଶ୍ରୀମତୀ ଉଷା ପାଢ଼ୀ ସମସ୍ତ ଅଧିକାରୀଙ୍କୁ ନିଜ ନିଜ କାର୍ଯ୍ୟରେ ଶୃଙ୍ଖଳା ଓ ବିଭାଗୀୟ ପ୍ରଗତି ପାଇଁ ଉଦ୍‌ବୋଧନ ଦେଇଥିଲେ । ଉକ୍ତ ବିଭାଗ ଦ୍ୱାରା ସମ୍ପାଦିତ ଏକ ସ୍ୱତନ୍ତ୍ର ସଙ୍କଳନ ଶିଶୁମାନଙ୍କ ସୁରକ୍ଷା ସଂକ୍ରାନ୍ତ ନିୟମାବଳୀ ସମ୍ମିଳନୀରେ ମନ୍ତ୍ରୀ ଶ୍ରୀ ମିଶ୍ରଙ୍କ ଦ୍ୱାରା ଲୋକାର୍ପିତ ହୋଇଥିଲା ।

ବରଦା ପ୍ରସନ୍ନ ଦାସ, ସୂଚନା ଅଧିକାରୀ

## ଭୁବନେଶ୍ୱର ସି.ଟି.ଟି.ସି ମାଧ୍ୟମରେ
## ବିଶ୍ୱସ୍ତରୀୟ ତାଲିମଦାତା ଦକ୍ଷତା ପୁନଃ ନବୀକରଣ କାର୍ଯ୍ୟକ୍ରମ ଆରମ୍ଭ

ଓଡ଼ିଶାରେ ବିଶ୍ୱସ୍ତରୀୟ ବୈଷୟିକ ତାଲିମ ଦେବା ଏବଂ ଓଡ଼ିଶାର ବିଭିନ୍ନ ବୈଷୟିକ ଅନୁଷ୍ଠାନର ତାଲିମପ୍ରାପ୍ତ ଯୁବକଯୁବତୀମାନଙ୍କର ନିୟୋଜନିୟତା ବୃଦ୍ଧି କରିବା ନିମନ୍ତେ ଓଡ଼ିଶା ସରକାରଙ୍କ ଉଦ୍ୟମରେ ତାଲିମଦାତା ଦକ୍ଷତା ପୁନଃ ନବୀକରଣ କାର୍ଯ୍ୟକ୍ରମ ଆରମ୍ଭ କରାଯାଇଛି । ଭୁବନେଶ୍ୱରସ୍ଥିତ କେନ୍ଦ୍ରୀୟ ଟୁଲ ରୁମ୍ ଏବଂ ତାଲିମ କେନ୍ଦ୍ର ( ସି.ଟି.ଟି.ସି ) ମାଧ୍ୟମରେ ଆୟୋଜିତ ଏହି କାର୍ଯ୍ୟକ୍ରମର ପ୍ରଥମ ପର୍ଯ୍ୟାୟକୁ ମୁଖ୍ୟ ଶାସନ ସଚିବ ଶ୍ରୀ ଗୋକୁଳ ଚନ୍ଦ୍ର ପତି ଏବଂ କର୍ମନିୟୋଜନ ଓ ବୈଷୟିକ ତାଲିମ ବିଭାଗ ସଚିବ ଡ଼ଃ ଚନ୍ଦ୍ରଶେଖର କୁମାର ପ୍ରଦୀପ ପ୍ରଜ୍ୱଳନ କରି ଉଦ୍‌ଘାଟନ କରିଛନ୍ତି । କାର୍ଯ୍ୟକ୍ରମ ମାଧ୍ୟମରେ ବିଭିନ୍ନ ବୈଷୟିକ ଶିକ୍ଷାନୁଷ୍ଠାନର ତାଲିମ ଦେଉଥିବା ଶିକ୍ଷକ ଶିକ୍ଷୟିତ୍ରୀମାନଙ୍କର ଦକ୍ଷତା ପୁନଃନବୀକରଣ ନିମନ୍ତେ ତାଲିମ ଦିଆଯିବ । ବିଭିନ୍ନ ବୈଷୟିକ ଶିକ୍ଷାନୁଷ୍ଠାନରୁ ଉତ୍ତୀର୍ଣ୍ଣ ହୋଇଥିବା ଯୁବକଯୁବତୀ ମାନଙ୍କୁ ଶିଳ୍ପାନୁଷ୍ଠାନ ଚାହିଦା ଅନୁଯାୟୀ ନମୁନା ତାଲିମ ମଧ୍ୟ ଦିଆଯିବ ଯେପରିକି ସେମାନଙ୍କ ନିୟୋଜନିୟତା ଏବଂ ଉତ୍ପାଦକତା ବଢ଼ିପାରିବ । କାର୍ଯ୍ୟକ୍ରମକୁ ଉଦ୍‌ଘାଟନ କରି ମୁଖ୍ୟ ଶାସନ ସଚିବ ଶ୍ରୀ ପତି କହିଥିଲେ ଯେ, ବୈଷୟିକ ଶିକ୍ଷା ଅର୍ଥନୈତିକ ପ୍ରଗତିର ଚଳନଶକ୍ତି । ବୈଷୟିକ ଶିକ୍ଷାର ବିଷୟବସ୍ତୁ ଦ୍ରୁତ ପରିବର୍ତ୍ତନଶୀଳ । ସମୟକ୍ରମେ ନୂତନ ଜ୍ଞାନକୌଶଳ ଏବଂ ବୈଷୟିକ କୌଶଳ ଉଦ୍ଭାବନ ହେଉଛି । ତଦନୁଯାୟୀ ବୈଷୟିକ ତାଲିମର ବିଷୟବସ୍ତୁ ଏବଂ ତାଲିମ ପଦ୍ଧତି ମଧ୍ୟ ନବୀକରଣ ହେବା ଆବଶ୍ୟକ । ସମସ୍ତ ବୈଷୟିକ ଶିକ୍ଷାନୁଷ୍ଠାନରେ ପାଠ୍ୟକ୍ରମ ଏବଂ ଭିତ୍ତିଭୂମିର ନବୀକରଣ ସମୟସାପେକ୍ଷ ଓ ବ୍ୟୟସାପେକ୍ଷ ହୋଇଥିବାରୁ ଏହି ନମୁନା ଦକ୍ଷତା ନବୀକରଣ କାର୍ଯ୍ୟକ୍ରମ ଆରମ୍ଭ କରାଯାଇଛି । ବିଭାଗୀୟ ସଚିବ ଡ଼ଃ କୁମାର ସମ୍ମାନିତ ଅତିଥିଭାବେ ଯୋଗଦେଇ କହିଥିଲେ ଯେ ଏହି କାର୍ଯ୍ୟକ୍ରମ ମାଧ୍ୟମରେ ୪ ହଜାରୁ ୫ ହଜାର ପର୍ଯ୍ୟନ୍ତ ଶିକ୍ଷକ ଶିକ୍ଷୟିତ୍ରୀ ଏବଂ ବୈଷୟିକ ତାଲିମପ୍ରାପ୍ତ ଯୁବକଯୁବତୀମାନଙ୍କର ଦକ୍ଷତା ନବୀକରଣ କରାଯିବ । ପର୍ଯ୍ୟାୟକ୍ରମେ ଉଭୟ ସରକାରୀ ଏବଂ ବେସରକାରୀ ଅନୁଷ୍ଠାନ ଏହାର ସୁଯୋଗ ପାଇବେ । ସି.ଟିଟି.ସି.ର ପରିଚାଳନା ନିର୍ଦ୍ଦେଶକ ଶିବାଶିଷ ମାଇତି ସୂଚନା ଦେଇଥିଲେ ଯେ ସି.ଟି.ଟି.ସି ମାଧ୍ୟମରେ ଓଡିଶାରେ ଆରମ୍ଭ କରାଯାଇଥିବା ଏପରି ବିଶ୍ୱସ୍ତରୀୟ ଦକ୍ଷତା ନବୀକରଣ କାର୍ଯ୍ୟକ୍ରମ ଦେଶରେ ପ୍ରଥମ । ସି.ଏନ୍.ସି. ଟେକ୍ନୋଲୋଜି ବିଷୟବସ୍ତୁ ସମ୍ବନ୍ଧିତ ଏହି ପାଠ୍ୟକ୍ରମକୁ ମଡୁଲାର୍ କ୍ରେଡିଟ୍ ଆଧାରିତ କରାଯାଇଛି । ପ୍ରଥମ ପର୍ଯ୍ୟାୟରେ କଟକ, ରାୟଗଡା, ଆମ୍ବାଗୁଡା, ତାଳଚେର, ରାଉରକେଲା, ହୀରାକୁଦ, ଓ ବାଲେଶ୍ୱରର ୭ଟି ସରକାରୀ ଶିଳ୍ପ ତାଲିମ କେନ୍ଦ୍ର ଏବଂ ବ୍ରହ୍ମପୁର ଓ ଚୌଦ୍ୱାରର ୨ଟି ପଲିଟେକ୍‌ନିକ୍ ବିଦ୍ୟାଳୟକୁ ଏହି କାର୍ଯ୍ୟକ୍ରମରେ ଅନ୍ତର୍ଭୁକ୍ତ କରାଯାଇଛି । ପର୍ଯ୍ୟାୟକ୍ରମେ ଏହି କାର୍ଯ୍ୟକ୍ରମକୁ ଅନ୍ୟ ସମସ୍ତ ସରକାରୀ ଏବଂ ବେସରକାରୀ ଅନୁଷ୍ଠାନକୁ ସଂପ୍ରସାରଣ କରାଯିବ । ଇତିମଧ୍ୟରେ ଭୁବନେଶ୍ୱରରେ ଏକ ବିଶ୍ୱସ୍ତରୀୟ ତାଲିମଦାତା ପ୍ରତିଷ୍ଠାନ ( ଟ୍ରେନିଂ ଇନ୍‌ଷ୍ଟିଚ୍ୟୁଟ୍ ଅଫ ଟ୍ରେନରସ୍ ) ପ୍ରତିଷ୍ଠା କରିବା ପାଇଁ ଓଡ଼ିଶା ସରକାର ଶୈଳଶ୍ରୀ ବିହାରଠାରେ ୪ ଏକର ଜମି ଏବଂ ୧୫ କୋଟି ଟଙ୍କାର ଆର୍ଥିକ ମଞ୍ଜୁରୀ ଯୋଗାଇ ଦେଇଛନ୍ତି । ସି.ଟି.ଟି.ସି. ମାଧ୍ୟମରେ ଆହୁରି ୪ଟି ତାଲିମ ପ୍ରତିଷ୍ଠାନ ସରକାରୀ ଓ ବେସରକାରୀ ସହଭାଗିତା ଭିତ୍ତିରେ ପ୍ରତିଷ୍ଠା କରିବା ପାଇଁ ସ୍ଥିର ହୋଇଛି ବୋଲି ଶ୍ରୀ ମାଇତି କହିଛନ୍ତି ।

ଉମାକାନ୍ତ ମହାପାତ୍ର, ସୂଚନା ଅଧିକାରୀ, ମୁଖ୍ୟ ଶାସନ ସଚିବ